1254

॥ ଶ୍ରୀହରିଃ ॥

# ସାଧନ-ନବନୀତ

## साधन-नवनीत ( ओड़िआ )

ତ୍ୱମେବ ମାତା ଚ ପିତା ତ୍ୱମେବ<br>
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।<br>
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ<br>
ତ୍ୱମେବ ସର୍ବଂ ମମ ଦେବଦେବ ॥

ଜୟଦୟାଲ ଗୋୟନ୍ଦକା

ଓଡ଼ିଆ ଭାଷାନ୍ତର—**ଶ୍ରୀବତ୍ସ କର ଶର୍ମା**

॥ ଶ୍ରୀହରିଃ ॥

# ନିବେଦନ

ପ୍ରସ୍ତୁତ ପୁସ୍ତକଖଣ୍ଡିକ ଶ୍ରୀମଦ୍‌ଭଗବଦ୍‌ଗୀତାର ସୁପ୍ରସିଦ୍ଧ ଟୀକା 'ତତ୍ତ୍ୱ-ବିବେଚନୀ'ର ଟୀକାକାର ଏବଂ 'ତତ୍ତ୍ୱ-ଚିନ୍ତାମଣି' ପରି ପାରମାର୍ଥିକ ବୃହଦ୍ ଗ୍ରନ୍ଥର ରଚୟିତା ତଥା ଆଧ୍ୟାତ୍ମିକ ବିଚାର ଏବଂ ଭଗବଦ୍‌ଭାବସମୂହର ପ୍ରଚାରକ ବ୍ରହ୍ମଲୀନ ପରମ ଶ୍ରଦ୍ଧେୟ ଶ୍ରୀ ଜୟଦୟାଲ ଗୋୟନ୍ଦକାଙ୍କ ବହୁମୂଲ୍ୟ ଆଧ୍ୟାତ୍ମିକ ଚିନ୍ତନ ଓ ପ୍ରବଚନଗୁଡ଼ିକର ସାର ଅଟେ। ଏହା ସର୍ବହିତକାରୀ ଓ ସାଧନୋପଯୋଗୀ ହୋଇଥିବାରୁ ଜନହିତାର୍ଥେ ପ୍ରକାଶିତ କରାଯାଉଅଛି।

ଏଥିରେ ଜୀବନ-ସୁଧାରିବା ରୀତି, ଭଜନ-ସାଧନ, ନାମ-ଜପ ଓ ସତ୍‌ସଙ୍ଗ ଆଦିର ଉତ୍ତମ କଥାଗୁଡ଼ିକ ଉଦ୍ଧରଣରୂପେ ଦିଆଯାଇଛି। ଏହି ସଙ୍କଳନରେ ଭଗବନ୍ନାମ, ମହାତ୍ମା, ଭକ୍ତ, ସତ୍‌ସଙ୍ଗ, ସମତା, ବୈରାଗ୍ୟ, ଚିତ୍ତନିରୋଧ, ସଦ୍‌ଗୁଣ-ସଦାଚାର, ସତ୍ୟ, ଅକ୍ରୋଧ (କ୍ଷମା), ବ୍ରହ୍ମଚର୍ଯ୍ୟ, ପରୋପକାର ଆଦି ବିଭିନ୍ନ ପାରମାର୍ଥିକ ବିନ୍ଦୁସମୂହ ଉପରେ ଅଠତିରିଶିଟି ପ୍ରକରଣରେ ମାର୍ମିକ ଓ ସର୍ବଜନୋପଯୋଗୀ ବିଷୟ ପ୍ରତିଫଳିତ ହୋଇଛି। ଏପ୍ରକାର ସତ୍ୟ ଓ ଶ୍ରେଷ୍ଠ ଭାବଗୁଡ଼ିକର ପ୍ରସାରକ ତଥା ମାର୍ଗଦର୍ଶକ ହୋଇଥିବାରୁ ହିଁ ଏହି ପୁସ୍ତକଟିର ନାମ 'ସାଧନ-ନବନୀତ' ଅଟେ।

ସମସ୍ତ ପ୍ରେମୀ ପାଠକଗଣଙ୍କୁ ବିଶେଷତଃ ପରମାର୍ଥପଥର ପଥିକଗଣ ଓ ସତ୍‌ସଙ୍ଗ-ଜିଜ୍ଞାସୁମାନଙ୍କୁ ଆମର ବିନମ୍ର ଅନୁରୋଧ ଯେ ସେମାନେ ଏହି ପୁସ୍ତକଖଣ୍ଡିକୁ ଦୟା କରି ଅନ୍ତତଃ ଥରେ ପଢ଼ନ୍ତୁ ଓ ଅନ୍ୟମାନଙ୍କୁ ମଧ୍ୟ ପଢ଼ିବା ପାଇଁ ଉତ୍ସାହିତ କରନ୍ତୁ। ଆମେ ଆଶା କରୁଛୁ ଯେ—ଏହାର ସର୍ବଜନୋପଯୋଗୀ, ସାଧନରେ ସହାୟକ ଓ ଉପାଦେୟ ସାମଗ୍ରୀଦ୍ୱାରା ଅଧିକାଧିକ ସଜ୍ଜନ ବିଶେଷ ଲାଭାନ୍ୱିତ ହେବେ।

ଗୀତାପ୍ରେସ୍ ଦ୍ୱାରା ପ୍ରକାଶିତ ଏହି ପୁସ୍ତକକୁ ଓଡ଼ିଆ ଭାଷାରେ ପ୍ରକାଶିତ କରିବାରେ 'ଗୀତା ଭାଗବତ ଭବନ'ର ଶ୍ରୀମାନ୍ ପ୍ରଦୀପକୁମାର, ଜ୍ୟୋତିପ୍ରକାଶ ଓ ସତ୍ୟପ୍ରକାଶ ଅକୁଣ୍ଠିତ ସାହାଯ୍ୟ ବଜାୟ ରଖିଥିବାରୁ ଏବଂ ଡକ୍ଟର ମାର୍କଣ୍ଡଦାସ ସମ୍ପାଦନ କାର୍ଯ୍ୟ କରିଥିବାରୁ ଧନ୍ୟବାଦର ପାତ୍ର। ପରବର୍ତ୍ତୀ ସଂସ୍କରଣରେ ଶ୍ରୀ ନିରଞ୍ଜନ ପଣ୍ଡା ଏହାକୁ ଯଥାସମ୍ଭବ ପରିମାର୍ଜିତ କରିଥିବାରୁ ଆମେ ତାଙ୍କୁ ଆମର ଶୁଭେଚ୍ଛା ଜଣାଉଛୁ।

**—ପ୍ରକାଶକ**

॥ ଶ୍ରୀହରିଃ ॥

# ବିଷୟ-ସୂଚୀ





# ଭଗବନ୍ନାମ-ଭଜନ

୧. ଯେବେ ଭଜନର ମୂଲ୍ୟ ଜଣାଯାଏ ଓ ଭଜନ ସବୁଠାରୁ ମୂଲ୍ୟବାନ ବୋଲି ଅନୁଭୂତ ହୁଏ, ତେବେ ଭଜନକୁ ଛାଡ଼ି ଅନ୍ୟ କାମ ହୁଏ ନାହିଁ, ଭଗବାନଙ୍କ ବ୍ୟତୀତ ଅନ୍ୟସ୍ଥାନରେ ମନ ଲାଗେ ନାହିଁ।

୨. ଭଗବାନଙ୍କ ନାମ-ଜପ ପ୍ରତାପରେ ସମସ୍ତ ପାପ ଭସ୍ମ ହୋଇଯାଏ, ପୁଣି କିଛି ଭୟ ରହେ ନାହିଁ। ଭଜନ ହେଉଥିଲେ କୌଣସି ଚିନ୍ତାର କଥା ନାହିଁ।

୩. ଯଦି ଭଗବନ୍ନାମର ଜପ ହେଉ ନାହିଁ, ତାହେଲେ ଭଗବାନଙ୍କ ଠାରେ ବିଶ୍ୱାସ ନାହିଁ ବୋଲି ବୁଝିବା ଉଚିତ।

୪. ପ୍ରତ୍ୟେକ ସମୟ ଆନନ୍ଦରେ ମଗ୍ନ ରହି ପ୍ରେମସହିତ ନିରନ୍ତର ଶ୍ୱାସ ଦ୍ୱାରା ଜପ କରିବାକୁ ଚେଷ୍ଟା କରିବା ଉଚିତ।

୫. ନାମ-ଜପ ସଙ୍ଗେ-ସଙ୍ଗେ ଭଗବାନଙ୍କ ମୋହିନୀ ମୂର୍ତ୍ତିର ସ୍ମରଣ ଆସିବା ପାଇଁ ବିଶେଷ ଚେଷ୍ଟା ରଖିବା ଆବଶ୍ୟକ। ତାଙ୍କୁ ନିଜ ମନରୁ ଏବଂ ଆଖିରୁ କେବେ ନ ଭୁଲନ୍ତୁ, ସବୁବେଳେ ନିଜ ଆଗରେ ଦେଖୁଥିବା ଭଳି ପ୍ରସନ୍ନଚିତ୍ତରେ ଆନନ୍ଦମଗ୍ନ ହୋଇ ରହନ୍ତୁ।

୬. ଯଦି ଭଗବାନଙ୍କ ନାମର ଜପ ଓ ସ୍ୱରୂପର ଧ୍ୟାନ ନିରନ୍ତର ପ୍ରେମପୂର୍ବକ ନିଷ୍କାମ ଭାବେ ଏବଂ ଗୁପ୍ତ ରୂପେ ହୋଇଗଲେ, ତା'ହେଲେ ନିଜ ଅନ୍ତଃକରଣର କଥା କ'ଣ, ସେହି ପୁରୁଷର ଦର୍ଶନମାତ୍ରକେ ଦର୍ଶନକାରୀଙ୍କର ମଧ୍ୟ ପାପ ନଷ୍ଟ ହୋଇଯାଏ।

୭. କଳିଯୁଗରେ ଭଜନ ସଦୃଶ ଉତ୍ତମ ସାଧନ ମୋ ବୁଝିବାରେ କିଛି ହେଲେ ନାହିଁ।

୮. ଏହି ଉଦ୍ୟମ କରିବା ଦରକାର, ଯାହାଦ୍ୱାରା କି ନିରନ୍ତର କେବଳ ଭଜନ ହିଁ ହେବ।

୯. ଯେଉଁମାନେ ଭକ୍ତ ହୋଇଛନ୍ତି, ସମସ୍ତେ ଭଜନର ପ୍ରଭାବରୁ ହିଁ ଭକ୍ତ ହୋଇଛନ୍ତି।

୧୦. ବ୍ୟର୍ଥ କାମରେ ଚିତ୍ତ ଚଳାୟମାନ ରହୁ ପଛକେ, ବୁଦ୍ଧି ମନ୍ଦ ରହୁ ପଛକେ; କିନ୍ତୁ ପ୍ରେମ ଓ ଧ୍ୟାନ ସହକାରେ ଯଦି ନାରାୟଣଙ୍କ ନାମ-ଜପ

ନିରନ୍ତର ହୋଇଗଲେ, ତା'ହେଲେ ସମସ୍ତ ଦୋଷ ନାଶ ହୋଇ ସ୍ୱୟଂ ନାରାୟଣ ଦର୍ଶନ ଦେଇପାରନ୍ତି। ଶ୍ରୀନାରାୟଣ ତ ପ୍ରେମର ଅଧୀନ ଅଟନ୍ତି।

୧୧. ଭଜନ ହିଁ ଉଦ୍ଧାର କରିପାରେ।

୧୨. ଭୟ, ସଙ୍କୋଚ, ମାନ, ବଡ଼ିମା ସବୁ କିଛି ତ୍ୟାଗ କରି, ଏକମାତ୍ର ଧ୍ୟାନସହିତ ନାରାୟଣଙ୍କ ନାମର ହିଁ ଶରଣ ନେବା ଉଚିତ। ସିଏ ହିଁ ଆପଣଙ୍କର ଅଟନ୍ତି। ବାକି ସମସ୍ତ ମିଥ୍ୟା, କଳ୍ପିତ, ସ୍ୱପ୍ନ ପରି ଅଟେ।

୧୩. ପୂର୍ବ ସଂସ୍କାର ଯେତେ ବଳବାନ୍ ହୋଇଥାଉ ପଛେ, ଶ୍ରୀନାରାୟଣ-ନାମର ନିରନ୍ତର ଜପ-ପ୍ରଭାବରେ ପୂର୍ବର ସମସ୍ତ ମନ୍ଦ ସଂସ୍କାର ନଷ୍ଟ ହୋଇପାରେ।

୧୪. ତୁମେ ସଂସାରର ଦୁଃଖରୂପୀ ସମୁଦ୍ରରେ ବୁଡ଼ି ଯାଉଅଛ। ଯଦି ଏଥିରୁ ଉଦ୍ଧାର ପାଇବାର ଅଛି, ତାହେଲେ ଭଗବାନଙ୍କୁ ଭଜ।

୧୫. ମନୁଷ୍ୟ ପ୍ରତିମୁହୂର୍ତ୍ତରେ ଭଗବାନଙ୍କ ଭଜନ ଓ ଧ୍ୟାନ କରିବା ଉଚିତ। ପ୍ରତ୍ୟେକ ସମୟ ଧ୍ୟାନପୂର୍ବକ ନାମ-ଜପ କରିବା ହିଁ ସାର ଅଟେ।

୧୬. ହୃଦୟରେ ବିନା ଜପରେ ହିଁ ଜପ ହେଉଅଛି। ସେଥିରେ କେବଳ ମନ ଲାଗିଗଲେ ହେଲା।

୧୭. ଭିତରେ ଜପ ଚାଲୁଛି, ତାହା ଆଡ଼କୁ ଧ୍ୟାନ ରଖିବା ଉଚିତ।

୧୮. ସମସ୍ତ ଅବତାର ପ୍ରତି ଯାହାଙ୍କର ଭକ୍ତି ଅଛି, ସେମାନଙ୍କ ପାଇଁ **"ହରେ ରାମ ହରେ ରାମ ରାମ ରାମ ହରେ ହରେ। ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ॥"** ସଦା-ସର୍ବଦା ଏହି ମନ୍ତ୍ରର ଜପ ଅତ୍ୟନ୍ତ ଉତ୍ତମ ବୋଲି ଧରାଯାଏ।

୧୯. ଭଗବାନଙ୍କ ନାମର ଜପ ମୁଖ ବା ଶ୍ୱାସଦ୍ୱାରା ନିରନ୍ତର କରିବାର ଅଭ୍ୟାସ ହେବା ଆବଶ୍ୟକ।

୨୦. ଭଗବାନଙ୍କ ମର୍ମ ଜାଣିଯିବା ପରେ ଭଗବାନଙ୍କ ଭଜନ ସମାନ ଆଉ କିଛି ଜଣାଯାଏ ନାହିଁ; ତେଣିକି ବିନା ଉଦ୍ୟମରେ ଭଜନ ହୋଇଗଲେ।

୨୧. ଯଦି ସଂସାରରୁ ପ୍ରେମ ସମ୍ପୂର୍ଣ୍ଣତଃ ଦୂର ନ ହେଉଛି କିଛି କଥା ନାହିଁ। ସବୁବେଳେ ଭଗବାନଙ୍କ ନାମସ୍ମରଣ ଆଉ ତାଙ୍କ ସ୍ୱରୂପର ଚିନ୍ତନ କରୁଥାଅ।

୨୨. ଭଗବାନଙ୍କ ଚିନ୍ତନ ଏକ ଅମୂଲ୍ୟ ବସ୍ତୁ ଅଟେ। ଏହି ମର୍ମର ଜ୍ଞାତା

ତ ନିରନ୍ତର ଧ୍ୟାନ କରିବାପାଇଁ ଚେଷ୍ଟା କରିବ, ସେ ଆନନ୍ଦର ଆକାଂକ୍ଷା ରଖିବ ନାହିଁ। ଅଳ୍ପ ସମୟ ପାଇଁ ମିଳୁଥିବା ଆନନ୍ଦ ହୁଏତ ନ ମିଳୁ କିଛି ଅସୁବିଧା ନାହିଁ, ଭଗବାନଙ୍କ ଚିନ୍ତନ ନିରନ୍ତର ହେଉଥିବା ଉଚିତ।

୨୩. ଯିଏ ଭଗବାନଙ୍କୁ ସର୍ବଜ୍ଞ, ଅନ୍ତର୍ଯ୍ୟାମୀ, ଦୟାସିନ୍ଧୁ ଏବଂ ଅକାରଣରେ ହିତକାରୀ ବୋଲି ଜାଣିବ, ସେ କେବେ କୌଣସି ବସ୍ତୁ ପାଇଁ ତାଙ୍କୁ ପ୍ରାର୍ଥନା କରିବ ନାହିଁ, ଯଦି ପ୍ରାର୍ଥନା କରିବ, କେବଳ ନିରନ୍ତର ଭାବ ସହିତ ଚିନ୍ତନ ହେବାପାଇଁ ହିଁ କରିବ। ପ୍ରତିମୁହୂର୍ତ୍ତରେ ନାମକୁ ସ୍ମରଣ ରଖିବାର ଅଭ୍ୟାସ ଯଦି ହୋଇଯାଏ, ତା'ହେଲେ ଧ୍ୟାନର ସ୍ଥିତି ମଧ୍ୟ ହୋଇପାରେ।

୨୪. ଭଗବାନଙ୍କ ସ୍ମରଣ ସହିତ ସାଂସାରିକ କାମ ହେଉ, ଏପରି ଉଦ୍ୟମ କରିବା ଉଚିତ।

୨୫. ପ୍ରକୃତରେ ଭଜନ ଓ ସତ୍‌ସଙ୍ଗ ହେଲେ ଦୋଷଗୁଡ଼ିକ ଆପେ ଆପେ ହିଁ ଦୂରେଇ ଯାଆନ୍ତି। ସମସ୍ତ ପ୍ରକାରେ ନିଷ୍କାମ ହେଲେ ଅର୍ଥାତ୍ କାମନାର ନାଶ ହୋଇଯିବା ପରେ କ୍ରୋଧ-ବୈର ବା ମାନ-ବଡ଼ିମାର ସ୍ଥାନ ରହେ ନାହିଁ। ଯେତେ ଦୂର ପର୍ଯ୍ୟନ୍ତ ଏଗୁଡ଼ିକ ଆସ୍ଥାନ ଜମେଇ ରହନ୍ତି, ସେତେଦୂର ପର୍ଯ୍ୟନ୍ତ ନିଷ୍କାମତା ଆସି ନାହିଁ ବୋଲି ବୁଝାଯାଏ।

୨୬. ସାଂସାରିକ କର୍ମ ଅପେକ୍ଷା ଭଜନ-ଧ୍ୟାନକୁ ବହୁତ ଉତ୍ତମ ଓ ବହୁମୂଲ୍ୟ ବୁଝିବା ଉଚିତ।

୨୭. ସାଂସାରିକ କର୍ମର ଯେତେ ହାନି ହେଉ ପଛେ, କିନ୍ତୁ ସେହି ଅନିତ୍ୟ କାମ ନିମନ୍ତେ ଭଜନ ଓ ଧ୍ୟାନ ପରିତ୍ୟାଗ କରିବା ଅନୁଚିତ। ଏହିପରି ସମ୍ୟଗ୍ ଧାରଣା ହେବା ପରେ ସାଂସାରିକ କର୍ମ କରୁଥିବା ବେଳେ ମଧ୍ୟ ଭଜନ ହୋଇପାରେ।

୨୮. ଭଜନ ଓ ଧ୍ୟାନପାଇଁ ସର୍ବଦା ପ୍ରଯତ୍ନ କରି ଏହି କଥାକୁ ବିଶ୍ୱାସ କରିବା ଉଚିତ ଯେ ଯାହା କିଛି ହେଉଛି, ସବୁ ଭଗବାନଙ୍କ ଦୟାରୁ ହେଉଛି ଆଉ ସେଥିରେ ମଙ୍ଗଳ ଅଛି।

୨୯. ନାମ-ଜପର ପ୍ରଚାର କରିବା ପାଇଁ ବିଶେଷ ଚେଷ୍ଟା କରିବା ଉଚିତ।

୩୦. ସତ୍‌ସଙ୍ଗ ଓ ଜପର ଅଭ୍ୟାସ ବଢ଼ିବାଦ୍ୱାରା ସାଧନାର ତ୍ରୁଟି ସବୁ ନଷ୍ଟ ହୋଇଯାଏ।

୩୧. ଯେଉଁମାନେ ଭଗବାନଙ୍କର ଗୁଣାନୁବାଦ କରୁଥାଆନ୍ତି, ସେମାନେ ଧନ୍ୟବାଦର ପାତ୍ର ଅଟନ୍ତି ।

୩୨. ଶ୍ୱାସଦ୍ୱାରା ହେଉଥିବା ଜପ ବହୁତ ଉତ୍ତମ ଅଟେ । ତା'ଦ୍ୱାରା ବାସନାର ଖୁବ୍ ଶୀଘ୍ର ନାଶ ହୁଏ, ପରିଣାମରେ ଏହା ମଧ୍ୟ ବହୁତ ଉତ୍ତମ ଅଟେ ।

୩୩. ଭଗବାନଙ୍କ ଭଜନର ପ୍ରଭାବ ଜାଣିଗଲେ ଓ ତାଙ୍କ ଠାରେ ଶ୍ରଦ୍ଧା ହେବାଦ୍ୱାରା ପ୍ରେମ ହୁଏ । ଭଗବାନଙ୍କ ଠାରେ ଯେଉଁମାନଙ୍କର ଶ୍ରଦ୍ଧା ଅଛି, ସେମାନଙ୍କ ସଂସ୍ପର୍ଶରେ ଆସିଲେ ଶ୍ରଦ୍ଧା ବଢ଼େ । ଭଜନକାରୀଙ୍କ ସଂପର୍କରେ ଆସିଲେ ଭଜନ-ଧ୍ୟାନ ଅଧିକ ହୁଏ ଓ ପ୍ରେମୀ ଭକ୍ତଙ୍କ ସହ ସଂପର୍କ ରଖିଲେ ତଥା ତାଙ୍କ ଲିଖିତ କଥାଗୁଡ଼ିକୁ ପଢ଼ିଲେ ଭଗବାନ ତଥା ତାଙ୍କ ଭଜନ ପ୍ରତି ପ୍ରେମ ଜନ୍ମେ ।

୩୪. ନାମ-ଜପରେ ଅଧିକ ଭୁଲ ହେବା ଅନୁଚିତ । ଯେବେ ନାମ ମନେ ପଡ଼ିବ, ତେବେ ବିନା ନାମ ସ୍ମରଣରେ ବିତିଯାଇଥିବା ସମୟ ପାଇଁ ପଶ୍ଚାତ୍ତାପ କରିବା ଆବଶ୍ୟକ । ମନରେ ଏପରି ଭାବିବା ଉଚିତ କି "ରାମ, ରାମ! ମୋର ଏତେ ସମୟ ବୃଥା ଚ୍ଛଲିଗଲା, ମୁଁ ଅସାବଧାନତାରେ ଅନାଥ ଭଳି ଠକିଗଲି! ହେ ହରି! ମୁଁ ଆପଣଙ୍କ ଶରଣାପନ୍ନ । ଆପଣ ହିଁ ଅନାଥର ରକ୍ଷକ ଅଟନ୍ତି । ମୁଁ ନାମମାତ୍ର ପାଇଁ ନିଜକୁ ଅନାଥ ଭାବୁଛି । ଆପଣ କରୁଣାସାଗର ଅଟନ୍ତି । ଆପଣଙ୍କ ଆଡ଼କୁ ଚ୍ଛହିଁଲେ ମନରେ ଧୈର୍ଯ୍ୟ ଆସେ । ଯଦି ମୁଁ ନିଜ ଆଡ଼କୁ ଚ୍ଛହୁଁଛି, ତା'ହେଲେ ମୋର ସାହସ ରହୁ ନାହିଁ, କିନ୍ତୁ ଆପଣଙ୍କ ସ୍ୱଭାବ, ସୁହୃଦତା, ଦୟାଳୁତା ଓ ପ୍ରେମକୁ ଦେଖିଲେ ସାହସ ହୋଇଯାଏ ।

୩୫. କାମ, କ୍ରୋଧ, ଲୋଭ, ମୋହ ଆଦି ଶତ୍ରୁ ଆମର ପ୍ରକୃତ ଧନକୁ ଲୁଟି ନେଉଛନ୍ତି, ଏଣୁ ରାମ-ନାମର ବିଗୁଲ ବଜାଇ ଚ୍ଛଲିବା ଉଚିତ ।

୩୬. ବିଗୁଲ ବାଜିଲେ ଯେପରି ଶତ୍ରୁ (ଡାକୁ) ନିକଟକୁ ଆସନ୍ତି ନାହିଁ, ସେହିପରି ରାମନାମରୂପୀ ବିଗୁଲ ବାଜୁଥିଲେ କାମ-କ୍ରୋଧାଦି ଶତ୍ରୁ ମଧ୍ୟ ନିକଟକୁ ଆସନ୍ତି ନାହିଁ, ଅତଏବ ସଚେତ ରହିବା ଆବଶ୍ୟକ ।

୩୭. ଯେଉଁ ଜପରେ ମନର ପ୍ରାଧାନ୍ୟ ଥାଏ, ତାହା ହିଁ ମାନସିକ ଜପ ବୋଲି କଥିତ ହୁଏ । ଶ୍ୱାସଦ୍ୱାରା ହେଉଥିବା ଜପ ଅପେକ୍ଷା ନାଡ଼ୀଦ୍ୱାରା ଜପ

ହେଲେ, ନାଡ଼ୀଦ୍ୱାରା ହେଉଥିବା ଜପ ଅପେକ୍ଷା କେବଳ ମନରେ ନାମାକ୍ଷରଗୁଡ଼ିକର ଚିନ୍ତନ ହେଲେ ଆଉ ଏହା ଅପେକ୍ଷା ମଧ୍ୟ କେବଳ ଅର୍ଥର ଜ୍ଞାନ ରହିଲେ ମନ ଅଧିକ ସଂଶ୍ଳିଷ୍ଟ ଅଛି ବୋଲି ବୁଝାଯାଏ। ଯେତେ-ଯେତେ ମନ ଅଧିକ ସଂଶ୍ଳିଷ୍ଟ ହୁଏ, ସେତେ-ସେତେ ହିଁ ସାଧନ ପ୍ରଖର ବୁଝାଯାଏ। କିନ୍ତୁ ଶ୍ୱାସ ତଥା ନାଡ଼ୀଦ୍ୱାରା ହେଉଥିବା ଜପକୁ କମ୍ ଭାବିବା ଉଚିତ ନୁହେଁ। ଏହିଭଳି ନାମ-ଜପର ସଂଖ୍ୟା ଅଧିକ ହେଲେ ପରିଣାମ ଉତ୍ତମ ହୁଏ।

୩୮. ସଂସାର-ସମୁଦ୍ରରୁ ପାର ହେବାର ଅଛି ତ ସବୁବେଳେ ଭଗବାନଙ୍କ ନାମ ଜପିବା ଉଚିତ। ସବୁ ସମୟରେ ଭଗବାନଙ୍କ ନାମର ଜପ ଓ ଭଗବାନଙ୍କ ସ୍ୱରୂପକୁ ଧ୍ୟାନ କରିବା ଉଚିତ। ମୃତ୍ୟୁ କେଉଁ ସମୟରେ ଯେ ଆସିଯିବ, ତାହାର କିଛି ଭରସା ନାହିଁ।

୩୯. ଶରୀର ନାଶ ହେବା ପରେ କେବଳ (ବର୍ତ୍ତମାନ କରିଥିବା) ଭଜନ, ଧ୍ୟାନ, ସତ୍‌ସଙ୍ଗ ଓ ଶାସ୍ତ୍ରସମୂହର ଅଭ୍ୟାସ ହିଁ କାମରେ ଆସିବ; ଆଉ କିଛି କାମରେ ଆସିବ ନାହିଁ।

୪୦. ଭଗବନ୍ନାମର ଜପ ନିରନ୍ତର ପ୍ରେମସହିତ ଯଦି ନ ହୁଏ, ତା'ହେଲେ ବିନା ପ୍ରେମରେ ବି କରିବା ଉଚିତ। ଜପର ପ୍ରଭାବରେ ପ୍ରେମ ଆପେ ଆପେ ଜାତ ହୁଏ।

୪୧. ଭଗବାନଙ୍କ ଭଜନ ଓ ସତ୍‌ସଙ୍ଗରେ ପିତା, ପୁତ୍ର, ସ୍ତ୍ରୀ, କୁଟୁମ୍ବ, ଶରୀର ଓ ଧନାଦି ବନ୍ଧନ ବୋଲି ବୁଝିବା ଭୁଲ ଅଟେ। ବନ୍ଧନ ନିଜ ମନର ଦୁର୍ବଳତା। ମନ ହିଁ ବନ୍ଧନର କାରଣ।

୪୨. ଭଗବନ୍ନାମ-ଜପ ଓ ଧ୍ୟାନରୂପକ ଔଷଧ କେବେ ନିଷ୍ଫଳ ହୁଏ ନାହିଁ।

୪୩. ଭଗବାନ ଶ୍ରୀସଚ୍ଚିଦାନନ୍ଦଙ୍କ ଭଜନ-ଧ୍ୟାନର ପ୍ରଯତ୍ନ କେବେ ବ୍ୟର୍ଥ ହୁଏ ନାହିଁ।

୪୪. ମନରୂପକ ନର୍ତ୍ତକକୁ ଭଗବଚ୍ଚରଣରୂପୀ ସ୍ତମ୍ଭ ଉପରେ ଚଢ଼ାଇ ଗ୍ଭଲିଲେ ଏହାର ଚଞ୍ଚଳତା ଲୋପ ପାଏ।

୪୫. ଏହି ଅସାର ସଂସାରରେ କେବଳ ରାମ-ନାମ ହିଁ ସାର ଅଟେ।

୪୬. ବିଶ୍ୱାସପୂର୍ବକ ଭଜନ, ଧ୍ୟାନ, ସତ୍‌ସଙ୍ଗର ପ୍ରଚେଷ୍ଟା କରି ଗ୍ଭଲିବା

ଉଚିତ। ଏପରି କରୁ କରୁ ଭଗବାନଙ୍କ ମର୍ମକୁ ବୁଝା ଯାଇପାରେ, ଏହାପରେ ଭଜନ ବିନା ପ୍ରଚେଷ୍ଟାରେ ହୋଇଗ୍ଲେ।

୪୭. ପ୍ରସନ୍ନ ମନରେ ସଚ୍ଚିଦାନନ୍ଦ ପରମାତ୍ମାଙ୍କ ଚିନ୍ତନ ସହିତ ଶ୍ୱାସ ଦ୍ୱାରା ନାମ-ଜପର ଉଦ୍ୟମ କରିବା ଉଚିତ।

୪୮. ପ୍ରତ୍ୟେକ ସମୟରେ ଶ୍ୱାସଦ୍ୱାରା ଯତ୍ନପୂର୍ବକ ବିଶ୍ୱାସ ଓ ପ୍ରେମ ସହିତ ପ୍ରଣବ (ଓଁକାର)ର ସ୍ମରଣ କରିବା ଅଭ୍ୟାସ ବୋଲି କଥିତ ହୁଏ।

୪୯. ଯଦି ଭଜନ ଓ ଧ୍ୟାନର ସାଧନ ତୀବ୍ର ହେଉଛି, ତେବେ ଘରେ ରହିଲେ ମଧ୍ୟ ଆପତ୍ତି କ'ଣ? ଯଦି ବୈରାଗ୍ୟଯୁକ୍ତ ଭଜନ-ଧ୍ୟାନର ସାଧନ ନ ହୁଏ, ତା'ହେଲେ ବହୁ ସ୍ଥାନରେ ଭ୍ରମଣ କରିବାରେ କୌଣସି ଲାଭ ନାହିଁ।

୫୦. ଏକାନ୍ତସ୍ଥାନରେ ବସି ଓଁକାର ଜପ କରି ନାସିକାଦ୍ୱାରା ଧୀରେ ଧୀରେ ପ୍ରାଣବାୟୁକୁ ବାହାରକୁ ବାହାର କରି ସାମର୍ଥ୍ୟ ଅନୁସାରେ ଅବରୁଦ୍ଧ କର ଓ ପୁଣି ସେହିଭଳି ଓଁକାର ଜପ ସହିତ ଅପାନବାୟୁକୁ ପୂର୍ଣ୍ଣ କରି ଛାଡ଼ି ଦିଅ। ଏସବୁ ଅଭ୍ୟାସର ରୂପ ଅଟେ।

୫୧. ନିଷ୍କାମଭାବରେ ନିରନ୍ତର ଶ୍ରୀପରମାତ୍ମାଙ୍କ ଭଜନ-ଧ୍ୟାନ କରିବା ଭବରୋଗର ଉତ୍ତମ ଔଷଧ ଅଟେ।

୫୨. କାମ କରିବା ସମୟରେ ଶ୍ୱାସଦ୍ୱାରା ନାମର ଜପ ଓ ମନଦ୍ୱାରା ଭଗବତ୍ ସ୍ୱରୂପକୁ ଧ୍ୟାନ କରିବାର ଚେଷ୍ଟା କଲେ ଏକାନ୍ତରେ ମଧ୍ୟ ବହୁତ ଲାଭ ହୁଏ।

୫୩. ଯଦି ସବୁବେଳେ ଲାଳସା ଲାଗି ରହେ, ତା'ହେଲେ ଭଗବାନଙ୍କ ସ୍ମରଣ ନିରନ୍ତର ରହିବା କୌଣସି ବଡ଼ କଥା ନୁହେଁ। ସାଂସାରିକ କାମ କରିବା ସମୟରେ ଏହି ଶରୀର ସହିତ ସମସ୍ତ ସଂସାରକୁ ମୃତ୍ୟୁମୁଖରେ ନାଶ ହେଉଥିବା ଦେଖିବା ଦ୍ୱାରା ନାମର ସ୍ମୃତି ଅଧିକ ରହି ପାରେ।

୫୪. ଶ୍ରୀପରମାତ୍ମାଙ୍କ ନାମର ଜପ ନିଷ୍କାମଭାବରେ ଓ ଧ୍ୟାନସହିତ ନିରନ୍ତର କରିବାର ଅଭ୍ୟାସଦ୍ୱାରା ଭଗବାନଙ୍କଠାରେ ପ୍ରେମ ଜାତ ହୁଏ।

୫୫. ପ୍ରତ୍ୟେକ ଚେଷ୍ଟା ନାମର ଜପ ଏବଂ ସ୍ୱରୂପର ଧ୍ୟାନସହିତ ହେବା ଉଚିତ।

୫୬. ପ୍ରତ୍ୟେକ ସମୟରେ ଧ୍ୟାନସହିତ ଶ୍ରୀଭଗବାନଙ୍କ ନାମ ନିଷ୍କାମ

ପ୍ରେମଭାବରେ ନିରନ୍ତର ଜପ କରିବା ପାଇଁ ନିଶ୍ଚିତରୂପେ ବିଶେଷ ଚେଷ୍ଟା କରିବା ଆବଶ୍ୟକ। ନାମ ଜପର ପ୍ରଭାବରେ ଭଗବତ୍ କୃପାରୁ ଶୀଘ୍ର ଆତ୍ମାର ସୁଧାର ଓ ଉଦ୍ଧାର ହୋଇପାରେ।

୫୭. ଭଗବାନଙ୍କ ଭଜନ, ଧ୍ୟାନ ବିନା କ୍ଷଣଟିଏ ମଧ୍ୟ କାହିଁକି ନଷ୍ଟ କରିବା? ଏଣୁ କ୍ଷଣ-କ୍ଷଣକର ହିସାବ ରଖି ଭଜନ ଧ୍ୟାନରେ ମନ ଲଗାଇବା ଉଚିତ।

୫୮. ଭଜନର ଅଧିକ ଅଭ୍ୟାସ ବିନା ସାଂସାରିକ କାର୍ଯ୍ୟଗୁଡ଼ିକରୁ ଓ ଲୌକିକ କଥୋପକଥନରୁ ପ୍ରୀତି ନଷ୍ଟ ହେବା କଠିନ ଅଟେ।

୫୯. ଯେତେ ସାଂସାରିକ କାମ ଥାଉ ପଛେ, ଭଗବାନଙ୍କ ନାମରେ ପ୍ରେମ ଜାତ ହେଲେ ଭଜନରେ ଭ୍ରମ ଅଧିକ ହୋଇପାରେ ନାହିଁ। କାମ କରିବାବେଳେ ମଧ୍ୟ ନାମଜପର ସ୍ମରଣ ଅଧିକ କରିବାପାଇଁ ଚେଷ୍ଟା କରିବା ବିଧେୟ।

୬୦. ଭଗବନ୍ନାମ-ସ୍ମରଣ ସବୁ ସମୟରେ ରହିବା ଆବଶ୍ୟକ। ତେଣିକି ଅଭ୍ୟାସ ବଢ଼ିବା ଦ୍ୱାରା ସଂସାରରେ ବୈରାଗ୍ୟ ଏବଂ ଭଗବାନଙ୍କ ସ୍ୱରୂପରେ ସ୍ଥିତି ହୋଇପାରେ।

୬୧. ଯଦି ନିଜର କଲ୍ୟାଣ ଚାହୁଁଥାଅ, ତା'ହେଲେ ନିଷ୍କାମ ଭାବରେ ପ୍ରେମପୂର୍ବକ ଶ୍ରୀପରମାତ୍ମାଙ୍କ ପବିତ୍ର ନାମକୁ ନିରନ୍ତର ଜପ କରିବା ନିମିତ୍ତ ଉଦ୍ୟମ କରିବା ବିଧେୟ। ସେହି ବାସ୍ତବିକ ପ୍ରକୃତ ନିଷ୍କାମୀ ପରମ ପ୍ରିୟ ପରମାତ୍ମାଙ୍କ ପ୍ରେମରେ କଳଙ୍କ ଲଗାଇବା ଅନୁଚିତ।

୬୨. ଯେଉଁ ବ୍ୟକ୍ତି ଅସାର ସଂସାରରେ ତୁଚ୍ଛ, ଅନିତ୍ୟ ଓ କ୍ଷଣଭଙ୍ଗୁର ଭୋଗରେ ଆସକ୍ତ ହୋଇ ଭଗବଦ୍‌ଭଜନ, ଧ୍ୟାନ, ସତ୍‌ସଙ୍ଗ ପରିତ୍ୟାଗ କରେ, ସେ ମହାମୂର୍ଖ ଅଟେ। ଶେଷରେ ତାହାର ଘୋର ଦୁର୍ଦଶା ହୁଏ।

୬୩. ମୋ ମତରେ ଏହି ଅସାର ସଂସାରରେ ଭଗବନ୍ନାମ ଜପ ହିଁ ପ୍ରେମ, ଭକ୍ତି ବୃଦ୍ଧି ନିମିତ୍ତ ଶ୍ରେଷ୍ଠ ଉପାୟ ଅଟେ। ମନୁଷ୍ୟଜନ୍ମ ଲାଭ କରି ଯେଉଁମାନେ ଭଗବଦ୍‌ଭକ୍ତି ପାଇଁ ଚେଷ୍ଟା ନ କରନ୍ତି, ସେମାନଙ୍କୁ ଧିକ୍।

୬୪. ଲୋକମାନଙ୍କୁ ଭଗବାନଙ୍କ ଭଜନ, ଧ୍ୟାନ, କୀର୍ତ୍ତନରେ ପ୍ରବୃତ୍ତ କରାଇବା ହିଁ ପରମ କର୍ତ୍ତବ୍ୟ ଅଟେ, ଏହା ହିଁ ଜୀବନର ଉଦ୍ଦେଶ୍ୟ ବୋଲି

ବୁଝିବା ଉଚିତ । ଯିଏ ଏହି କାମ ପାଇଁ ତାର ଜୀବନକୁ ଉତ୍ସର୍ଗ କରିଥାଏ, ସେ ଧନ୍ୟବାଦର ପାତ୍ର ଅଟେ ।

୬୫. ନାମ-ଜପ ହେବାଦ୍ୱାରା ଧ୍ୟାନ ମଧ୍ୟ ଆପେ ଆପେ ହୋଇଯାଏ । ରାମ-ନାମ ପ୍ରକୃତ ଧନ ଅଟେ, ତାହାକୁ ମିଥ୍ୟା କାମରେ ବିନିଯୋଗ କରିବା ଆଦୌ ଉଚିତ ନୁହେଁ ।

୬୬. ରାମ-ନାମ ଅମୂଲ୍ୟ ରତ୍ନ । ତାହାକୁ ଶରୀର ପ୍ରତି ଆରାମଦାୟକ ସାଂସାରିକ ଭୋଗରୂପୀ ପଥରସମୂହଦ୍ୱାରା ଭାଙ୍ଗିବା ଉଚିତ ନୁହେଁ । ଭଗବାନଙ୍କୁ ମିଥ୍ୟା ବସ୍ତୁ ମାଗିବା ମଧ୍ୟ ଉଚିତ ନୁହେଁ ।

୬୭. ହରିକଥାଦ୍ୱାରା ହରିଙ୍କ ଠାରେ ଭାବ ବଢ଼ିଥାଏ । ଭାବରୁ ସାକ୍ଷାତ୍କାର ପାଇଁ ଇଚ୍ଛା ବଢ଼େ । ଇଚ୍ଛା ବଢ଼ିଲେ ଚେଷ୍ଟା ଠାରୁ ଭଜନ ଅଧିକ ହୁଏ । ଭଜନଦ୍ୱାରା ନିଷ୍କାମ ପ୍ରେମ ଜାତ ହୋଇ ଭଗବାନଙ୍କ ଦର୍ଶନ ଲାଭ ହୁଏ । ମହାତ୍ମା ତଥା ଭକ୍ତ ଏହିପରି କହି ଆସୁଛନ୍ତି ।

୬୮. ଅନ୍ତଃକରଣର ଶୁଦ୍ଧି ଭଜନ, ଧ୍ୟାନ ଓ ସତ୍ସଙ୍ଗ ଯୋଗୁଁ ହୁଏ ।

୬୯. ଶ୍ରୀଭଗବାନଙ୍କ ଚରଣକମଳରୂପୀ ନୌକାର ଆଶ୍ରୟ ତଥା ଭଗବାନଙ୍କ ନାମ-ଜପରୂପୀ ରଜ୍ଜୁର ଆଧାର ପ୍ରତ୍ୟେକ ସମୟରେ ପ୍ରସ୍ତୁତ କରି ରଖିବାର ଉପାୟ ତୀବ୍ର ଇଚ୍ଛା ହିଁ ଅଟେ ।

୭୦. ଭଜନ-ଧ୍ୟାନ କରିବା ସହିତ ସଂସାର-କାମ କରିବାଦ୍ୱାରା ପାପ ନାଶ ହୋଇ ଯେତେବେଳେ ହୃଦୟ ଶୁଦ୍ଧ ହୋଇଯିବ, ସେତେବେଳେ କୌଣସି ବାଧା ହେବ ନାହିଁ । ଧନ ଲୋଭ ଛାଡ଼ିଗଲେ ଆଉ ତା'ପାଇଁ କପଟର କଣ ଆବଶ୍ୟକତା ରହିବ?

୭୧. ସାଧନ ଅତି ତୀବ୍ର ହୋଇଗଲେ ଅଧିକ କାମ କରିବାରେ କିଛି କ୍ଷତି ନାହିଁ, କିନ୍ତୁ ପ୍ରଥମେ ବିନା ଶକ୍ତିରେ ଅଧିକ କାମ କରିବା ଅନୁଚିତ । ଭଜନ-ଧ୍ୟାନରେ ତନ୍ମୟ ରହି ଯେତିକି କାମ ହୋଇପାରେ, ସେତିକି କରିବା ଉଚିତ ।

୭୨. ଏକମାତ୍ର ଶ୍ରୀନାରାୟଣଦେବଙ୍କ ଭଜନ, ଧ୍ୟାନ ଓ ସତ୍ସଙ୍ଗ ବ୍ୟତୀତ ଆଉ ସମସ୍ତ କୁସଙ୍ଗ ଅଟେ ।

୭୩. ପ୍ରତ୍ୟେକ ସମୟରେ ଭଗବାନଙ୍କ ନାମ-ଜପ ଓ ସ୍ୱରୂପର

ଧ୍ୟାନ କରିବା ସହିତ ଆସକ୍ତି ଓ ସ୍ୱାର୍ଥକୁ ଛାଡ଼ି ସଂସାରର କାମ କରିବା ଆବଶ୍ୟକ ।

୭୪. ଗୃତକ ପକ୍ଷୀ ପରି ମନରେ ଧାରଣା କରି ଦୃଢ଼ପ୍ରତିଜ୍ଞ ହେବା ଉଚିତ । ପ୍ରାଣ ପଛେ ଚ୍ଲିଯାଉ, କିନ୍ତୁ ଭଗବତ୍‌ପ୍ରାପ୍ତିର ସାଧନ-ଭଜନ-ଧ୍ୟାନ କ୍ଷଣକ ପାଇଁ ଛାଡ଼ିବା ଉଚିତ ନୁହେଁ ।

୭୫. ଯଦି ଭଗବାନଙ୍କ ନାମ-ଜପ ନ ହେଲା, ତା'ହେଲେ ସଂସାରର ସୁଖ କେଉଁ କାମର?

୭୬. ଈଶ୍ୱର-ପ୍ରାପ୍ତିରେ ପୁରୁଷାର୍ଥ ହିଁ ପ୍ରଧାନ ଅଟେ, ଏପରି ଭାବି ଧନକୁ ଧୂଳି ସମାନ ମନେକରି ସେହି ପ୍ରକୃତ ଆନନ୍ଦରେ ଖୁବ୍ ଜୋର୍‌ରେ ଲାଗିବା ଉଚିତ, ଯଦ୍ୱାରା ଭଗବାନ ଅତିଶୀଘ୍ର ପ୍ରାପ୍ତ ହେବେ ।

୭୭. ପୁରୁଷାର୍ଥ ଅଧିକ ହେଲେ ହିଁ ଭଜନ ଅଧିକ ହୁଏ । ଭଜନ ଅଧିକ ହେଲେ ହିଁ ଭଗବାନଙ୍କ ପ୍ରଭାବ ଜାଣିହୁଏ । ଭଗବାନଙ୍କ ନାମ-ଜପ ଅଧିକ କରିବା ଓ ଅଭ୍ୟାସର ଅଧିକ ଚେଷ୍ଟା କରିବା ନିଜ ପୁରୁଷାର୍ଥର ଅଧୀନ ଅଟେ ।

୭୮. ଭଜନ-ଧ୍ୟାନ ଦ୍ୱାରା ହୃଦୟ ଶୁଦ୍ଧ ହୋଇ ପ୍ରେମ ଉତ୍ପନ୍ନ ହୁଏ ।

୭୯. ନାମ-ଜପ ଓ ଧ୍ୟାନଦ୍ୱାରା ନିଶ୍ଚିତଭାବେ ଆତ୍ମାର ଉତ୍ଥାନ ହୁଏ । ମନୁଷ୍ୟ ଯାହାର ନାମ ଉଚ୍ଚାରଣ କରେ, ତାହାରି ସ୍ୱରୂପ ତାହା ସ୍ମୃତିରେ ଆସେ ଏବଂ ତାହା ଯେପରି ବସ୍ତୁ, ସେହିପରି ତାର ପ୍ରଭାବ ପଡ଼େ ।

୮୦. ଭଗବାନଙ୍କ ନାମ-ଜପ ଓ ଧ୍ୟାନଦ୍ୱାରା ସମସ୍ତ ପାପର ନାଶ ହୋଇ ପରମପଦ ପ୍ରାପ୍ତି ହୁଏ, ଏପରି ବିଶ୍ୱାସ କରିବା ଉଚିତ ।

୮୧. ମୁଁ ନିଜ ଅନୁଭବ ସମ୍ବନ୍ଧରେ କ'ଣ ଲେଖିବି, ଏତିକି ହିଁ ପର୍ଯ୍ୟାପ୍ତ ଯେ ମୋତେ ନାମ-ଜପରେ ଶାନ୍ତି ମିଳିଛି ।

୮୨. ଯେତେ ବଡ଼ ପାପୀ ହେଉ ନା କାହିଁକି, ଭଗବାନଙ୍କ ଭଜନ-ଧ୍ୟାନ ଦ୍ୱାରା ସେ ପାପରୁ ମୁକ୍ତ ହୋଇ ଭଗବାନଙ୍କୁ ପ୍ରାପ୍ତ ହୋଇଯାଏ ।

୮୩. ଭଗବାନଙ୍କୁ ମନେ ରଖି ସଂସାରର କାମ ହେଉ, ଏପରି ଚେଷ୍ଟା କରିବା ଆବଶ୍ୟକ । ସଂସାରର କର୍ମଠାରୁ ଭଜନ-ଧ୍ୟାନ ବହୁତ ଉତ୍ତମ ଓ ଅମୂଲ୍ୟ ଅଟେ । ଏଥିପାଇଁ ସଂସାରର କାର୍ଯ୍ୟରେ ହୁଏତ କ୍ଷତି ହେଉ, କିନ୍ତୁ ସଂସାରର କାର୍ଯ୍ୟପାଇଁ ଭଜନ-ଧ୍ୟାନରେ ହାନି କରିବା ଅନୁଚିତ ।

୮୪. ସଂସାରର କାମଧନ୍ଦା ନଦୀର ପ୍ରବାହ ସହ ସମାନ। ଏଗୁଡ଼ିକରେ ପଡ଼ି ମଧ୍ୟ ଯେଉଁ ବ୍ୟକ୍ତି ଭଗବାନଙ୍କ ଚରଣରୂପୀ ନୌକାକୁ ଧ୍ୟାନଦ୍ୱାରା ଧରିନିଏ ଅଥବା ଭଗବାନଙ୍କ ନାମରୂପୀ ନୌକାର ରଜ୍ଜୁକୁ ଧରିନିଏ, ସେ ହିଁ ଏଥିରେ ବୁଡ଼ିଯିବାରୁ ରକ୍ଷା ପାଇପାରେ; କିନ୍ତୁ ଯିଏ ନଦୀ-ପ୍ରବାହରେ ଭାସିଯାଏ, ତା'ର ବହୁତ ଦୁର୍ଦ୍ଦଶା ହୁଏ।

୮୫. ଭଗବନ୍ନାମ-ଜପ ଓ ସତ୍‌ସଙ୍ଗର ତୀବ୍ର ଅଭ୍ୟାସ ବିନା କଳିଯୁଗରେ ପାପସମୂହର ନାଶ ହେବା କଠିନ।

୮୬. ଭଗବାନଙ୍କ ଭଜନ ପରି ପାପ ନାଶକାରୀ ସଂସାରରେ କୌଣସି ବସ୍ତୁ ନାହିଁ। ଭଗବାନଙ୍କ ଗୋଟିଏ ମାତ୍ର ନାମରେ ଏତେ ସାମର୍ଥ୍ୟ ଅଛି ଯେ ତାହା ସମ୍ପୂର୍ଣ୍ଣ ପାପସମୂହକୁ ନାଶ କରିପାରେ।

୮୭. ନିଜର ସମସ୍ତ ସମୟ ଯେପରି ନିରନ୍ତର ପ୍ରେମପୂର୍ବକ ଭଗବାନଙ୍କ ନାମ-ଜପ ଓ ଧ୍ୟାନରେ ଅତିବାହିତ ହେବ, ସମସ୍ତ ପୁରୁଷାର୍ଥ ଲଗାଇ ସେହି ଚେଷ୍ଟା କରିବା ଉଚିତ।

୮୮. ଭଗବାନ ଭଜନକାରୀର ପାପ, ଅବଗୁଣ ଓ ଜାତି ଦେଖନ୍ତି ନାହିଁ, କେବଳ ପ୍ରେମ ହିଁ ଦେଖନ୍ତି।

୮୯. ଯିଏ ଭଗବାନଙ୍କ ମର୍ମକୁ ଜାଣିଛି, ସେ ଭଜନ-ଧ୍ୟାନ କେବେ ଛାଡ଼ିପାରେ ନାହିଁ। ତାକୁ ଭଗବାନଙ୍କ ନାମର ଜପ ଏବଂ ତାଙ୍କ ସ୍ୱରୂପର ଧ୍ୟାନ ସଦୃଶ ଆଉ କିଛି ମଧ୍ୟ ଦେଖାଯାଏ ନାହିଁ।

୯୦. ଧାରାପରି ଶ୍ୱାସଦ୍ୱାରା ଦୀର୍ଘ ସ୍ୱରରେ ନାମ-ଜପ କରିବା ଉଚିତ। ଧାରା ଭଙ୍ଗ କରିବା ଅନୁଚିତ।

୯୧. ଭଗବାନଙ୍କୁ ପାଇବା ପାଇଁ କାମ ଛାଡ଼ିବାର ଆବଶ୍ୟକତା ନାହିଁ, ବରଂ ଭଗବାନଙ୍କ ଠାରେ ମନ ଲଗାଇ କାମ କରିବା ଉଚିତ। କାମରେ ହୁଏତ କ୍ଷତି ହୋଇଯାଉ, କିନ୍ତୁ ଶ୍ରୀଭଗବାନଙ୍କ ଭଜନ-ଧ୍ୟାନରେ ହାନି ନ ହେବା ଉଚିତ।

୯୨. ମୁଖ୍ୟ ବୃତ୍ତିରେ ଭଗବାନଙ୍କ ନାମଜପ ସହିତ ଧ୍ୟାନ କରି ଗୌଣ ବୃତ୍ତିରେ ସଂସାରର କାମ କରିଲେ ଭଗବାନ ଯେତେ ପ୍ରସନ୍ନ ହୁଅନ୍ତି, ସଂସାରର କାମ ଛାଡ଼ିଦେଲେ ଭଗବାନ ସେତେ ପ୍ରସନ୍ନ ହୁଅନ୍ତି ନାହିଁ।

୯୩. ଭଗବନ୍ନାମ-ଜପ ସହିତ ପ୍ରାଣାୟାମର ଅଭ୍ୟାସଦ୍ୱାରା ଏବଂ ଗୁଣ ଓ ପ୍ରଭାବ ସହିତ ଈଶ୍ୱରଙ୍କ ସ୍ୱରୂପକୁ ଧ୍ୟାନ କଲେ ମନର ଚଞ୍ଚଳତା ସହଜରେ ବିନାଶ ହୋଇପାରେ ।

୯୪. ଯିଏ ଭଗବାନଙ୍କ ନାମ-ଜପ ଓ ତାଙ୍କ ସ୍ୱରୂପକୁ ଧ୍ୟାନ କରୁଥାଏ, ତାକୁ ଭଗବାନ ନିଜେ ଆସି ଦର୍ଶନ ଦିଅନ୍ତି ।

୯୫. ସାଢ଼େ ତିନି କୋଟି ମନ୍ତ୍ର ଜପିଲେ କଲ୍ୟାଣ ହେବାର ଅଧିକ ପରିମାଣରେ ଆଶା ଅଛି । ଯଦି କୌଣସି କାରଣରୁ କଲ୍ୟାଣ ନ ହୁଏ, ତା'ହେଲେ ଯୋଗଭ୍ରଷ୍ଟ ପୁରୁଷର ସଦ୍‌ଗତି ନିଶ୍ଚିତ ହୁଏ ।

୯୬. ଯାହାକୁ ଭଗବାନଙ୍କ ନାମ ଓ ଧ୍ୟାନରେ ଆନନ୍ଦରୂପୀ ଅମୃତର ରସ ପ୍ରାପ୍ତ ହୋଇଛି, ସେ ତାକୁ ଛାଡ଼ି ପାରେ ନାହିଁ ।

୯୭. ଭଗବାନଙ୍କ ନାମର ଜପ ପ୍ରସନ୍ନତାପୂର୍ବକ କରିବାର ଅଭ୍ୟାସ ହେବା ନିମନ୍ତେ ପୂର୍ଣ୍ଣଭାବରେ ଚେଷ୍ଟା କରିବା ଉଚିତ । ଚେଷ୍ଟା କରିବା ହିଁ ବାସ୍ତବିକ ଉପାୟ ଅଟେ ।



# ଭଗବନ୍ନାମ

୧. ଭଗବାନଙ୍କ ନାମର ମହିମା ଅନନ୍ତ ଏବଂ ତାହା ବଡ଼ ରହସ୍ୟମୟୀ ଅଟେ ।

୨. ନାମର ମହିମା ସେହି ବ୍ୟକ୍ତି ଜାଣିପାରେ, ଯାହାର ମନ ନିରନ୍ତର ଶ୍ରୀଭଗବନ୍ନାମରେ ସଂଲଗ୍ନ ରହେ, ନାମର ପ୍ରିୟ ଓ ମଧୁର ସ୍ମୃତିରେ ଯାହାର ପ୍ରତିକ୍ଷଣ ରୋମାଞ୍ଚ ଓ ଅଶ୍ରୁପାତ ହୁଏ, ଯିଏ ଜଳବିହୁନେ ମାଛର ବ୍ୟାକୁଳତା ସଦୃଶ ମୁହୂର୍ତ୍ତକର ନାମ-ବିୟୋଗରେ ବିକଳ ହୋଇ ଉଠେ, ଯେଉଁ ମହାପୁରୁଷ ନିମିଷକପାଇଁ ଭଗବାନଙ୍କ ନାମକୁ ବିକଳ ହୋଇ ଛାଡ଼ିପାରେ ନାହିଁ ଆଉ ଯିଏ ନିଷ୍କାମଭାବେ ନିରନ୍ତର ପ୍ରେମପୂର୍ବକ ଜପ କରୁ କରୁ ସେଥିରେ ତଲ୍ଲୀନ ହୋଇସାରିଛି । ଏପରି ମହାତ୍ମା ପୁରୁଷ ଏହି ବିଷୟର ପୂର୍ଣ୍ଣ ମାତ୍ରାରେ ବର୍ଣ୍ଣନା କରିବାର ଅଧିକାରୀ ଅଟେ ।

୩. ଶେଷ, ମହେଶ, ଗଣେଶଙ୍କ କଥା କ'ଣ କହିବା, ନିଜେ ଭଗବାନ

ମଧ୍ୟ ନିଜ ନାମର ମହିମା ଗାଇ ପାରନ୍ତି ନାହିଁ—***"ରାମୁ ନ ସକହିଁ ନାମ ଗୁନ ଗାଈ"।***

୪. ସଂସାରର ସମସ୍ତ ଦୁଃଖରୁ ମୁକ୍ତ ହୋଇ ଈଶ୍ୱର-ସାକ୍ଷାତ୍କାର ପାଇବା ନିମିତ୍ତ ନାମ ଜପ ହିଁ ସର୍ବୋପରି ଯୁକ୍ତିଯୁକ୍ତ ସାଧନ ଅଟେ।

୫. ଗୀତାରେ ଭଗବାନ ଜ୍ଞାନଯୋଗକୁ ସବୁଠୁଁ ଶ୍ରେଷ୍ଠ ବୋଲି କହିଛନ୍ତି, କିନ୍ତୁ ତାହାକୁ ନିଜର ସ୍ୱରୂପ ବୋଲି କହି ନାହାନ୍ତି। କିନ୍ତୁ ଜପଯଜ୍ଞକୁ **'ଯଜ୍ଞାନାଂ ଜପଯଜ୍ଞୋଽସ୍ମି'** (ଗୀତା ୧୦।୨୫) କହି ସ୍ପଷ୍ଟ କରିଦେଲେ ଯେ 'ସମସ୍ତ ପ୍ରକାର ଯଜ୍ଞମଧ୍ୟରେ ଜପଯଜ୍ଞ ତ ମୁଁ ହିଁ ଅଟେ।'

୬. ଭଗବନ୍ନାମ ବଡ଼ ସୁଗମ ସାଧନ। ସମସ୍ତେ ଏହାର ଅଧିକାରୀ ଅଟନ୍ତି। ସମସ୍ତେ ଏହାକୁ ବୁଝିପାରନ୍ତି, ଏହା ସମସ୍ତଙ୍କ ପକ୍ଷେ ସୁଲଭ ଅଟେ, ନିପଟ ମୂର୍ଖ ବ୍ୟକ୍ତି ମଧ୍ୟ ନାମ-ଜପ ଓ କୀର୍ତ୍ତନ କରି ପାରନ୍ତି। ଏଥିରେ କିଛି ଖର୍ଚ୍ଚ କି ପରିଶ୍ରମ ନାହିଁ। କୌଣସି ପ୍ରକାରର ବାଧା ବର୍ତ୍ତମାନ ସୁଦ୍ଧା ନାହିଁ। ଏତେ ସୁଗମତା ଥିବା ସହିତ ସବୁଠୁଁ ବଡ଼ କଥା ହେଲା ଏଥିରେ କୌଣସି ସର୍ତ୍ତ ମଧ୍ୟ ନାହିଁ।

୭. ଭଗବାନଙ୍କ ସମାନ ତ କେବଳ ଭଗବାନ ଅଟନ୍ତି ଏବଂ ଭଗବାନଙ୍କ ନାମ ଭଗବାନଙ୍କ ଠାରୁ ଅଭିନ୍ନ। ଏଥିପାଇଁ ନାମ-ଜପ ସହିତ କାହାରି ତୁଳନା ହୋଇ ନ ପାରେ।

୮. କଳିଯୁଗରେ ନାମର ମହିମା ସର୍ବୋପରି ଅଟେ।

୯. କଳିଯୁଗରେ କେବଳ ଶ୍ରୀହରିଙ୍କ ନାମ ହିଁ କଲ୍ୟାଣର ପରମ ସାଧନ ଅଟେ, ଏହା ବ୍ୟତୀତ ଅନ୍ୟ କୌଣସି ଉପାୟ ନାହିଁ।

୧୦. ଭଗବାନଙ୍କର ଯେକୌଣସି ନାମର ଜପ ଯେକୌଣସି କାଳରେ ଯେକୌଣସି ନିମିତ୍ତରେ ଯେକୌଣସି ବ୍ୟକ୍ତି ଦ୍ୱାରା ମଧ୍ୟ ଯେପରି କରାଯାଉ ନା କାହିଁକି, ତାହା ପରମ କଲ୍ୟାଣକାରୀ ଅଟେ।

୧୧. ଯାହାର ଯେଉଁ ନାମରେ ପ୍ରୀତି ହୁଏ, ସେ ସେହି ନାମର ଜପ-କୀର୍ତ୍ତନ କରିପାରେ।

୧୨. ଭଗବାନଙ୍କୁ କେହି ଯେକୌଣସି ନାମରେ ବି ଡାକୁ, ସେ ସମସ୍ତଙ୍କ ଭାଷା ବୁଝନ୍ତି। ଡାକୁଥିବା ଲୋକର ଧ୍ୟାନରେ ଏ କଥା ରହିବା ଉଚିତ ଯେ ମୁଁ

ଭଗବାନଙ୍କୁ ଡାକୁ ଅଛି । ତେଣିକି ଯେକୌଣସି ନାମ ମଧ୍ୟ ହେଉ । ଯେପରି କେହି ଅପ୍, ଜଳ, ପାଣି, ନୀର, ୱାଟର ଆଦି ଯେକୌଣସି ନାଁ ଧରି ମାଗିଲେ ତାକୁ ଜଳ ହିଁ ମିଳିଥାଏ, ଏ କଥା ଠିକ୍ ସେହିପରି ।

୧୩. ଭଗବାନଙ୍କର ସମସ୍ତ ନାମ ପରମ କଲ୍ୟାଣକାରକ ।

୧୪. ସାଧକକୁ ଗୁରୁଙ୍କ ଠାରୁ ଯେଉଁ ନାମ-ରୂପର ଉପଦେଶ ମିଳିଥିବ, ଯେଉଁ ନାମ ଓ ଯେଉଁ ରୂପରେ ଶ୍ରଦ୍ଧା, ପ୍ରେମ ଓ ବିଶ୍ୱାସର ଆଧିକ୍ୟ ଥିବ ତଥା ଯାହା ନିଜ ଆତ୍ମାର ଅନୁକୂଳ ଜଣାଯାଉଥିବ, ତାକୁ ସେହି ନାମ-ରୂପର ଜପ-ଧ୍ୟାନ ଦ୍ୱାରା ଅଧିକ ଉପକାର ମିଳିପାରେ ।

୧୫. **''ହରେ ରାମ ହରେ ରାମ ରାମ ରାମ ହରେ ହରେ । ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।।''** ଏହି ମନ୍ତ୍ରକୁ ମଧ୍ୟ ଶ୍ରଦ୍ଧା-ଭକ୍ତିପୂର୍ବକ ଜପ-କୀର୍ତ୍ତନ କରିବା ଉଚିତ ।

୧୬. ହରେ ରାମ ମନ୍ତ୍ରର ନିରାକାରପ୍ରଧାନ ଅର୍ଥ ଏହିପରି—'ରାମ'ର ଅର୍ଥ ସର୍ବତ୍ର ବିଚରଣକାରୀ ସଚ୍ଚିଦାନନ୍ଦଘନ ପରମାତ୍ମା ଯିଏ କି ଅଣୁ-ଅଣୁରେ ବ୍ୟାପ୍ତ ଅଥବା ଯୋଗୀଗଣ ଯେଉଁଥିରେ ବିହାର କରନ୍ତି । 'କୃଷ୍ଣ'ରେ 'କୃଷ୍'ର ଅର୍ଥ 'ସତ୍' ଓ 'ଣ'ର ଅର୍ଥ 'ଆନନ୍ଦ' । ଯେଉଁ ଆନନ୍ଦର କେବେ ଅଭାବ ହୁଏ ନାହିଁ, ଯେଉଁ ଆନନ୍ଦ ନିତ୍ୟ, ଅବିନାଶୀ, ସେ ହିଁ 'କୃଷ୍ଣ' ଅଟେ । 'ହରି'ର ଅର୍ଥ—ଯିଏ ସମସ୍ତ ପାପକୁ ହରଣ କରି ନିଏ; ଯାହାର ଉଚ୍ଚାରଣ ଦ୍ୱାରା ସମସ୍ତ ପାପ ଭସ୍ମ ହୋଇଯାଏ, ସେ ହିଁ 'ହରି' । ହରିଙ୍କ ନାମ ସ୍ମରଣ ମାତ୍ରକେ ସବୁ ପାପ ବିନାଶ ହୋଇଯାଏ । ଜପ କରିବା ସମୟରେ ଏହି ଅର୍ଥଗୁଡ଼ିକ ପ୍ରତି ବିଶେଷ ଧ୍ୟାନ ରହିବା ଉଚିତ ।

୧୭. **ଏତଦ୍ଧ୍ୟେବାକ୍ଷରଂ ବ୍ରହ୍ମ ଏତଦ୍ଧ୍ୟେବାକ୍ଷରଂ ପରମ୍ ।**
**ଏତଦ୍ଧ୍ୟେବାକ୍ଷରଂ ଜ୍ଞାତ୍ୱା ଯୋ ଯଦିଚ୍ଛତି ତସ୍ୟ ତତ୍ ।।**

(କଠ. ୧ । ୨ । ୧୬)

''ଏହି ଓଁକାର ଅକ୍ଷର ହିଁ ବ୍ରହ୍ମ (ସଗୁଣବ୍ରହ୍ମ), ଏହା ହିଁ ପରବ୍ରହ୍ମ (ନିର୍ଗୁଣ ବ୍ରହ୍ମ ଅଟେ; ଏହି ଓଁକାରରୂପ ଅକ୍ଷରକୁ ଜାଣି ମନୁଷ୍ୟ ଯେଉଁ ବସ୍ତୁକୁ ଇଚ୍ଛା କରେ, ତାକୁ ତାହା ହିଁ ମିଳିଯାଏ ।''

୧୮. କଳ୍ପବୃକ୍ଷରୂପକ ଭଗବଭଜନର ପ୍ରତାପରେ ଯେଉଁ ବସ୍ତୁକୁ ମନୁଷ୍ୟ ଇଚ୍ଛା କରେ, ତାକୁ ତାହା ମିଳିପାରେ ।

୧୯. ଯେଉଁ ଫଳ ଯୋଗୀମାନଙ୍କୁ ମିଳେ, ସେହି ଫଳ ଜପକାରୀଙ୍କୁ ମଧ୍ୟ ମିଳେ ।

୨୦. ଆତ୍ମାର କଲ୍ୟାଣ ଚାହୁଁଥିବା ପ୍ରକୃତ ପ୍ରେମୀ ଭକ୍ତମାନେ ନିଷ୍କାମଭାବରେ ହିଁ ଭଜନ କରିବା ଉଚିତ । ଶାସ୍ତ୍ରମାନଙ୍କରେ ନିଷ୍କାମ ପ୍ରେମୀ ଭକ୍ତଙ୍କୁ ଅଧିକ ପ୍ରଶଂସା କରାଯାଇଅଛି ।

୨୧. ନାମ-ଜପ କୌଣସି ପ୍ରକାରର ଛୋଟ ବଡ଼ କାମନା ପାଇଁ ନ କରି କେବଳ ଭଗବାନଙ୍କ ବିଶୁଦ୍ଧ ପ୍ରେମ ପାଇଁ ହିଁ କରିବା ଉଚିତ ।

୨୨. ନିଷ୍କାମଭାବେ ପ୍ରେମପୂର୍ବକ ବିଧିସହିତ ଜପ କରୁଥିବା ସାଧକ ଖୁବ୍ ଶୀଘ୍ର ଉତ୍ତମ ଲାଭ ପାଇପାରେ ।

୨୩. ଭଜନକୁ କୌଣସି ସାଂସାରିକ କାର୍ଯ୍ୟରେ ବ୍ୟବହାର ନ କରିବା ଉଚିତ । କିନ୍ତୁ କର୍ତ୍ତବ୍ୟ ବୋଲି ଭାବି ଈଶ୍ୱରଭଜନ ସଦା ସର୍ବଦା କରିବା ଉଚିତ; କାରଣ ଭଜନର ଆଦି, ମଧ୍ୟ, ଅନ୍ତରେ କେବଳ କଲ୍ୟାଣ ହିଁ ଭରି ରହିଛି ।

୨୪. ଭଗବାନଙ୍କ ଭଜନକାରୀକୁ ଏହି ଭାବନା ନ ରଖିବା ଉଚିତ ଯେ, ଏହି ଭଜନରେ ପାପ ନାଶ ହୋଇଯିବ । ଭଗବାନଙ୍କ ରହସ୍ୟକୁ ଜାଣିଥିବା ଭକ୍ତ ଅପରାଧ କ୍ଷମା କରାଇବା ନିମିତ୍ତ ମଧ୍ୟ ଭଜନର ଉପଯୋଗ କରେ ନାହିଁ । ଈଶ୍ୱର-ଭଜନ ଦ୍ୱାରା ମାୟାରୂପୀ ସଂସାର ଆପେ ଆପେ ନଷ୍ଟ ହୋଇଯାଏ, ଏହି ରହସ୍ୟକୁ ଜାଣିଥିବା ପୁରୁଷ କ'ଣ କେବେ ତୁଚ୍ଛ ସାଂସାରିକ ଦୁଃଖସମୂହର ନିବୃତ୍ତି ନିମିତ୍ତ ଭଜନର ଉପଯୋଗ କରିପାରେ? ଯଦି କରେ, ତା'ହେଲେ ସେ ବଡ଼ ଭୁଲ କରେ ।

୨୫. ନାମ ନେଉଥିବା ସମସ୍ତ ଲୋକଙ୍କୁ ଈଶ୍ୱରପ୍ରାପ୍ତି ହେବ, କିନ୍ତୁ ଯେ ଶ୍ରଦ୍ଧା, ପ୍ରେମ ତଥା ନିଷ୍କାମ ଭାବରେ ନାମ ଜପିବ, ତାକୁ ଖୁବ୍ ଶୀଘ୍ର ପ୍ରାପ୍ତି ହେବ ।

୨୬. ପ୍ରେମ ଓ ଆଦର ସହିତ ନାମ-ଜପରେ ନିମ୍ନଲିଖିତ ଚାରୋଟି କଥା ଆବଶ୍ୟକ ଅଟେ—

(କ) ଗୁପ୍ତ ହେବା ଉଚିତ ।

(ଖ) ଅର୍ଥ ସହିତ ହେବା ଉଚିତ ।

(ଗ) ନିଷ୍କାମ ଭାବରେ ହେବା ଉଚିତ।

(ଘ) ନିରନ୍ତର ହେବା ଉଚିତ।

୨୭. ଜପ ନିରନ୍ତର ଅର୍ଥାତ୍ ଉଠିବା-ବସିବା, ଶୋଇବା-ଜାଗ୍ରତ ହେବା ପ୍ରତ୍ୟେକ ସମୟରେ କରିବା ଉଚିତ। ଜପ ଯେତେ ଗୁପ୍ତ ହେବ, ସେତେ ଲାଭଦାୟକ ହେବ। ଗୁପ୍ତ ଜପର ଫଳ ଅଦ୍ଭୁତ ଅଟେ।

୨୮. କରାଯାଇଥିବା ଗୁପ୍ତ ଜପ ଯଦି କାହାରି ପାଖରେ ପ୍ରକାଶ କରିଦିଆଯାଏ, ତା'ହେଲେ ତାହାର ମହତ୍ତ୍ୱ କମିଯାଏ। କୌଣସି ପ୍ରକାର ସଙ୍କେତରେ ମଧ୍ୟ ତାହା ପ୍ରକାଶିତ କରିବା ଉଚିତ ନୁହେଁ।

୨୯. ଜପ ମଧ୍ୟରେ ଗୁପ୍ତଜପ ହିଁ ଅଧିକ ଫଳଦାୟକ ଅଟେ। କେହି ଯେପରି ଜାଣି ନ ପାରେ, ସେପରି ଅତ୍ୟନ୍ତ ଗୁପ୍ତଭାବେ ଜପ ହେବା ଆବଶ୍ୟକ।

୩୦. ପ୍ରେମ ଓ ଶ୍ରଦ୍ଧା ସହିତ ନିଷ୍କାମଭାବ ଏବଂ ଗୁପ୍ତ ରୂପରେ ଧ୍ୟାନ ସହିତ ଯେଉଁ ଜପ କରାଯାଏ, ତାହା ମହାନ୍ ଫଳଦାୟକ ଅଟେ।

୩୧. ନାମରେ ପ୍ରୀତି, ଶ୍ରଦ୍ଧା ଓ ବିଶ୍ୱାସ ରହିବା ଆବଶ୍ୟକ।

୩୨. ସାଧକ ପାଇଁ ଅଧିକ ସୁଗମ ଓ ଲାଭପ୍ରଦ ହେଉଛି ଶ୍ୱାସଦ୍ୱାରା କରାଯାଉଥିବା ଜପ।

୩୩. ତାହା ହିଁ ସବୁଠୁଁ ଉତ୍ତମ ଜପ, ଯାହା ମନରେ ହୁଏ, ଯେଉଁଥିରେ ଜିହ୍ୱା ହଲାଇବା ଓ ଓଷ୍ଠରେ ଉଚ୍ଚାରଣ କରିବାର କୌଣସି ଆବଶ୍ୟକତା ପଡ଼େ ନାହିଁ। ଏପରି ଜପରେ ଧ୍ୟାନ ଓ ଜପ ଉଭୟ ଏକସାଙ୍ଗରେ ହୋଇପାରେ।

୩୪. ଶ୍ୱାସ-ପ୍ରଶ୍ୱାସ ସମୟରେ କଣ୍ଠରେ ନାମ ଜପ କର, ଜିଭ ଓ ଓଷ୍ଠକୁ ବନ୍ଦ କରି ଶ୍ୱାସ ସହିତ ନାମର ଆବୃତ୍ତି କରିଚାଲ। ଏହା ହିଁ ପ୍ରାଣଜପ ଅଟେ। ଏହାକୁ ପ୍ରାଣଦ୍ୱାରା ଉପାସନା କହନ୍ତି। ଏହି ଜପ ଉଚ୍ଚଶ୍ରେଣୀର ଅଟେ।

୩୫. ସ୍ୱାଭାବିକଭାବେ ଯେଉଁମାନଙ୍କଦ୍ୱାରା ଆଠ ପ୍ରହର ନାମ-ଜପ ହୁଏ, ତାଙ୍କ ପାଇଁ କୌଣସି ବିଧି ନାହିଁ।

୩୬. ବିଧି ଓ ସଂଖ୍ୟାର ନିୟମ ରଖିଲେ ଠିକ୍ ସମୟରେ ସେତିକି ଜପ ହୋଇଯାଏ।

୩୭. ନାମ-ସ୍ମରଣରେ କାଳର ମଧ୍ୟ କୌଣସି ନିୟମ ନାହିଁ।

୩୮. ଭଗବାନଙ୍କ ନାମର ମହିମା ଏତେ ଅପାର ଯେ ତାହା ବିଷୟରେ ଯେତେ ଅଧିକ ଗାନ କଲେ ବି କମ୍ ହେବ। କିନ୍ତୁ ନାମ-ଜପକାରୀଙ୍କୁ ଲାଭ ଦେଖା ନ ଯିବାର ପ୍ରଧାନ କାରଣ ହେଲା ଦଶ ନାମାପରାଧକୁ ତ୍ୟାଗ ନ କରି ଜପ କରିବା।

୩୯. ଦଶ ଅପରାଧକୁ ତ୍ୟାଗ କରି ଜପ କଲେ ନାମ-ଜପର ଶାସ୍ତ୍ରବର୍ଣ୍ଣିତ ଫଳ ଅବଶ୍ୟ ପ୍ରାପ୍ତ ହୋଇ ପାରେ।

୪୦. **ସନ୍ନିନ୍ଦାସତି ନାମବୈଭବକଥା ଶ୍ରୀଶେଶୟୋର୍ଭେଦଧୀ-**
**ରଶ୍ରଦ୍ଧା ଶ୍ରୁତିଶାସ୍ତ୍ରଦୈଶିକଗିରାଂ ନାମ୍ନ୍ୟର୍ଥବାଦଭ୍ରମଃ।**
**ନାମାସ୍ତୀତି ନିଷିଦ୍ଧବୃତ୍ତିବିହିତତ୍ୟାଗୌ ହି ଧର୍ମାନ୍ତରୈଃ**
**ସାମ୍ୟଂ ନାମ୍ନି ଜପେ ଶିବସ୍ୟ ଚ ହରେର୍ନାମାପରାଧା ଦଶ॥**

''ସତ୍‌ପୁରୁଷଙ୍କ ନିନ୍ଦା, ଅଶ୍ରଦ୍ଧାଳୁଙ୍କୁ ନାମର ମହିମା କହିବା, ବିଷ୍ଣୁ ଓ ଶିବଙ୍କ ମଧ୍ୟରେ ଭେଦବୁଦ୍ଧି, ବେଦ, ଶାସ୍ତ୍ର ଓ ଗୁରୁଙ୍କ ବାଣୀରେ ଅବିଶ୍ୱାସ, ହରିନାମରେ ଅର୍ଥବାଦର ଭ୍ରମ ଅର୍ଥାତ୍ ତାହାକୁ କେବଳ ସ୍ତୁତିମାତ୍ର ବୋଲି ଭାବିବା, ନାମ ବଳରେ ବିହିତର ତ୍ୟାଗ ଓ ନିଷିଦ୍ଧର ଆଚରଣ, ଅନ୍ୟ ଧର୍ମମାନଙ୍କ ସହ ନାମର ତୁଳନା ଅର୍ଥାତ୍ ଶାସ୍ତ୍ରବିହିତ କାମଗୁଡ଼ିକ ସହ ନାମର ତୁଳନା—ଏ ସମସ୍ତ ଭଗବାନ ଶିବ ଓ ବିଷ୍ଣୁଙ୍କ ନାମଜପରେ ନାମର ଦଶ ଅପରାଧ ଅଟେ।''

୪୧. ଯଦି ମନୁଷ୍ୟ ବିଶ୍ୱାସପୂର୍ବକ ସର୍ବଦା ନାମ-ଜପ କରେ, ତା'ହେଲେ ଜପ କରୁ କରୁ ନାମାପରାଧଗୁଡ଼ିକ ନାଶ ହୋଇପାରେ ଏବଂ ସମସ୍ତ ପାପ ନଷ୍ଟ ହୋଇ ଭଗବତ୍‌ପ୍ରାପ୍ତି ମଧ୍ୟ ହୋଇପାରେ।

୪୨. ଶ୍ରୀହରିଙ୍କ ପବିତ୍ର ନାମକୁ ଥରେମାତ୍ର ଉଚ୍ଚାରଣ କରି ଦେଲେ ପାପସମୂହ ନାଶ ହୋଇ ଅକଥନୀୟ ଫଳ ପ୍ରାପ୍ତି ହୋଇଥାଏ। ପ୍ରତ୍ୟକ୍ଷରେ ସେପରି ଫଳ ଦୃଷ୍ଟିଗତ ନ ହେବାରେ ଆମର ଅଶ୍ରଦ୍ଧା ହିଁ ପ୍ରଧାନ କାରଣ ଅଟେ।

୪୩. ଅବିଶ୍ୱାସ ହିଁ ଆମର ଅପରାଧ ଅଟେ। ଯାହାର ପୂର୍ଣ୍ଣ ବିଶ୍ୱାସ ଅଛି, ତାକୁ ପୂର୍ଣ୍ଣଫଳ ମିଳେ। ପରମେଶ୍ୱରଙ୍କ ପ୍ରଭାବ ଏବଂ ତତ୍ତ୍ୱକୁ ବୁଝିବା କ୍ଷଣି ଅତ୍ୟନ୍ତ ଶ୍ରଦ୍ଧା ଜାତ ହୋଇଯାଏ। ତାଙ୍କ ସହିତ ଅତୁଳନୀୟ ପ୍ରେମ

ହୋଇଯାଏ। ଯିଏ ବିଶ୍ୱାସପୂର୍ବକ ଶ୍ରଦ୍ଧାର ସହ ପ୍ରେମଭରା ହୃଦୟରେ ଭଗବାନଙ୍କର ନାମ ନିଅନ୍ତି, ତାଙ୍କୁ ପ୍ରତ୍ୟକ୍ଷ ଶାନ୍ତି ଓ ଆନନ୍ଦ ମିଳିଥାଏ।

୪୪. ନାମ ପ୍ରତି ଆମ ହୃଦୟରେ ଯଥାର୍ଥ ଶ୍ରଦ୍ଧା ନାହିଁ, ହୃଦୟରେ ଆକର୍ଷଣ ଓ ପ୍ରେମ ନାହିଁ, ନିଷ୍କାମଭାବ ନାହିଁ, ଆଦର-ବୁଦ୍ଧି ନାହିଁ, ଏଥିଯୋଗୁଁ ସଫଳତା ମିଳୁ ନାହିଁ।

୪୫. ପ୍ରତ୍ୟେକ ଭାଇ-ଭଉଣୀ ନିଜର କଲ୍ୟାଣ ପାଇଁ ପ୍ରତିଦିନ ପ୍ରେମପୂର୍ବକ ଅଧିକରୁ ଅଧିକ ସଂଖ୍ୟାରେ ଭଗବନ୍ନାମର ଜପ କରିବା ଉଚିତ। ପ୍ରତିଦିନ ଯେତିକି ଜପ କରୁଛନ୍ତି, ତା'ଠାରୁ ଅଧିକ କରିବାକୁ ଚେଷ୍ଟା କରିବା ଉଚିତ।

୪୬. ସାଧକ ଭଗବାନଙ୍କ ପ୍ରେମରେ ବିହ୍ୱଳ ହୋଇ ନିଷ୍କାମଭାବେ ନିତ୍ୟ ନିରନ୍ତର ଦିନ-ରାତି କର୍ତ୍ତବ୍ୟ-କର୍ମସମୂହ କରି ମଧ୍ୟ ଧ୍ୟାନସହିତ ଶ୍ରୀଭଗବନ୍ନାମ ଜପର ବିଶେଷ ଚେଷ୍ଟା କରିବା ଉଚିତ।

୪୭. ଆଳସ୍ୟ ଓ ପ୍ରମାଦକୁ ତ୍ୟାଗ କରି ଯେକୌଣସି ପ୍ରକାରରେ ହେଉ, ଉଠିବା, ବସିବା, ଶୋଇବା ଓ ସମ୍ପୂର୍ଣ୍ଣ କର୍ତ୍ତବ୍ୟ କର୍ମ କରିବା ସହିତ ସର୍ବଦା ଭଜନ ଅଭ୍ୟାସ କରିବା ଉଚିତ।

୪୮. ସଂସାରର ସମସ୍ତ ବିଷୟକୁ ବିଷ-ଲଡ୍ଡୁ ଭାବି, ସେ ସବୁଥିରୁ ମନ ନିବୃତ୍ତ କରି ଶ୍ରୀପରମାତ୍ମାଙ୍କ ନାମ-ଜପ କରିବା ହିଁ ପରମ କର୍ତ୍ତବ୍ୟ ଅଟେ। ଯିଏ ପରମାତ୍ମାଙ୍କ ନାମକୁ ଜପ କରେ, ଦୟାଳୁ ପରମାତ୍ମା ତାକୁ ଖୁବ୍ ଶୀଘ୍ର ସଂସାରବନ୍ଧନରୁ ମୁକ୍ତ କରି ଦିଅନ୍ତି।

୪୯. ଏହି ଅନିତ୍ୟ, କ୍ଷଣଭଙ୍ଗୁର, ନାଶବାନ୍ ସଂସାରର ସମସ୍ତ ମିଥ୍ୟା ଭୋଗସମୂହକୁ ତ୍ୟାଗ କରି ସେହି ସର୍ବଶକ୍ତିମାନ୍ ନ୍ୟାୟକାରୀ ଶୁଦ୍ଧ ପରମ ଦୟାଳୁ ପ୍ରକୃତପ୍ରେମୀ ପରମାତ୍ମାଙ୍କ ପବିତ୍ର ନାମ ନିଷ୍କାମ ଓ ପ୍ରେମଭାବରେ ଧ୍ୟାନସହିତ ସଦା-ସର୍ବଦା ଜପ କରିବା ଉଚିତ।

୫୦. ଜୀବନର ସଦ୍‌ବିନିଯୋଗ ଭଜନରେ ହିଁ ହୁଏ; ଯଦି ବର୍ତ୍ତମାନ ପ୍ରମାଦ ଯୋଗୁଁ ଏହି ଅମୂଲ୍ୟ ସମୟକୁ ହରେଇ ଦେବା, ତା'ହେଲେ ପରେ ପଶ୍ଚାତ୍ତାପ ବିନା ଆଉ କିଛି ମିଳିବ ନାହିଁ।

୫୧. ଜୀବନର ଶେଷ ସମୟ ନିମିତ୍ତ କୌଣସି ସର୍ତ୍ତ ନାହିଁ। ଭଗବାନ ପରମ ଦୟାଳୁ ଅଟନ୍ତି। ସେ ଦୟା କରି ହିଁ ଜୀବକୁ ଏହି ମୋକ୍ଷୋପଯୋଗୀ

ମନୁଷ୍ୟଶରୀର ଦେଇଛନ୍ତି ଓ ସେହି ଦୟାମୟ ଏହି ବିଧାନ ମଧ୍ୟ ତିଆରି କରିଛନ୍ତି ଯେ ଶେଷକାଳରେ ଯିଏ କୌଣସି ପ୍ରକାରେ ବି ମୋ ନାମ ସ୍ମରଣ କରିବ, ସେ ମୋତେ ପ୍ରାପ୍ତ ହେବ।

୫୨. ଯେପରି ମେଘକୁ ଦେଖି ଚାତକ ଜଳ ପାଇଁ ପୀ-ପୀ ଶବ୍ଦ କରେ, ସେହିପରି ଭଗବାନଙ୍କ ଠାରେ ପରମ ପ୍ରେମ ହେବା ପାଇଁ ଏବଂ ଭଗବାନଙ୍କ ପ୍ରାପ୍ତି ନିମିତ୍ତ ଭଗବାନଙ୍କ ନାମ ଓ ଗୁଣ କୀର୍ତ୍ତନରେ ନିତ୍ୟ-ନିରନ୍ତର ତତ୍ପର ହୋଇ ପ୍ରାଣ ଥିବା ପର୍ଯ୍ୟନ୍ତ ଚେଷ୍ଟା କରିବା ଉଚିତ।

୫୩. ଯେପରି ଲୋଭୀ ବେପାରୀର ଏକମାତ୍ର ଉଦ୍ଦେଶ୍ୟ ଟଙ୍କା ରୋଜଗାର କରିବା ଓ ସଞ୍ଚୟ କରିବା ଏବଂ ସେ ଯେପରି ନିରନ୍ତର ସେହି ଲକ୍ଷ୍ୟକୁ ଧ୍ୟାନରେ ରଖି ସବୁକାମ କରେ, ଠିକ୍ ସେହିପରି ଭଗବତ୍‌ପ୍ରେମକୁ ଲକ୍ଷ୍ୟ କରି ଆମେ ରାମନାମରୂପୀ ପ୍ରକୃତ ଧନକୁ ସଞ୍ଚୟ କରିବା ଉଚିତ।

୫୪. ଏ ଶରୀର ଅତି ଦୁର୍ଲଭ ଅଟେ, କିନ୍ତୁ ଏହା ନାଶବାନ୍ ଓ ସୁଖରହିତ ଅଟେ। ଦୁର୍ଲଭ କହିବାର କାରଣ—କେବଳ ଏହି ଶରୀରଦ୍ୱାରା ହିଁ ପରମ କଲ୍ୟାଣ ହୋଇପାରେ। ଏପରି ଶରୀରକୁ ପାଇ ସବୁ ସମୟରେ ଭଗବାନଙ୍କୁ ଭଜିବା ଉଚିତ।

୫୫. ସଂସାରରେ ଭଗବାନଙ୍କ ଭଜନ ସଦୃଶ ଆଉ କୌଣସି ବସ୍ତୁ ନାହିଁ। ଏହି ତତ୍ତ୍ୱକୁ ଯେଉଁମାନେ ଜାଣି ଯାଆନ୍ତି, ସେମାନେ ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ ଭଗବାନଙ୍କୁ ଭୁଲି ପାରନ୍ତି ନାହିଁ।

୫୬. ଭଗବଦ୍‌ଭଜନର ପ୍ରକୃତ ମର୍ମକୁ ସେହି ମନୁଷ୍ୟ ଜାଣିପାରେ, ଯାହା ଉପରେ ଭଗବାନଙ୍କର ପୂର୍ଣ୍ଣମାତ୍ରାରେ ଦୟା ହୁଏ।

୫୭. ଯଦି ଅନନ୍ତ ବ୍ରହ୍ମାଣ୍ଡର ସମସ୍ତ ଐଶ୍ୱର୍ଯ୍ୟସୁଖକୁ ଗୋଟିଏ ପଟରେ ରଖାଯାଏ ଓ ଭଗବାନଙ୍କ ମୁହୂର୍ତ୍ତକର ଜପ ବା ସ୍ମରଣକୁ ଅନ୍ୟ ଗୋଟିଏ ପଟରେ ରଖାଯାଏ, ତେବେ ମଧ୍ୟ ତାହା ସେହି ଜପ-କୀର୍ତ୍ତନର ସମକକ୍ଷ ହୋଇ ପାରିବ ନାହିଁ।

୫୮. ଆମର ଭଜନ କରିବାର ସ୍ୱତନ୍ତ୍ରତା ଅଛି, ପୁଣି ସଂସାରରେ ଭଗବାନଙ୍କ ନାମ ବି ରହିଛି; ତଥାପି ଆମର ଦୁର୍ଗତି କାହିଁକି ହେଉଛି?

୫୯. ଏପରି ପରମ କାରୁଣିକ ପରମ ପ୍ରେମୀ ସର୍ବଶକ୍ତିମାନ୍ ସର୍ବବ୍ୟାପୀ

ପରମାତ୍ମାଙ୍କୁ ଭୁଲି ଯାଇ ମୁହୂର୍ତ୍ତକ ପାଇଁ ମଧ୍ୟ ଅନ୍ୟ ବସ୍ତୁର ଭଜନ ବା ଉପାୟ କରିବା ଘୋର ମୂର୍ଖତା ବ୍ୟତୀତ ଆଉ କିଛି ନୁହେଁ।

୬୦. କହିଲ ଭଲା—କ'ଣ ପ୍ରକୃତ ପ୍ରେମୀ ନିଜର ପ୍ରେମାସ୍ପଦକୁ ଛାଡ଼ି କେବେ ଅନ୍ୟକୁ ମନରେ ସ୍ଥାନ ଦେଇପାରେ? ଯେଉଁ ଭାଗ୍ୟବାନ୍ ଲୋକେ ପରମ ସୁଖମୟ ପରମାତ୍ମାଙ୍କ ପ୍ରଭାବକୁ ଜାଣି ତାହାଙ୍କୁ ହିଁ ନିଜର ଏକମାତ୍ର ପ୍ରେମାସ୍ପଦ କରି ନିଅନ୍ତି, ସେମାନେ ତ ଦିନରାତି ତାଙ୍କର ନାମର ସ୍ମୃତିରେ ତଲ୍ଲୀନ ରହନ୍ତି, ସେମାନେ ଅନ୍ୟ ବସ୍ତୁ କେବେ ଇଚ୍ଛା କରନ୍ତି ନାହିଁ, କି ତାଙ୍କୁ ଅନ୍ୟ କିଛି ପସନ୍ଦ ଆସେ ନାହିଁ।

୬୧. ଉଠିବା-ବସିବା, ଖାଇବା-ପିଇବା, ଶୋଇବା-ଜାଗିବା ଓ ପ୍ରତ୍ୟେକ ସାଂସାରିକ କାର୍ଯ୍ୟ କରୁଥିବା ସମୟରେ ସାଧକ ନାମ-ଜପ ସଙ୍ଗେ-ସଙ୍ଗେ ହିଁ ମନ, ବୁଦ୍ଧିରେ ଭଗବାନଙ୍କ ସ୍ୱରୂପର ଚିନ୍ତନ ଓ ନିର୍ଣ୍ଣୟ କରି ଚାଲିବା ଉଚିତ; ଯାହା ଫଳରେ ମୁହୂର୍ତ୍ତକ ପାଇଁ ମଧ୍ୟ ଭଗବତ୍ ସ୍ମୃତିର ବିଚ୍ଛେଦ ନ ଘଟେ।

୬୨. ପ୍ରିୟର ସ୍ମରଣମାତ୍ରକେ ହୃଦୟ ପ୍ରଫୁଲ୍ଲିତ ହୋଇଯାଏ। ପ୍ରେମରେ ମୁଗ୍ଧ ହୋଇ ଭଗବାନଙ୍କ ନାମର ଜପ ଓ ସ୍ୱରୂପର ଧ୍ୟାନ କରିବା ଆବଶ୍ୟକ।

୬୩. ଦର୍ଶନ ଓ ଧ୍ୟାନର କଥା କିଏ ପଚାରେ, ପ୍ରଭୁଙ୍କ ସ୍ମରଣ ମାତ୍ରକେ ଗୋଟିଏ ମୁହୂର୍ତ୍ତରେ ମନୁଷ୍ୟ ପବିତ୍ର ହୋଇପାରେ। କେବଳ ଏତିକି ନୁହେଁ, ପ୍ରଭୁଙ୍କ ଦୟାର ପ୍ରତାପରେ ତାଙ୍କ ନାମ-ଉଚ୍ଚାରଣ ମାତ୍ରକେ ମନୁଷ୍ୟର ଉଦ୍ଧାର ବି ହୋଇପାରେ। ଏହା ଶାସ୍ତ୍ରସମୂହର ବାଣୀ ଓ ସନ୍ଥମାନଙ୍କର ଅନୁଭବ ଅଟେ।

୬୪. ଭାବକୁ ଜାଗ୍ରତ ରଖିବା ପାଇଁ ଭଗବାନଙ୍କ ନାମ-ଜପର ଆବଶ୍ୟକତା ଅଛି।

୬୫. ଯେପର୍ଯ୍ୟନ୍ତ ମନ ମଳିନ ଓ ଚଞ୍ଚଳ ଅଛି, ସେପର୍ଯ୍ୟନ୍ତ ପ୍ରେମପୂର୍ବକ ଭଜନ ହୁଏ ନାହିଁ। ପୁଣି ବୁଦ୍ଧିଯୋଗ କେଉଁଠୁ ମିଳିବ?

୬୬. ଜପ ନିରାକାର ଓ ସାକାର ଉଭୟ ପ୍ରକାରର ଧ୍ୟାନରେ ହେବା ଆବଶ୍ୟକ।

୬୭. ମୋର ଏହା ଦୃଢ଼ ବିଶ୍ୱାସ ଯେ ସାଧନପଥର ବିଘ୍ନଗୁଡ଼ିକୁ ଏବଂ ମନରେ ଜାତ ହେଉଥିବା ସାଂସାରିକ ସ୍ଫୁରଣଗୁଡ଼ିକୁ ନଷ୍ଟ କରିବା ପାଇଁ ସ୍ୱରୂପ-

ଚିନ୍ତନ ସହିତ ପ୍ରେମପୂର୍ବକ ଭଗବନ୍ନାମ-ଜପ କରିବା ସଦୃଶ ଅନ୍ୟ କୌଣସି ସାଧନ ନାହିଁ।

୬୮. ନାମ-ଜପ ସମାନ ସରଳ ଓ ମହାନ୍ ସାଧନ ଅନ୍ୟ କିଛି ନାହିଁ।

୬୯. ପରମେଶ୍ୱରଙ୍କ ଭଜନ ସମାନ ଅନ୍ୟ କିଛି ମଧ୍ୟ ନାହିଁ।

୭୦. ନାମରେ ପାପନାଶର ଅପରିମେୟ ଶକ୍ତି ରହିଛି।

୭୧. ଭଗବାନଙ୍କ ନାମ ପାପନାଶ କରିବାରେ ଯାଦୁ ମନ୍ତ୍ର ପରି କାମ କରେ।

୭୨. ଭଜନ ଭରସାରେ ପାପାଗ୍ୱର କରୁଥିବା ଲୋକଙ୍କୁ ଭଗବାନ ଅବ୍ୟାହତି ଦିଅନ୍ତି ନାହିଁ।

୭୩. ଯେପରି ବିଗୁଲ ଶବ୍ଦ ଦ୍ୱାରା ସିପାହୀ ସାବଧାନ ରହନ୍ତି, ସେହିପରି ନାମ-ଜପର ବିଗୁଲ ବଜାଇ ବଜାଇ ମନ-ଇନ୍ଦ୍ରିୟଙ୍କୁ ସବୁବେଳେ ସାବଧାନ ରଖିବା ଉଚିତ।

୭୪. ଯେଉଁଠାରେ କୀର୍ତ୍ତନ ହେଉଥାଏ, ସେଠାରେ ଭଗବାନ ସ୍ୱୟଂ ସାକାରରୂପେ ଉପସ୍ଥିତ ରହନ୍ତି, କୀର୍ତ୍ତନ କରୁଥିବା ଭକ୍ତକୁ ସାକାର ରୂପରେ ମଧ୍ୟ ଦେଖାଯାଆନ୍ତି।

୭୫. ନାମୋଚ୍ଚାରଣ କରୁଥିବା ସମୟରେ ମନ ପ୍ରେମରେ ଏତେ ମଗ୍ନ ହୋଇଯିବା ଉଚିତ ଯେପରି ତାକୁ ନିଜ ଶରୀରର ମଧ୍ୟ ଜ୍ଞାନ ନ ରହିବ। ଯେତେ ବଡ଼ ସଙ୍କଟ ପଡ଼ିଲେ ମଧ୍ୟ ବିଶୁଦ୍ଧ, ପ୍ରେମ-ଭକ୍ତି ଓ ଭଗବତ୍ ସାକ୍ଷାତ୍କାର ବ୍ୟତୀତ ଅନ୍ୟ କୌଣସି ସାଂସାରିକ ବସ୍ତୁର କାମନା, ଯାଚନା ବା ଇଚ୍ଛା କେବେ ହେଲେ କରିବା ଅନୁଚିତ।

୭୬. ଜପ କରିବା ସମୟରେ ନିଜର ଯିଏ ଇଷ୍ଟଦେବ ହୋଇଥିବେ, ତାଙ୍କରି ମୂର୍ତ୍ତି ମନ ଆଗକୁ ସ୍ପଷ୍ଟ ଆସିଯିବା ଉଚିତ।

୭୭. ଜପ କରିବା ସମୟରେ ନିରନ୍ତର ନିଜ ଇଷ୍ଟଦେବଙ୍କ ମୂର୍ତ୍ତି ପ୍ରତି ଧ୍ୟାନ ରଖିବା ଉଚିତ। ସେହି ସମୟରେ ଚିତ୍ତ ଧ୍ୟାନରେ ହିଁ ବୁଡ଼ି ରହୁ।

୭୮. ଅର୍ଥ ସହିତ ଜପ କଲେ ବହୁତ ଶୀଘ୍ର ଲାଭ ହୁଏ। ଯେପରି କୌଣସି ପାଣିକୁଣ୍ଡକୁ ଦୁଇଟି ନଳୀଦ୍ୱାରା ଜଳ ଆସିପାରେ, କିନ୍ତୁ ଦୁଇଟି ମଧ୍ୟରୁ ଗୋଟିଏ ଖୋଲା ଅଛି ଓ ଅନ୍ୟଟି ବନ୍ଦ ଅଛି। ଗୋଟିଏ ନଳୀରେ

ଆସୁଥିବା ପାଣିରେ କୁଣ୍ଡଟି ଦୁଇ ଘଣ୍ଟାରେ ପୂରି ଯାଏ, କିନ୍ତୁ ଯଦି ଅନ୍ୟ ନଳୀଟି ଖୋଲି ଦିଆଯାଏ, ତା'ହେଲେ କୁଣ୍ଡଟି ଦୁଇ ଘଣ୍ଟା ବଦଳରେ ଗୋଟିଏ ଘଣ୍ଟାରେ ପୂରି ଯାଇପାରେ। ଏହିପରି ଅର୍ଥ ସହିତ ଜପ କରିବା ଦ୍ୱାରା ଶୀଘ୍ର ଲାଭ ମିଳିଥାଏ।

୭୯. ନାମଜପ ସଙ୍ଗେ ସଙ୍ଗେ ପରମାତ୍ମାଙ୍କ ଅମୃତମୟ ସ୍ୱରୂପର ଧ୍ୟାନ ହୋଇ ଚାଲିଥିଲେ ପ୍ରତିମୁହୂର୍ତ୍ତରେ ତାଙ୍କର ଦିବ୍ୟଗୁଣ ଓ ପ୍ରଭାବ ସ୍ମରଣ ହୋଇଥାଏ ଏବଂ ସେହି ସ୍ମୃତି ଅପୂର୍ବ ପ୍ରେମ ଓ ଆନନ୍ଦକୁ ଉତ୍ପନ୍ନ କରେ।

୮୦. ସ୍ୱରୂପଚିନ୍ତନ ଚେଷ୍ଟା ନ କଲେ ମଧ୍ୟ କେବଳ ନାମ-ଜପର ପ୍ରତାପ ଦ୍ୱାରା ହିଁ ସାଧକକୁ ସମୟେ-ସମୟେ ଭଗବତ୍‌ସ୍ୱରୂପର ସାକ୍ଷାତ୍କାର ଆପେ ଆପେ ହୋଇପାରେ, କିନ୍ତୁ ସେଥିରେ ବିଳମ୍ବ ଘଟେ। ଭଗବାନଙ୍କ ମନମୋହନ ସ୍ୱରୂପ-ଚିନ୍ତନ ଜାରି ରଖି ଜପର ଅଭ୍ୟାସ କଲେ ତାହା ଖୁବ୍ ଶୀଘ୍ର ଲାଭପ୍ରଦ ହୁଏ, କାରଣ ନିରନ୍ତର ଚିନ୍ତନଦ୍ୱାରା ଭଗବାନଙ୍କ ସ୍ମୃତିରେ ବ୍ୟବଧାନ ଘଟେ ନାହିଁ।

୮୧. ଯେଉଁ ନାମର ଜପ କରାଯିବ, ସ୍ୱରୂପର ଚିନ୍ତନ ମଧ୍ୟ ତାହାରି ଅନୁସାରେ ହେବା ଉଚିତ।

୮୨. ନାମ-ଜପ ନାମୀର ସ୍ୱରୂପଚିନ୍ତନ ସହିତ କରିବା ଉଚିତ। ସ୍ୱରୂପ-ଚିନ୍ତନଯୁକ୍ତ ନାମ-ଜପଦ୍ୱାରା ପାପ ସମୂହର ନାଶ ହୋଇ ଭଗବତ୍‌ପ୍ରାପ୍ତି ହୋଇଥାଏ।

୮୩. ନାମ-ଜପ ସହିତ ଧ୍ୟାନ ନିଶ୍ଚିତ କରିବା ଉଚିତ।

୮୪. ନିରନ୍ତର ଭଗବାନଙ୍କ ନାମୋଚ୍ଚାରଣ ପ୍ରଭାବରେ ଯେବେ ପ୍ରତିକ୍ଷଣରେ ରୋମାଞ୍ଚ ହେବାରେ ଲାଗେ, ତେବେ ତାର ସମ୍ପୂର୍ଣ୍ଣ ପାପର ନାଶ ହୋଇ ତାକୁ ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁ ଭଲ ଲାଗେ ନାହିଁ। ବିରହ-ବେଦନାରେ ଅତ୍ୟନ୍ତ ବ୍ୟାକୁଳ ହେବା କାରଣରୁ ନେତ୍ରରୁ ଅଶ୍ରୁଧାର ବହିବାକୁ ଲାଗେ। ଯେତେବେଳେ ସେ ତ୍ରୈଲୋକ୍ୟ ଐଶ୍ୱର୍ଯ୍ୟକୁ ଆଡ଼େଇ ଦେଇ ଗୋପୀମାନଙ୍କ ପରି ପାଗଳ ହୋଇ ବିଚରଣ କରେ ଓ ଜଳରୁ ବାହାରକୁ ଅଣାଯାଇଥିବା ମାଛ ପରି ଭଗବାନଙ୍କ ପାଇଁ ଛଟପଟ ହେବାକୁ ଲାଗେ, ସେହି ସମୟରେ ଆନନ୍ଦକନ୍ଦ ପ୍ରିୟ ଶ୍ୟାମସୁନ୍ଦରଙ୍କ ମୋହିନୀ ମୂର୍ତ୍ତିର ଦର୍ଶନ ହୋଇଥାଏ। ଏହା ଭଗବାନଙ୍କ ସହ ମିଳିତ ହେବାର ପ୍ରକୃତ ଉପାୟ।

୮୫. ନାମର ସ୍ମରଣ ମାତ୍ରକେ ସମସ୍ତ ପାପ ଭସ୍ମ ହୋଇଯାଏ ଓ ସମସ୍ତ ଫଳ ସ୍ପଷ୍ଟ ହେବାରେ ଲାଗେ।

୮୬. ପରଶମଣି ତ କେବଳ ଲୁହାକୁ ସୁନା କରି ଦିଏ, ସେ ମୁକ୍ତି ଦେଇ ପାରେ ନାହିଁ। କିନ୍ତୁ ପ୍ରଭୁଙ୍କ ନାମ ଆମକୁ ସଂସାର-ସାଗରରୁ ପାର କରିଦିଏ।

୮୭. ଉଠିବା, ବସିବା, ଗ୍ଭଲିବା ପ୍ରତ୍ୟେକ ସମୟରେ ନାମଜପ କରନ୍ତୁ। ନାମକୁ କେବେ ବି ଭୁଲନ୍ତୁ ନାହିଁ, ଏହା ଭଗବତ୍‌ପ୍ରାପ୍ତିର ଏକ ସୁଗମ ଉପାୟ ଅଟେ।

୮୮. ଶ୍ରଦ୍ଧା-ପ୍ରେମପୂର୍ବକ ଅର୍ଥ ସହିତ ନିଷ୍କାମଭାବେ ଓ ଗୁପ୍ତରୂପେ ଯେଉଁ ନାମ ଜପ କରାଯାଏ, ତାହା ତତ୍‌କ୍ଷଣାତ୍ ପରମ କଲ୍ୟାଣରୂପ ଫଳଦାୟକ ହୋଇଥାଏ।

୮୯. ନାମ-ଜପର ଫଳ ଭଗବତ୍‌ପ୍ରାପ୍ତି। କେତେକ ପ୍ରେମୀ ମହାତ୍ମା ଏପରି ଅଛନ୍ତି ଯେଉଁମାନେ ନାମ-ଜପ କେବଳ ନାମ-ଜପ ପାଇଁ ହିଁ କରନ୍ତି। ସେମାନେ ଭଗବତ୍ ପ୍ରାପ୍ତିରୂପକ ଫଳ ମଧ୍ୟ ଗ୍ଭହାନ୍ତି ନାହିଁ।

୯୦. ଭଗବାନଙ୍କ ନାମର ମହିମା ଏପରି ଯେ ତାକୁ କେହି ଯେକୌଣସି ପ୍ରକାରେ ଜପ କରୁ ନା କାହିଁକି, ତାହାର ଫଳ ନିଶ୍ଚିତରୂପେ ମିଳେ; ଯେପରି କି—ଜମିରେ ଯେଉଁ ପ୍ରକାରେ ହେଲେ ବି ମଞ୍ଜି ପକାଇ ଦେଲେ ସେଥିରୁ ଗଛ ଉଠିଯାଏ। କିନ୍ତୁ ବିଧିପୂର୍ବକ ଜପ କରିବାର ବିଶେଷ ମହତ୍ତ୍ୱ ଅଛି।

୯୧. ନାମୀ ଭଗବାନଙ୍କୁ ଯଥାର୍ଥ ତତ୍ତ୍ୱସହ ଜାଣିଯିବା ଅର୍ଥାତ୍ ଭଗବାନ ଯେପରି ଅଟନ୍ତି, ସେହିପରି ହିଁ ତାଙ୍କୁ ଜାଣିଯିବା ହିଁ ଜ୍ଞାନ ଅଟେ ଓ ନାମୀକୁ ଯଥାର୍ଥ ତତ୍ତ୍ୱସହ ଜଣାଇ ଦେବାର ଶକ୍ତି ନାମରେ ହିଁ ନିହିତ।

୯୨. ଭଗବାନ ନାମର ଅଧୀନ ଅଟନ୍ତି, ନାମରେ ଏହି ଶକ୍ତି ଅଛି ଯେ ତାହା ନାମୀ ଭଗବାନଙ୍କ ସହିତ ସାକ୍ଷାତ୍କାର କରାଇଦିଏ।

୯୩. ପ୍ରେମର ବାହୁଲ୍ୟ ହେଲେ ସକାମ ପ୍ରେମରେ ମଧ୍ୟ ଭଗବାନ ପ୍ରକଟ ହୋଇପାରନ୍ତି। କିନ୍ତୁ ସେହି ସକାମ ପ୍ରେମ ଦ୍ରୌପଦୀ ବା ଗଜେନ୍ଦ୍ରଙ୍କ ପ୍ରେମ ପରି ଅନନ୍ୟ ହେବା ଆବଶ୍ୟକ।

୯୪. ପ୍ରେମଭାବରେ ଜପ କରୁଁ-କରୁଁ ଏଭଳି ପ୍ରେମର ପ୍ରାପ୍ତି ହୋଇପାରେ

ଯେଉଁଥିରେ ବିହ୍ୱଳ ହୋଇ ଥରେମାତ୍ର ନାମୋଚ୍ଚାରଣ କରିବା ଦ୍ୱାରା ଭଗବାନ ଦର୍ଶନ ଦେଇ ପାରନ୍ତି ।

୯୫. ଯଦି ମନୁଷ୍ୟ ଭଗବାନଙ୍କ ଅନନ୍ୟପ୍ରେମରେ ବିହ୍ୱଳ ହୋଇ ଥରେମାତ୍ର ଭଗବାନଙ୍କ ନାମୋଚ୍ଚାରଣ କରି ଦିଏ, ତା'ହେଲେ ଭଗବାନ ତୁରନ୍ତ ପ୍ରକଟ ହୋଇ ତାକୁ ଦର୍ଶନ ଦେଇ ପାରନ୍ତି ।

୯୬. ଭକ୍ତ ପ୍ରହ୍ଲାଦ ପରି ଭଗବାନଙ୍କ ନାମ ନିମନ୍ତେ ଆନନ୍ଦପୂର୍ବକ ସମସ୍ତ ପ୍ରକାର କଷ୍ଟ ସହ୍ୟ କରିବା ପାଇଁ ଏବଂ ଧାରୁଆ ଖଣ୍ଡାର ଧାରରେ ମସ୍ତକ କଟାଇବା ପାଇଁ ସର୍ବଦା ପ୍ରସ୍ତୁତ ରହିଲେ ଭଗବାନ ପ୍ରତ୍ୟକ୍ଷ ଦର୍ଶନ ଦେଇ ପାରନ୍ତି ।

୯୭. ଯେଉଁ ବ୍ୟକ୍ତି ଭଗବାନଙ୍କ ଭଜନ କରେ, ତାହାର ଅନ୍ତଃକରଣକୁ ଶୁଦ୍ଧ କରି ଓ ଦୁଃଖସମୂହର ସର୍ବଦା ନାଶ କରି ଭଗବାନ ତାହାର କଲ୍ୟାଣ କରି ଦିଅନ୍ତି ।

୯୮. ନିରନ୍ତର ପ୍ରେମପୂର୍ବକ ନିଷ୍କାମ ନାମ-ଜପ ଓ ସ୍ୱରୂପ-ଚିନ୍ତନ ଦ୍ୱାରା ସ୍ୱତଃ ଜ୍ଞାନ ଉତ୍ପନ୍ନ ହୋଇଯାଏ ଏବଂ ସେହି ଜ୍ଞାନଦ୍ୱାରା ସାଧକକୁ ଶୀଘ୍ର ପରମ ପଦ ପ୍ରାପ୍ତି ହୋଇଯାଏ ।

୯୯. "ସତ୍ୟଯୁଗରେ ନିରନ୍ତର ବିଷ୍ଣୁଙ୍କ ଧ୍ୟାନ କରିବା ଦ୍ୱାରା, ତ୍ରେତାଯୁଗରେ ଯାଗଯଜ୍ଞ କରିବା ଦ୍ୱାରା ଓ ଦ୍ୱାପରରେ ପୂଜା (ଉପାସନା) କରିବା ଦ୍ୱାରା ଯେଉଁ ପରମ ଗତି ପ୍ରାପ୍ତି ହୁଏ, କଳିଯୁଗରେ କେବଳ ନାମ-କୀର୍ତ୍ତନ ଦ୍ୱାରା ତାହା ମିଳିଯାଏ ।"

୧୦୦. ଯେପରି ଅଗ୍ନିରେ ଜାଳିଦେବା ଓ ଆଲୋକିତ କରିବାର ସ୍ୱାଭାବିକ ଶକ୍ତି ଅଛି, ଏହିପରି ଭଗବନ୍ନାମରେ ମଧ୍ୟ ପାପସମୂହକୁ ନଷ୍ଟ କରିବାର ସ୍ୱାଭାବିକ ଶକ୍ତି ଅଛି ।



## ମହାତ୍ମାମାନଙ୍କର ମହିମା

୧. ସଂସାରରେ ସନ୍ଥମାନଙ୍କର ସ୍ଥାନ ସବୁଠାରୁ ଉଚ୍ଚରେ ।

୨. ଗୀତାର ଦ୍ୱିତୀୟ ଅଧ୍ୟାୟର ଶ୍ଳୋକ ୫୫ ଠାରୁ ୭୧ ପର୍ଯ୍ୟନ୍ତ

ସ୍ଥିତପ୍ରଜ୍ଞଙ୍କ ନାମରେ ଅଥବା ଷଷ୍ଠ ଅଧ୍ୟାୟର ଶ୍ଲୋକ ୭ରୁ ୯ ପର୍ଯ୍ୟନ୍ତ ଯୋଗୀଙ୍କ ନାମରେ ଅଥବା ଦ୍ୱାଦଶ ଅଧ୍ୟାୟର ଶ୍ଲୋକ ୧୩ରୁ ୧୯ ପର୍ଯ୍ୟନ୍ତ ଭକ୍ତିମାନ୍‌ଙ୍କ ନାମରେ ଅଥବା ଚତୁର୍ଦ୍ଦଶ ଅଧ୍ୟାୟ ଶ୍ଲୋକ ୨୨ରୁ ୨୫ ପର୍ଯ୍ୟନ୍ତ ଗୁଣାତୀତଙ୍କ ନାମରେ କୁହାଯାଇଥିବା ଲକ୍ଷଣ ଯେଉଁ ପୁରୁଷଠାରେ ଥିବ, ସେ ହିଁ ମହାପୁରୁଷ ଅଟେ ।

୩. ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥ ବା ସଂନ୍ୟାସୀ କୌଣସି ପୁରୁଷ ଯିଏ ଗୀତାର ଦ୍ୱିତୀୟ ଅଧ୍ୟାୟ ଶ୍ଲୋକ ୫୫ରୁ ୭୨ ତଥା ଦ୍ୱାଦଶ ଅଧ୍ୟାୟ ଶ୍ଲୋକ ୧୩ରୁ ୧୯ ଓ ଚତୁର୍ଦ୍ଦଶ ଅଧ୍ୟାୟ ଶ୍ଲୋକ ୨୨ରୁ ୨୫ରେ ବର୍ଣ୍ଣିତ ଲକ୍ଷଣମାନଙ୍କର ଯୁକ୍ତ ହୋଇଥିବେ, ତାଙ୍କୁ ହିଁ ମହାତ୍ମା ବୋଲି ବୁଝିବା ଉଚିତ ।

୪. ପରମାତ୍ମାଙ୍କ ତତ୍ତ୍ୱକୁ ଯଥାର୍ଥରୂପେ ଜାଣିଥିବା ତତ୍ତ୍ୱବେତ୍ତା ପୁରୁଷ ମହାପୁରୁଷ ଅଟନ୍ତି ।

୫. ପ୍ରକୃତରେ ଯାହାର ବ୍ୟବହାର ସତ୍ ଅଟେ, ସେହି ହିଁ ସନ୍ଥ ଅଟେ ।

୬. ଯାହାଙ୍କ ସଙ୍ଗ ଲାଭ କରି ପରମାତ୍ମାଙ୍କ ଠାରେ, ସେହି ମହାପୁରୁଷଙ୍କ ଠାରେ ଓ ଶାସ୍ତ୍ରସମୂହରେ ଶ୍ରଦ୍ଧା ଉତ୍ପନ୍ନ ହୋଇଯାଏ, ତାଙ୍କୁ ଗୁରୁ ବା ଉପଦେଶକ ମାନିବାରେ କୌଣସି ହାନି ନାହିଁ ।

୭. ''ସତ୍'' କେବଳ ପରମାତ୍ମା ଅଟନ୍ତି । ପରମାତ୍ମାଙ୍କ ଯଥାର୍ଥ ତତ୍ତ୍ୱକୁ ଯିଏ ଜାଣେ ଓ ଯିଏ ତାକୁ ଉପଲବ୍ଧି କରି ସାରିଛି, ସେ ହିଁ ସନ୍ଥ ଅଟେ । ହଁ, ଗୌଣ ବୃତ୍ତିରେ ତାଙ୍କୁ ମଧ୍ୟ ସନ୍ଥ କହି ପାରନ୍ତି, ଯେଉଁମାନେ ଭଗବତ୍‌ପ୍ରାପ୍ତିର ପାତ୍ର ଅଟନ୍ତି; କାରଣ ସେମାନେ ଭଗବତ୍‌ପ୍ରାପ୍ତିରୂପ ଲକ୍ଷ୍ୟ ସନ୍ନିକଟରେ ପହଞ୍ଚି ଯାଇଛନ୍ତି ଓ ଶୀଘ୍ର ସେମାନଙ୍କର ଭଗବତ୍‌ପ୍ରାପ୍ତିର ସମ୍ଭାବନା ଅଛି ।

୮. ମହାତ୍ମାମାନଙ୍କୁ ପାଇବା କଷ୍ଟକର ଅଟେ, ପାଇଲେ ମଧ୍ୟ ତାଙ୍କୁ ଚିହ୍ନିବା କଷ୍ଟକର ଅଟେ, କିନ୍ତୁ ଚିହ୍ନି ନ ପାରିଲେ ମଧ୍ୟ ତାଙ୍କ ସାନ୍ନିଧ୍ୟ ପାଇବା ବ୍ୟର୍ଥ ହୁଏ ନାହିଁ, ତାହା ମହାନ୍ କଲ୍ୟାଣକାରକ ହୋଇଥାଏ ।

୯. ଭଗବତ୍‌ପ୍ରାପ୍ତ ପୁରୁଷକୁ ହିଁ ସନ୍ଥ କୁହାଯାଏ ।

୧୦. ସୂର୍ଯ୍ୟଙ୍କୁ ନ ଜାଣି ମଧ୍ୟ ଯଦି କେହି ସୂର୍ଯ୍ୟଙ୍କ ଆଗକୁ ଆସିଯାଏ, ତେବେ ବି ତା'ର ଶୀତ ଦୂର ହୋଇଯାଏ, ଏହା ସୂର୍ଯ୍ୟଙ୍କର ସ୍ୱାଭାବିକ ଗୁଣ ଅଟେ । ଏହିଭଳି ମହାତ୍ମାମାନଙ୍କର ସାନ୍ନିଧ୍ୟ ହିଁ ନିଜର ସ୍ୱାଭାବିକ ବସ୍ତୁଗୁଣଦ୍ୱାରା ମନୁଷ୍ୟମାନଙ୍କର ତ୍ରାଣ କରିଥାଏ ।

୧୧. ପ୍ରଭୁଙ୍କ ଦୟାରୁ ହିଁ ମହାପୁରୁଷମାନଙ୍କ ସଙ୍ଗ ଓ ସେବା କରିବାର ଅବସର ମିଳେ।

୧୨. ଯେଉଁ ପୁରୁଷ ମହାତ୍ମାମାନଙ୍କ ପାଖକୁ ଯାଇ ତାଙ୍କ ଉପଦେଶକୁ ଶୁଣି ତାହାର ଅନୁସାରେ କାର୍ଯ୍ୟ କରେ, ତାକୁ ମଧ୍ୟ ପରମାତ୍ମାଙ୍କ ପ୍ରାପ୍ତି ହୋଇଯାଏ।

୧୩. ମହାପୁରୁଷମାନଙ୍କ ଇଚ୍ଛାନୁସାରେ ଚଳିବାରେ ହିଁ ମଙ୍ଗଳ ନିହିତ।

୧୪. ମହାତ୍ମାଙ୍କ ଆଜ୍ଞାନୁସାରେ ଚଳିଲେ ଯେ ପରମକଲ୍ୟାଣ ହୁଏ, ଏଥିରେ ତ କହିବାର କିଛି ନାହିଁ। ତାଙ୍କ ଦର୍ଶନ, ସ୍ପର୍ଶ ଓ ଚିନ୍ତନ ମଧ୍ୟ କଲ୍ୟାଣର ପରମ କାରଣ ହୋଇଥାଏ।

ଦେବର୍ଷି ନାରଦ କହିଛନ୍ତି—

**ମହତ୍‌ସଙ୍ଗସ୍ତୁ ଦୁର୍ଲଭୋଽଗମ୍ୟୋଽମୋଘଶ୍ଚ।**

(ନାରଦ ଭକ୍ତିସୂତ୍ର ୩୯)

"ମହାତ୍ମା ପୁରୁଷମାନଙ୍କ ସଙ୍ଗ ଦୁର୍ଲଭ, ଅଗମ୍ୟ ଓ ଅମୋଘ ଅଟେ।"

୧୫. ଅବତାର ଓ କାରକ ପୁରୁଷଙ୍କ ମଧ୍ୟରେ ପ୍ରଭେଦ ଏତିକି ଯେ ଅବତାର ତ କେବେ ଜୀବଭାବକୁ ପ୍ରାପ୍ତ ହୋଇ ନାହିଁ ଓ କାରକ ପୁରୁଷ କୌଣସି କାଳରେ ଜୀବଭାବକୁ ପ୍ରାପ୍ତ ଥିଲେ, କିନ୍ତୁ ଭଗବତ୍‌କୃପାରୁ ନିଜର ପୁରୁଷାର୍ଥଦ୍ୱାରା କ୍ରମମୁକ୍ତିରେ ସେମାନେ ଶେଷରେ ଏହି ସ୍ଥିତିକୁ ପ୍ରାପ୍ତ ହୋଇଗଲେ।

୧୬. **ଅଗ୍ନିର୍ଜ୍ୟୋତିରହଃ ଶୁକ୍ଳଃ ଷଣ୍ମାସା ଉତ୍ତରାୟଣମ୍।**
**ତତ୍ର ପ୍ରୟାତା ଗଚ୍ଛନ୍ତି ବ୍ରହ୍ମ ବ୍ରହ୍ମବିଦୋ ଜନାଃ॥**

(ଗୀତା ୮।୨୪)

ଯେଉଁମାନେ ଭଗବତ୍‌କୃପାରୁ ନିଜର ପୁରୁଷାର୍ଥଦ୍ୱାରା ଏହି ଶ୍ଳୋକ ଅନୁସାରେ ଭିନ୍ନ-ଭିନ୍ନ ଦେବତାମାନଙ୍କ ସାହାଯ୍ୟରେ କ୍ରମରେ ଅଗ୍ରସର ହୋଇ ଶେଷରେ ଭଗବାନଙ୍କ ସତ୍ୟଲୋକରେ ପହଞ୍ଚନ୍ତି, ସେପରି ଲୋକଙ୍କ ମଧ୍ୟରୁ ଯଦି କେହି ମହାପୁରୁଷ ସୃଷ୍ଟିକର୍ତ୍ତା ଭଗବାନଙ୍କ ପ୍ରେରଣାରେ ଅଥବା ନିଜ ଇଚ୍ଛାରେ କେବଳ ଜଗତ୍‌ର ହିତ ସାଧନ କରିବା ପାଇଁ ସଂସାରକୁ ଆସନ୍ତି, ତା'ହେଲେ ସେମାନେ କାରକ ପୁରୁଷ ବୋଲି କଥିତ ହୁଅନ୍ତି। ଏପରି ଲୋକଙ୍କ ଦର୍ଶନ, ସ୍ପର୍ଶ, ଭାଷଣ ଓ ଚିନ୍ତନଦ୍ୱାରା ମଧ୍ୟ ଶ୍ରଦ୍ଧାଳୁ ପୁରୁଷଙ୍କର ଉଦ୍ଧାର ହୋଇପାରେ।

୧୭. ଜେଲଖାନାକୁ ବନ୍ଦୀ ବି ଯାଆନ୍ତି ଓ ରାଜାଙ୍କ ପ୍ରତିନିଧି ମଧ୍ୟ ଯାଆନ୍ତି । ପ୍ରଭେଦ କେବଳ ଏତିକି ଯେ—ବନ୍ଦୀ ତ ନିଜେ କରିଥିବା ଦୁଷ୍କର୍ମଗୁଡ଼ିକର ଫଳ ଭୋଗିବା ପାଇଁ ପରବଶ ହୋଇ ବନ୍ଧନରେ ପଡ଼ନ୍ତି, କିନ୍ତୁ ରାଜାଙ୍କ ପ୍ରତିନିଧି ସ୍ୱତନ୍ତ୍ରତା ଓ ଦୟାଯୋଗୁଁ ବନ୍ଧନରେ ପଡ଼ିଥିବା ବନ୍ଦୀମାନଙ୍କୁ ମୁକ୍ତ କରିବା ପାଇଁ ଜେଲଖାନାକୁ ଯାଆନ୍ତି । ଏହିପରି କାରକ ପୁରୁଷ ମଧ୍ୟ ସଂସାରରେ କେବଳ ବନ୍ଧନରେ ପଡ଼ିଥିବା ଜୀବଙ୍କୁ ମୁକ୍ତ କରିବା ପାଇଁ ପ୍ରକଟ ହୁଅନ୍ତି ।

୧୮. ସତ୍‌ପୁରୁଷଙ୍କ ଦର୍ଶନ, ଭାଷଣ, ସ୍ପର୍ଶ, ଚିନ୍ତନ ଓ ସଙ୍ଗ ଯୋଗୁଁ ପାପୀ ପୁରୁଷ ପରମ ପବିତ୍ର ହୋଇଯାଏ । ମହାପୁରୁଷଙ୍କ କୃପା ବିନା କେହି ପରମପଦକୁ ପ୍ରାପ୍ତ ହୋଇପାରେ ନାହିଁ ।

୧୯. ସନ୍ଥଙ୍କର ଦର୍ଶନ, ଭାଷଣ, ଚିନ୍ତନ ଓ ସ୍ପର୍ଶ ଦ୍ୱାରା ସମସ୍ତ ଜୀବ ପବିତ୍ର ହୋଇଯାଆନ୍ତି । ସେମାନଙ୍କ ପାଦ ଯେଉଁଠି ପଡ଼େ, ସେହି ଭୂମି ପବିତ୍ର ହୋଇଯାଏ । ସେମାନଙ୍କ ଚରଣ ସ୍ପର୍ଶ କରୁଥିବା ଧୂଳି ନିଜେ ପବିତ୍ର ହୋଇ ଅନ୍ୟଙ୍କୁ ପବିତ୍ର କରାଇଥାଏ । ସେମାନଙ୍କ ଦ୍ୱାରା ଦେଖାଯାଇଥିବା, ଚିନ୍ତନ କରାଯାଇଥିବା ଓ ସ୍ପର୍ଶ କରାଯାଇଥିବା ପଦାର୍ଥ ମଧ୍ୟ ପବିତ୍ର ହୋଇଯାଆନ୍ତି ।

୨୦. ମନୁଷ୍ୟ ଚାହିଁଲେ ଏତେ ସାମର୍ଥ୍ୟବାନ୍ ହୋଇଯାଇ ପାରିବ ଯେ, ତାହାର ଦର୍ଶନ, ସ୍ପର୍ଶ, ଭାଷଣ ଓ ଚିନ୍ତନଦ୍ୱାରା ମଧ୍ୟ ଲୋକଙ୍କର ଉଦ୍ଧାର ହୋଇଯିବ ।

୨୧. ସନ୍ଥଭାବର ପ୍ରାପ୍ତି ଭଗବତ୍‌କୃପାରୁ ହିଁ ହୁଏ ।

୨୨. ଯେଉଁ ଲୋକଙ୍କ ଉପରେ ପ୍ରଭୁଙ୍କର ଦୟା ହୁଏ, ସେହିମାନଙ୍କ ଉପରେ ମହାପୁରୁଷଙ୍କର ଦୟା ହୁଏ ।

୨୩. ଯେପରି ଭଗବାନଙ୍କ ଅହୈତୁକୀ ଦୟା ସମସ୍ତ ଜୀବଙ୍କ ଉପରେ ରହିଛି, ଏହିଭଳି ମହାପୁରୁଷଙ୍କର ଅହୈତୁକୀ ଦୟା ସମସ୍ତଙ୍କ ଉପରେ ଥାଏ ।

୨୪. ସନ୍ଥ ପୁରୁଷଙ୍କ ଦର୍ଶନ, ଭାଷଣ, ସ୍ପର୍ଶ ଓ ଚିନ୍ତନରେ ମଧ୍ୟ ମନୁଷ୍ୟ ତାଙ୍କ ଦୟାଭାବକୁ ଦେଖି ମୁଗ୍ଧ ହୋଇଯାଏ ।

୨୫. ସନ୍ଥ କରୁଣାର ଭଣ୍ଡାର ଅଟନ୍ତି । ଯେ କେହି ତାଙ୍କ ନିକଟକୁ ଯାଏ, ବୁଝିବାକୁ ହେବ ଯେ, ସେ ଦୟାର ସାଗରରେ ବୁଡ଼ ଦେଉଛି ।

୨୬. ମହାତ୍ମାମାନଙ୍କ ଠାରେ କଠୋରତା, ବୈର ଓ ଦ୍ୱେଷ ଲେଶମାତ୍ର

ରହେ ନାହିଁ। ସେମାନେ ଏତେ ଦୟାଳୁ ଅଟନ୍ତି ଯେ ଅନ୍ୟର ଦୁଃଖ ଦେଖି ସେମାନଙ୍କ ହୃଦୟ ତରଳି ଯାଏ। ସେମାନେ ଅନ୍ୟର ହିତକୁ ହିଁ ନିଜର ହିତ ବୋଲି ବୁଝନ୍ତି।

୨୭. ସନ୍ଥମାନଙ୍କର ଯିଏ ଯେତେ କ୍ଷତି କରୁ ନା କାହିଁକି, ପ୍ରତିଶୋଧ ନେବାର ଇଚ୍ଛା ସେମାନଙ୍କର ହୃଦୟରେ ଜାତ ହୁଏ ନାହିଁ।

୨୮. ସନ୍ଥ ଯେଉଁ ବାଟରେ ଯାଆନ୍ତି, ମେଘ ପରି ଦୟା-ବର୍ଷା କରି ଚାଲିଯାଆନ୍ତି। ମେଘ ସବୁ ସମୟରେ ଓ ସବୁ ସ୍ଥାନରେ ବରଷେ ନାହିଁ, କିନ୍ତୁ ସନ୍ଥମାନେ ସଦା-ସର୍ବଦା ସର୍ବତ୍ର ବରଷି ଚାଲନ୍ତି।

୨୯. ମହାପୁରୁଷ ଯେଉଁ ଦେଶରେ ଜନ୍ମ ନିଅନ୍ତି ଓ ଦେହତ୍ୟାଗ କରନ୍ତି, ସେହି ଦେଶଗୁଡ଼ିକ ତୀର୍ଥରେ ପରିଣତ ହୋଇଯାଆନ୍ତି। ଆଜି ପର୍ଯ୍ୟନ୍ତ ଯେତେ ସ୍ଥାନ ତୀର୍ଥ ହୋଇଛି, ସେ ସମସ୍ତ ପରମେଶ୍ୱର ଓ ପରମେଶ୍ୱରଙ୍କ ଭକ୍ତଙ୍କ ସଂସର୍ଗରେ ହୋଇଛି। ଏତିକି ନୁହେଁ, ସମସ୍ତ ଲୋକଙ୍କୁ ପବିତ୍ର କରୁଥିବା ତୀର୍ଥ ମଧ୍ୟ ସେମାନଙ୍କ ଚରଣସ୍ପର୍ଶରେ ପବିତ୍ର ହୋଇଯାଆନ୍ତି।

୩୦. ଯାହାର ଚିତ୍ତ ଅପାର ସଂବିତ୍‌ସୁଖସାଗର ପରଂବ୍ରହ୍ମରେ ଲୀନ ଅଛି, ତା'ର ଜନ୍ମ ଯୋଗୁଁ ତା କୁଳ ପବିତ୍ର ହୁଏ, ତା'ର ଜନନୀ କୃତାର୍ଥ ହୁଏ ଓ ପୃଥିବୀ ପୁଣ୍ୟବତୀ ହୁଏ।

୩୧. ସନ୍ଥ ଦୁନିଆର ସମସ୍ତ ଜୀବମାନଙ୍କ ଭିତରେ ସମତା, ଶାନ୍ତି, ପ୍ରେମ, ଜ୍ଞାନ ଓ ଆନନ୍ଦକୁ ବିସ୍ତାରିତ କରି ସମସ୍ତଙ୍କୁ ଭଗବାନଙ୍କ ସଦୃଶ କରିଦେବାକୁ ଚାହାଁନ୍ତି।

୩୨. ମହାତ୍ମା ସନ୍ଥପୁରୁଷ ସର୍ବସଦ୍‌ଗୁଣସାଗର ପରମାତ୍ମାଙ୍କ ଠାରୁ ସମତା, ଶାନ୍ତି, ପ୍ରେମ, ଜ୍ଞାନ ଓ ଆନନ୍ଦ ଆଦି ଗୁଣ ନେଇ ମେଘଙ୍କ ଭଳି ସଂସାରରେ ସେଗୁଡ଼ିକୁ ବର୍ଷା କରନ୍ତି।

୩୩. ସଚ୍ଚିଦାନନ୍ଦଘନ ପରମାତ୍ମା ସବୁ ସ୍ଥାନରେ ବିଦ୍ୟମାନ ଅଛନ୍ତି, କିନ୍ତୁ ଯେପର୍ଯ୍ୟନ୍ତ ପରମାତ୍ମାଙ୍କ ତତ୍ତ୍ୱକୁ ଜାଣିବା ଭକ୍ତଜନ ସବୁ ସ୍ଥାନରେ ପରମାତ୍ମାଙ୍କ ପ୍ରଭାବର ବିସ୍ତାର କରନ୍ତି ନାହିଁ, ସେପର୍ଯ୍ୟନ୍ତ ଜଗତ୍‌ର ଲୋକେ ପରମାତ୍ମାଙ୍କୁ ଜାଣି ପାରନ୍ତି ନାହିଁ।

୩୪. ଭଗବାନ ତ ଭଜନକାରୀଙ୍କୁ ହିଁ ଭଜନ୍ତି, କିନ୍ତୁ ଦୟାଳୁ ସନ୍ଥ

କେବଳ ଭଜନକାରୀଙ୍କର ନୁହେଁ, ଏପରିକି ଗାଳି ଦେଉଥିବା ଓ ଅହିତ କରୁଥିବା ଲୋକଙ୍କର ମଧ୍ୟ ହିତ ସାଧନ କରିବାରେ ତତ୍ପର ରହନ୍ତି। କୁରାଢ଼ି ଚନ୍ଦନକୁ କାଟେ, କିନ୍ତୁ ଚନ୍ଦନ ତାକୁ ନିଜର ସ୍ୱାଭାବିକ ସୁଗନ୍ଧ ଦେଇ ଦିଏ।

୩୫. ସନ୍ଥଜନ ସୁରସରିତ୍ ଓ ସୁରତରୁ ଠାରୁ ମଧ୍ୟ ବିଶେଷ ଉପକାରୀ ଅଟନ୍ତି। ଗଙ୍ଗା ଓ କଳ୍ପବୃକ୍ଷଙ୍କର ଶରଣାପନ୍ନ ହେଲେ ସେମାନେ ଯଥାକ୍ରମେ ପବିତ୍ର କରନ୍ତି ଓ ମନୋରଥ ପୂର୍ଣ୍ଣ କରନ୍ତି। କିନ୍ତୁ ସନ୍ଥମାନେ ତାଙ୍କୁ ଗ୍ୱହୁଁଥିବା ଓ ନ ଗ୍ୱହୁଁଥିବା ସମସ୍ତଙ୍କ ଘରକୁ ନିଜେ ଯାଇ ସେମାନଙ୍କର ଇହଲୋକ ଓ ପରଲୋକ ପାଇଁ କଲ୍ୟାଣର ଚେଷ୍ଟା କରନ୍ତି।

୩୬. ସାମାନ୍ୟତଃ ସନ୍ଥମାନଙ୍କ ସହ ଯେଉଁ ଲୋକଙ୍କର ସାକ୍ଷାତ୍ ହୋଇଯାଏ, ସେ ସମସ୍ତଙ୍କର ହିତ ସାଧିତ ହୁଏ। କିନ୍ତୁ ବିଶେଷ ଲାଭ ଶ୍ରଦ୍ଧା ଓ ପ୍ରେମ ଜାତ ହେଲେ ହିଁ ହୁଏ।

୩୭. ସନ୍ଥମାନଙ୍କର ଚରାଚର ସମସ୍ତ ଜୀବଙ୍କ ଠାରେ ସମଭାବ ରହେ।

୩୮. ପ୍ରଭୁଙ୍କ ଠାରେ ରହିବା କାରଣରୁ ସନ୍ଥଙ୍କ ଠାରେ ପ୍ରଭୁଙ୍କ ସମତାର ସମାବେଶ ହୋଇଯାଏ।

୩୯. ଯେପରି ଜ୍ଞାନହୀନ ବ୍ୟକ୍ତିର ସୁଖ-ଦୁଃଖ ପ୍ରାପ୍ତିରେ ସଂପୂର୍ଣ୍ଣ ଶରୀରରେ ସମତା ଥାଏ, ସେହିପରି ସନ୍ଥମାନଙ୍କର ସମସ୍ତ ଜୀବଙ୍କର ସୁଖ-ଦୁଃଖ ପ୍ରାପ୍ତିରେ ମମତା ଓ ଅହଂକାର ନ ଥାଇ ମଧ୍ୟ ସମତା ଥାଏ।

୪୦. ସନ୍ଥମାନେ ହିଁ ନୀତି, ଧର୍ମ, ନ୍ୟାୟ, ଈଶ୍ୱର ଓ ବିଶ୍ୱ ପାଇଁ କେବଳ ସ୍ତ୍ରୀ, ପୁତ୍ର, ଧନ ନୁହେଁ, ନିଜ ଶରୀର ମଧ୍ୟ ତ୍ୟାଗ କରି ଦିଅନ୍ତି।

୪୧. ଲାଭ-ହାନି ଓ ଜୟ-ପରାଜୟରେ ସନ୍ଥଙ୍କର ବିଲକ୍ଷଣ ସମତା ଥାଏ।

୪୨. ସନ୍ଥଙ୍କର ଗୁଣ ଓ ଆଚରଣ ହିଁ ସଦାଗ୍ୱର। ତାଙ୍କ ବାଣୀ-ଉପଦେଶ-ଆଦେଶ ହିଁ ବେଦବାଣୀ।

୪୩. ସନ୍ଥପୁରୁଷ ଧର୍ମ, ଈଶ୍ୱର ଓ ବିଶ୍ୱପାଇଁ ସବୁ କିଛି ତ୍ୟାଗ କରି ଦିଅନ୍ତି।

୪୪. ସନ୍ଥମାନେ ବିଶ୍ୱର ରକ୍ଷା ନିମିତ୍ତ ପୃଥିବୀର, ପୃଥିବୀର ରକ୍ଷାପାଇଁ

ଦ୍ୱୀପର, ଦ୍ୱୀପପାଇଁ ଗ୍ରାମର, ଗ୍ରାମପାଇଁ କୁଟୁମ୍ବର, କୁଟୁମ୍ବ ଓ ଉପର୍ଯ୍ୟୁକ୍ତ ସମସ୍ତଙ୍କ ହିତ ପାଇଁ ନିଜର ପ୍ରାଣକୁ ଆନନ୍ଦପୂର୍ବକ ତ୍ୟାଗ କରି ଦିଅନ୍ତି।

୪୫. ସନ୍ଥଙ୍କ ପ୍ରେମ ବିଶୁଦ୍ଧ ଓ ଜ୍ଞାନପୂର୍ଣ୍ଣ ହୋଇଥାଏ।

୪୬. ଜ୍ଞାନଯୋଗୀ ସନ୍ଥ ସମସ୍ତଙ୍କୁ ନିଜର ଆତ୍ମା ବୁଝିବା କାରଣରୁ କାହାରି ଦ୍ୱାରା ଅନିଷ୍ଟ କରାଗଲେ ମଧ୍ୟ ତାକୁ ଦଣ୍ଡ ଦେବାର ଭାବନା ମନକୁ ଆଣନ୍ତି ନାହିଁ।

୪୭. ମହାପୁରୁଷମାନଙ୍କ ପାଇଁ କିଛି ହେଲେ କର୍ତ୍ତବ୍ୟ ନାହିଁ, ତଥାପି ସ୍ୱାଭାବିକ ଭାବେ ହିଁ ସେମାନେ ଲୋକଙ୍କ ଉପରେ ଦୟା କରି ଲୋକହିତ ପାଇଁ ଶାସ୍ତ୍ରାନୁକୂଳ ଆଚରଣ ପ୍ରଦର୍ଶନ କରନ୍ତି।

୪୮. ସନ୍ଥଙ୍କ ଜୀବନ ଲୋକସମୂହର ଉପକାର ନିମିତ୍ତ ହିଁ ଉଦ୍ଦିଷ୍ଟ ହୋଇଥାଏ।

୪୯. ମାଟି, ପଥର, ସୁନା ଆଦି ସମସ୍ତ ପଦାର୍ଥରେ, ପଶୁ, ପକ୍ଷୀ, କୀଟ, ପତଙ୍ଗ, ମନୁଷ୍ୟ ଓ ଦେବାଦି ସମସ୍ତ ପ୍ରାଣୀଠାରେ ତଥା ସୁଖ-ଦୁଃଖ, ଲାଭ-ହାନି, ମାନ-ଅପମାନ, ନିନ୍ଦା-ସ୍ତୁତି, ଶୀତ-ଉଷ୍ଣ, ପ୍ରିୟ-ଅପ୍ରିୟ ଆଦି ସମସ୍ତ ଭାବ ଓ କର୍ମଗୁଡ଼ିକରେ ସର୍ବତ୍ର, ସର୍ବଦା ଓ ସର୍ବଥା ସନ୍ଥମାନଙ୍କର ସମଭାବ ରହିଥାଏ।

୫୦. ଜୀବନ୍ମୁକ୍ତ ମହାପୁରୁଷ ଯେଉଁ ବ୍ୟବହାର କରିଥାନ୍ତି, ତାହା ସେମାନଙ୍କ ନିଜ ସ୍ୱାର୍ଥ ଏବଂ ରାଗ-ଦ୍ୱେଷ ଓ ଅହଂକାର ନ ରହିବା କାରଣରୁ କେବଳ ଲୋକହିତାର୍ଥ ପାଇଁ ଉଦ୍ଦିଷ୍ଟ ହୋଇଥାଏ। ସେମାନଙ୍କ ଆଚରଣ ସଂସାରରେ ପ୍ରମାଣ-ସ୍ୱରୂପ ସ୍ୱୀକାର କରାଯାଏ।

୫୧. ମହାପୁରୁଷଙ୍କ ଆଚରଣରେ ପାପ ଓ ସ୍ୱାର୍ଥର ଗନ୍ଧ ନ ଥାଏ। ସେମାନଙ୍କର ପ୍ରତ୍ୟେକ କ୍ରିୟା ବା କାର୍ଯ୍ୟରେ ପରମ ଉପଦେଶ ପୂରି ରହିଥାଏ।

୫୨. ସନ୍ଥମାନଙ୍କର ସମସ୍ତ କ୍ରିୟା ସାଧାରଣ ମନୁଷ୍ୟଙ୍କ ଅପେକ୍ଷା ବିଲକ୍ଷଣ, ପରମ ପବିତ୍ର ଓ ଦିବ୍ୟ ହୋଇଥାଏ।

୫୩. ମହାପୁରୁଷ ଏହି ତ୍ରିଗୁଣମୟୀ ମାୟା ଓ ତାହାର କାର୍ଯ୍ୟରୂପ ଶରୀରାଦି ଠାରୁ ସର୍ବଥା ଅତୀତ ଅଟନ୍ତି।

୫୪. ମହାପୁରୁଷଙ୍କୁ ପ୍ରିୟ ବସ୍ତୁର ପ୍ରାପ୍ତି ଓ ଅପ୍ରିୟର ବିୟୋଗରେ ହର୍ଷ

ହୁଏ ନାହିଁ କି କୌଣସି ଅପ୍ରିୟର ପ୍ରାପ୍ତି ଓ ପ୍ରିୟର ବିୟୋଗରେ ଶୋକ ହୁଏ ନାହିଁ।

୫୫. ଜୀବନ୍ମୁକ୍ତ ପୁରୁଷଙ୍କ ପ୍ରକୃତି ସାଧନକାଳରେ ହିଁ ଶୁଦ୍ଧ ହୋଇଯାଏ। ଅତଃ ସମସ୍ତ ପ୍ରକାରର ଜୀବନ୍ମୁକ୍ତ ମହାପୁରୁଷଙ୍କ ଆଚରଣ ଶାସ୍ତ୍ରସମ୍ମତ, ଆଦର୍ଶରୂପ, ପବିତ୍ର ଓ ସର୍ବଥା ଦିବ୍ୟ ହୋଇଥାଏ।

୫୬. ମହାପୁରୁଷଙ୍କର ସମସ୍ତ କ୍ରିୟା ଭଗବାନଙ୍କ ପ୍ରେରଣା ଅନୁସାରେ ସମସ୍ତ ପ୍ରାଣୀଙ୍କୁ ଅଭୟ ଦେଇ ଥାଏ।

୫୭. ଆବଶ୍ୟକତାନୁସାରେ ସବୁ କିଛି କରି ମଧ୍ୟ ଏପରି ମହାପୁରୁଷଙ୍କ ସ୍ଥିତି ନିରନ୍ତର ପରମେଶ୍ୱରଙ୍କ ଠାରେ ହିଁ ରହି ଥାଏ।

୫୮. ମମତା-ଅହଂକାରାଦି ବିକାରଗୁଡ଼ିକର ଅତ୍ୟନ୍ତ ଅଭାବ ଓ ପରିଗ୍ରହର ତ୍ୟାଗ, ଏକାନ୍ତ ଦେଶରେ ବାସ, ମନ-ଇନ୍ଦ୍ରିୟ ସଂଯମ, ସାଂସାରିକ ମନୁଷ୍ୟଙ୍କ ଠାରୁ ସମସ୍ତ ପଦାର୍ଥଗୁଡ଼ିକରୁ ଓ କର୍ମମାନଙ୍କରୁ ବୈରାଗ୍ୟ ଓ ନିବୃତ୍ତି, ନିରନ୍ତର ବିଜ୍ଞାନାନନ୍ଦଘନ ବ୍ରହ୍ମଙ୍କ ସ୍ୱରୂପରେ ସ୍ଥିତ ରହିବା—ସାଂଖ୍ୟଯୋଗଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତ ମହାପୁରୁଷଙ୍କ ମନର ଏସବୁ ସ୍ୱାଭାବିକ ଧର୍ମସଦୃଶ ହୋଇଥାଏ, କାରଣ ସାଧନକାଳରେ ମଧ୍ୟ ସେ ଏପରି ହିଁ ଅଭ୍ୟାସ କରିଅଛନ୍ତି।

୫୯. ମହାତ୍ମା ସେ ହିଁ ଅଟନ୍ତି—ଯେ ନିଜ ଆତ୍ମା ଅର୍ଥାତ୍ ମନ-ବୁଦ୍ଧିକୁ ଅନନ୍ୟଭାବେ ଭଗବାନଙ୍କ ଠାରେ ସଂଯୋଗ କରିଦେଇଛନ୍ତି ଅଥବା ଯେ ସବୁଠୁଁ ମହାନ୍ ଭଗବାନଙ୍କୁ ହିଁ ନିଜର ଆତ୍ମା କରିନେଇଛନ୍ତି।

୬୦. ବାସ୍ତବରେ ସେ ହିଁ ମହାତ୍ମା, ଯିଏ ସାରା ବ୍ରହ୍ମାଣ୍ଡରେ ଆତ୍ମାକୁ ବ୍ୟାପକରୂପେ ଦେଖନ୍ତି।

୬୧. ସମୁଦ୍ରରେ ଅନେକ ନଦୀର ଜଳ ପଡୁଛି, କିନ୍ତୁ ସେ ପୂର୍ବବତ୍ ଗମ୍ଭୀର ଅଛି, ନିଜ ମହିମାରେ ପରିପୂର୍ଣ୍ଣ ଅଛି। ଏହିପରି ଜ୍ଞାନୀ, ମହାତ୍ମା, ବିରକ୍ତ, ନିଷ୍କାମୀ ପୁରୁଷ ନିଜ ମହିମାରେ ପରିପୂର୍ଣ୍ଣ ଥାଆନ୍ତି।

୬୨. ସନ୍ଥଙ୍କ ଜୀବନ ହିଁ ସାର୍ଥକ ହୋଇଥାଏ।

୬୩. ମହାପୁରୁଷ ନିଜ ପାଇଁ ନିଜ ମୁଖରୁ ଜ୍ଞାନୀ ବା ଅଜ୍ଞାନ କୌଣସି ଶବ୍ଦର ପ୍ରୟୋଗ କରିପାରନ୍ତି ନାହିଁ।

୬୪. ଜ୍ଞାନୀ ଓ ଅଜ୍ଞାନର ସଂଜ୍ଞା କେବଳ ଲୋକଶିକ୍ଷା ପାଇଁ ଉଦ୍ଦିଷ୍ଟ ଓ ଅଜ୍ଞାନମାନଙ୍କର ହୃଦୟ ଭିତରେ ହିଁ ଏହାର କଳ୍ପନା ଅଛି।

୬୫. ଯେ କହେ "ମୋତେ ଜ୍ଞାନ ହୋଇଗଲା", ତାକୁ ଜ୍ଞାନୀ ବୋଲି ମାନିବା ଉଚିତ ନୁହେଁ, କାରଣ ଏପରି କହିବାରେ ଜ୍ଞାତା, ଜ୍ଞାନ ଓ ଜ୍ଞେୟ ଏ ତିନି ପଦାର୍ଥର ଅସ୍ତିତ୍ୱ ସିଦ୍ଧ ହୁଏ; ପୁଣି ଯେ ଏହା କହେ ଯେ "ଜ୍ଞାନ ହେଲା କି ନାହିଁ ମୋତେ ଜଣା ନାହିଁ" ସେ ମଧ୍ୟ ଜ୍ଞାନୀ ନୁହେଁ, କାରଣ ଜ୍ଞାନୋତ୍ତର କାଳରେ ଏପ୍ରକାର ସନ୍ଦେହ ରହି ନ ପାରେ।

୬୬. ବାସ୍ତବିକ ଦୃଷ୍ଟିରେ ଜ୍ଞାନୀ କାହାର ସଂଜ୍ଞା ଅଟେ, ଏହା କେହି ବାଣୀ ଦ୍ୱାରା ପ୍ରକାଶ କରି ପାରିବ ନାହିଁ, କାରଣ ଜ୍ଞାନୀର ଦୃଷ୍ଟିରେ ତ ଜ୍ଞାନୀପଣିଆ ମଧ୍ୟ ନାହିଁ।

୬୭. ଜ୍ଞାନୀର କଳ୍ପନା ଅଜ୍ଞାନର ଅନ୍ତଃକରଣରେ ଅଛି, କିନ୍ତୁ ଶୁଦ୍ଧ ଚେତନର ଦୃଷ୍ଟିରେ କୌଣସି ଅନ୍ୟ ପଦାର୍ଥର ସତ୍ତା ନାହିଁ।

୬୮. ଜ୍ଞାନୀ ପାଇଁ ସଂସାର ନାହିଁ।

୬୯. ଜ୍ଞାନୀର ଯେବେ ଦୃଷ୍ଟି ନ ରହନ୍ତା, ପୁଣି ସୃଷ୍ଟି କେଉଁଠି ରହନ୍ତା?

୭୦. ଗୁଣାତୀତର ବାସ୍ତବିକ ଅବସ୍ଥାକୁ ଅନ୍ୟ କେହି ଜାଣି ପାରେ ନାହିଁ ଓ କହି ମଧ୍ୟ ପାରେ ନାହିଁ, ତାହା ସ୍ୱସଂବେଦ୍ୟ ସ୍ଥିତି ଅଟେ।

୭୧. ଅଜ୍ଞଜନ ଏପ୍ରକାର କଳ୍ପନା କରିଥାନ୍ତି ଯେ ଏହି ଶରୀରରେ ଯେଉଁ ଜୀବ ଥିଲା, ସେ ସମଷ୍ଟି-ଚେତନରେ ମିଶିଗଲା, ସମଷ୍ଟି-ଚେତନର ଯେଉଁ ଅଂଶରେ ଅନ୍ତଃକରଣ ଅଧ୍ୟାରୋପ ହୋଇଛି, ସେହି ଅନ୍ତଃକରଣ ସହିତ ସେହି ଚେତନ ଅଂଶର ନାମ ଜ୍ଞାନୀ ଅଟେ।

୭୨. ଜ୍ଞାନୀ ଓ ଅଜ୍ଞାନର କର୍ମଗୁଡ଼ିକରେ ଏହା ହିଁ ପ୍ରଭେଦ ଯେ— ଜ୍ଞାନୀର କର୍ମ ଅନାସକ୍ତଭାବେ ସ୍ୱାଭାବିକ ହୋଇଥାଏ ଓ ଅଜ୍ଞାନର କର୍ମ ଆସକ୍ତିଯୁକ୍ତ ହୋଇଥାଏ।

୭୩. ମହାପୁରୁଷଙ୍କର କୌଣସି କାଳରେ ଏହି ମାୟାମୟ ସଂସାର ସହ ପୁନଃ ସମ୍ବନ୍ଧ ହୁଏ ନାହିଁ, କାରଣ ତାଙ୍କ ଦୃଷ୍ଟିରେ ସଂସାରର ସବୁଦିନ ପାଇଁ ଆତ୍ୟନ୍ତିକ ଅଭାବ ହୋଇଯାଏ। ଏହି ଅବସ୍ଥାରେ ତାଙ୍କର ପୁନରାଗମନ କିପରି ହୋଇପାରେ।

୭୪. ପରମାତ୍ମାଙ୍କ ତତ୍ତ୍ୱକୁ ଜାଣିଥିବା ପୁରୁଷ ଦୃଷ୍ଟିରେ ତ ସୁଖ-ପ୍ରାପ୍ତିରେ ହେଉଥିବା ପ୍ରସନ୍ନତା ଓ ଶାନ୍ତି ମଧ୍ୟ ବିକାର ଅଟେ। ତାହା ପୁଣ୍ୟ-ପାପବଶତଃ

ପ୍ରାପ୍ତ ହେଉଥିବା ଅନୁକୂଳ ବା ପ୍ରତିକୂଳ ବିଷୟଜନିତ ସୁଖ-ଦୁଃଖ ଉଭୟଠାରୁ ହିଁ ଅତୀତ ଅଟେ।

୭୫. ଜୀବନ୍ମୁକ୍ତର ଅନ୍ତଃକରଣରେ, କାମ, କ୍ରୋଧ, ହର୍ଷ, ଶୋକ ଆଦି କୌଣସି ବିକାର ରହେ ନାହିଁ।

୭୬. ସନ୍ଥଙ୍କର ଆଚରଣସମୂହରେ କୌଣସି ପ୍ରକାରର ଲେଶମାତ୍ର ମଧ୍ୟ ଦୋଷ ରହେ ନାହିଁ।

୭୭. ଯେପରି ସୂର୍ଯ୍ୟୋଦୟର ଉତ୍ତରକାଳରେ ରାତି ଲେଶମାତ୍ର ରହିବା ସମ୍ଭବ ନୁହେଁ, ସେହିଭଳି ଜ୍ଞାନରୂପୀ ସୂର୍ଯ୍ୟ ଉଦୟ ହେବାପରେ ଅଜ୍ଞାନ ଲେଶମାତ୍ର ମଧ୍ୟ ରହିବା ସମ୍ଭବ ନୁହେଁ।

୭୮. ଜ୍ଞାନୋତ୍ତର କାଳରେ ଜ୍ଞାନୀର ମନ-ବୁଦ୍ଧି ମଧ୍ୟ ଭଜା ଯାଇଥିବା ବୀଜ ସଦୃଶ ରହିଯାଇଥାଏ। ପୁଣି କହିଲ ଭଲା, ତାଙ୍କଠାରେ କାମ-କ୍ରୋଧାଦି ବିକାରଗୁଡ଼ିକ ପାଇଁ ଅବକାଶ କାହିଁ? କାମ-କ୍ରୋଧାଦି ଆସୁରୀ ସମ୍ପଦଶାଳୀମାନଙ୍କ ଠାରେ ଥାଏ ଓ ସେଗୁଡ଼ିକ ନରକର ଦ୍ୱାରରୂପେ ବିବେଚିତ। (ଗୀତା ୧୬। ୨୧)

୭୯. ଶ୍ରୀପରମାତ୍ମାଙ୍କ ସାକ୍ଷାତ୍କାର ହୋଇଗଲା ପରେ ଯେବେ ସମସ୍ତ ବିକାରଗୁଡ଼ିକର ଅସଲ ମୂଳ ଆସକ୍ତିର ହିଁ ଅତ୍ୟନ୍ତ ଅଭାବ ହୋଇଯାଏ, ତେବେ ତା'ର କାର୍ଯ୍ୟରୂପ ଅନ୍ୟବିକାର ସବୁ କିପରି ରହିପାରିବେ?

୮୦. ଯେଉଁମାନଙ୍କ ଠାରେ ରାଗ-ଦ୍ୱେଷ କାରଣରୁ ହର୍ଷ-ଶୋକର ବିକାର ହୁଏ, ସେମାନେ ଜୀବନ୍ମୁକ୍ତ ବୋଲି ବୁଝା ଯାଆନ୍ତି ନାହିଁ।

୮୧. ଜ୍ଞାନୀ ମହାତ୍ମାମାନଙ୍କୁ ହର୍ଷ-ଶୋକ ତଥା ସୁଖ-ଦୁଃଖ ଆଦି ହୁଏ ନାହିଁ, ସୁଖ-ଦୁଃଖର ଘଟଣା ଘଟିଲେ ତଥା ସୁଖ-ଦୁଃଖର କାରଣ ପ୍ରାପ୍ତ ହେଲେ ମଧ୍ୟ ସେମାନଙ୍କ ଅନ୍ତଃକରଣରେ ହର୍ଷ ଶୋକ ଆଦି ବିକାର ଜାତ ହୁଏ ନାହିଁ, ତାଙ୍କ ସ୍ଥିତି ସବୁବେଳେ ଅବିଚଳ ଓ ସମ ରହେ।

୮୨. ଜ୍ଞାନୀ ପୁରୁଷଠାରେ କାମ, କ୍ରୋଧ ଆଦି କୌଣସି ବିକାର ରହେ ନାହିଁ, ତା'ଦ୍ୱାରା ପାପ କର୍ମ ମଧ୍ୟ ହୋଇପାରେ ନାହିଁ—ଏହି ସିଦ୍ଧାନ୍ତକୁ ସ୍ୱୀକାର କରିବା ଉଚିତ।

୮୩. କେବଳ ଲୋକଦୃଷ୍ଟିରୁ ହିଁ ଜ୍ଞାନୀ ପ୍ରାରବ୍ଧ ଭୋଗ କରୁଥିବା ପରି ଜଣାଯାଏ, ବାସ୍ତବରେ ଜ୍ଞାନୀର ପ୍ରାରବ୍ଧ କର୍ମ ସହ କୌଣସି ସମ୍ବନ୍ଧ ରହେ ନାହିଁ।

୮୪. ଭଗବାନ ସାଧକକୁ ଭଗବତ୍‌ପ୍ରାପ୍ତି ପାଇଁ ଓ ସାଧନୋତ୍ତର ସିଦ୍ଧକାଳରେ ଜ୍ଞାନୀକୁ ଲୋକସଂଗ୍ରହ ଅର୍ଥାତ୍ ଜନତାକୁ ସନ୍ମାର୍ଗକୁ ଆଣିବା ପାଇଁ ନିଜର ଉଦାହରଣ ଉପସ୍ଥିତ କରି କର୍ମ କରିବା ପାଇଁ ଆଜ୍ଞା ଦେଇଛନ୍ତି ।



## ମହାତ୍ମା

୧. ମହାତ୍ମା ପୁରୁଷଙ୍କ ଆଚରଣ ସମୂହକୁ ମନେ ପକାଇବାଦ୍ୱାରା ବହୁତ ଲାଭ ହୁଏ—

(କ) ଶାରୀରିକ ବ୍ୟାଧି ଯେତେ ହେଉ, ସେ ସମୟରେ ଭୀଷ୍ମଙ୍କୁ ସ୍ମରଣ କରନ୍ତୁ । (ଖ) ଯେଉଁ ସ୍ଥାନରେ ନ୍ୟାୟ କରିବାକୁ ପଡ଼େ, ସେହି ସ୍ଥାନରେ ପ୍ରହ୍ଲାଦଙ୍କୁ ସ୍ମରଣ କରନ୍ତୁ । (ଗ) ଜୟଦେବ କବିଙ୍କୁ ସ୍ମରଣ କରି ନିଜ ସହିତ ଦ୍ୱେଷ କରୁଥିବା ଲୋକଙ୍କ ପ୍ରତି ଦୟା ପ୍ରଦର୍ଶନ କରିବା ଉଚିତ । (ଘ) ନିଜର ଶତ୍ରୁମାନଙ୍କୁ ମଧ୍ୟ ଅନ୍ୟ ମନୁଷ୍ୟଙ୍କ ଠାରୁ ରକ୍ଷା କରିବାରେ ମହାରାଜ ଯୁଧିଷ୍ଠିରଙ୍କ ଆଚରଣ ଅନୁକରଣୀୟ ଅଟେ । (ଙ) ମାତା-ପିତାଙ୍କ ସେବା କରିବାରେ ଶ୍ରବଣକୁମାର ତଥା ଆଜ୍ଞାପାଳନରେ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଆଚରଣ ସ୍ମରଣ କରିବା ଉଚିତ । (ଚ) ପ୍ରୀତି କ୍ଷେତ୍ରରେ ଭଗବାନ ଶ୍ରୀରାମଚନ୍ଦ୍ର ଓ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବ୍ୟବହାର ମନେ ପକାଇବା ଉଚିତ । (ଛ) ବିଷୟାସକ୍ତ ପୁରୁଷ ମହାରାଜ ଶୁକଦେବ ତଥା ଶ୍ରୀଋଷଭଦେବଙ୍କୁ ମନେ ପକାଇବା ଉଚିତ ।

୨. ଯେଉଁମାନେ ଏହି କଥାକୁ ଜାଣନ୍ତି ଯେ ଭଗବାନ ହିଁ ସର୍ବତ୍ର ବ୍ୟାପ୍ତ ଓ ଭଗବାନ ହିଁ ସମସ୍ତଙ୍କ ଆତ୍ମା, ସେହିମାନେ ହିଁ ମହାତ୍ମା ଅଟନ୍ତି । ସେମାନଙ୍କ ପାଇଁ ଭଗବାନ ସବୁ ସ୍ଥାନରେ ପ୍ରତ୍ୟକ୍ଷ ଅଛନ୍ତି ।

୩. ମହାତ୍ମାଙ୍କର କିଛି କରିବାକୁ ବାକି ନ ଥାଏ । ସେମାନଙ୍କ ଦ୍ୱାରା ଯାହା କିଛି ହୁଏ, ତାହା କେବଳ ଲୋକହିତ ପାଇଁ ହୁଏ ।

୪. ମହାପୁରୁଷଙ୍କ ସାନ୍ନିଧ୍ୟରେ ସାଧନ କରିବା ଦ୍ୱାରା ବଡ଼ ଲାଭ ହୁଏ, କାରଣ କୌଣସି ତ୍ରୁଟି ହେଲେ ସେମାନେ ସୁଧାରି ନିଅନ୍ତି ।

୫. ଯଦି ମହାପୁରୁଷ କୌଣସି ଲୋକକୁ କୌଣସି କାମପାଇଁ କହନ୍ତି, କିନ୍ତୁ ତାକୁ ସେହି କାମରେ ଲାଭ ନ ଥିବା ପରି ଅନୁମାନ ହୁଏ, ତା'ହେଲେ

ମଧ୍ୟ ତାଙ୍କ କଥାରେ ଏଭଳି ବିଶ୍ୱାସ କରି କାମ କରିବା ବହୁତ ଉତ୍ତମ ଅଟେ । ଯଥା—'ଏହି କଥା ସେ କହିଛନ୍ତି, ସେହିଭଳି କରିବା ଉତ୍ତମ । ମୋର ତୁଚ୍ଛ ବୁଦ୍ଧି କାରଣରୁ ମୋତେ ସେହି କାମରେ ଲାଭ ଜଣା ଯାଉ ନାହିଁ, ଏହା ମୋ ବୁଦ୍ଧିର ଦୋଷ ଅଟେ । କାମନା ରଖି କାମ କଲେ ବି ଲାଭ ଅଛି; କାରଣ ସେ କହିଛନ୍ତି, ସେହି କଥା କଲେ ମୋର ବହୁତ ଲାଭ ହେବ ।'

୬. ମହାପୁରୁଷଙ୍କ ମନରେ ସମସ୍ତଙ୍କୁ ଭଗବାନଙ୍କ ଆଡ଼କୁ ଉନ୍ମୁଖ କରିଦେବାକୁ ଇଚ୍ଛା ରହିଥାଏ । ପୁଣି ଯିଏ ତାଙ୍କ ଆଗକୁ ଆସିଯାଏ, ସେମାନଙ୍କୁ ଭଗବାନଙ୍କ ଆଡ଼କୁ ଉନ୍ମୁକ୍ତ କରାଇବାରେ ସନ୍ଦେହ କ'ଣ ଅଛି! ଯେପରି ଲଢ଼େଇ ବାଜା ବାଜିଲେ କାପୁରୁଷଙ୍କ ହୃଦୟରେ ମଧ୍ୟ ଉତ୍ତେଜନା ଆସିଯାଏ, ସେ ସେହିପରି ତତ୍ପର ହୋଇଯାନ୍ତି ।

୭. ଭଗବତ୍‌ପ୍ରାପ୍ତ ମହାପୁରୁଷଙ୍କ ଶରୀର, ମନ, ଧନଦ୍ୱାରା ଲୋକଙ୍କୁ ଉଦ୍ଧାରିବାର ଉଦ୍ୟମ ହେଉଥାଏ । ଏପରି ପୁରୁଷଙ୍କୁ ଯଦି ସନ୍ନିପାତ ରୋଗ ହୋଇଯାଏ, ତା'ହେଲେ ମଧ୍ୟ ଏହି କଥା ହିଁ ପ୍ରମାଣିତ ହେବ ।

୮. ଯଦି କେହି ମହାପୁରୁଷଙ୍କୁ ମିତ୍ର ସ୍ୱୀକାର କରି ସାଧନ ନ କରେ ତା'ହେଲେ ସେ ତାଙ୍କ ମିତ୍ର ହେବାକୁ ଯୋଗ୍ୟ ନୁହେଁ; କାରଣ ତା'ର ଓଲଟା ପରିଣାମ ହୁଏ, ଅର୍ଥାତ୍ ଭଜନ-ଧ୍ୟାନ ହୋଇପାରେ ନାହିଁ ଏବଂ ସେ ଯଦି କହିବ ଯେ 'ମୋର ତ କଲ୍ୟାଣ ହେବାର ବିଶ୍ୱାସ ଅଛି', ତା'ହେଲେ କେଉଁ ଆଚରଣ ଭରସାରେ ବିଶ୍ୱାସ ଅଛି? ମହାପୁରୁଷଙ୍କ ମିତ୍ର ହେବା ଦ୍ୱାରା କଲ୍ୟାଣ ହୋଇଯିବ ଏପରି ତ ବିଶ୍ୱାସ ଅଛି, କିନ୍ତୁ ତାଙ୍କ କଥା ପାଗଳର ପ୍ରଳାପ ବୋଲି ବୁଝି ତା'ର ଆଦର କଲ ନାହିଁ କାହିଁକି? ଏଣୁ ଭଗବାନ ଗୀତା ଅଧ୍ୟାୟ ୧୮ ଶ୍ଳୋକ ୫୮ରେ କହିଛନ୍ତି ଯେ ମୋଠାରେ ଚିତ୍ତ ଲଗାଇଲେ ତୁ ସଂସାର ସମୁଦ୍ରରୁ ତରି ଯିବୁ । ଯଦି ତୁ ମୋ କଥା ନ ମାନିବୁ, ତା'ହେଲେ ତୁ ବିନାଶପ୍ରାପ୍ତ ହେବୁ ।



## ଭକ୍ତ

୧. ଭକ୍ତମାନଙ୍କ ସହ ସଂପର୍କ କରିବା ପାଇଁ ବିଶେଷ ଚେଷ୍ଟା କରିବା ଉଚିତ ।

୨. ଭଗବାନଙ୍କ ଭକ୍ତଙ୍କ ପରିଚୟ—ଯାହାଙ୍କ ସହ ମିଶିଲେ ଭଗବାନଙ୍କ ପ୍ରତି ପ୍ରେମ ଜାଗ୍ରତ ହୁଏ, ଭଗବାନଙ୍କ ସ୍ମୃତି ଆସିଯାଏ।

୩. ଭକ୍ତ ଭଗବାନଙ୍କୁ ଯେଉଁ ରୂପରେ ପ୍ରାପ୍ତି କରିବାକୁ ଇଚ୍ଛା କରେ, ଭଗବାନ ସେହି ରୂପରେ ତାକୁ ପ୍ରାପ୍ତ ହୋଇ ଯାଆନ୍ତି; ଯେପରି ନିରାକାର, ସାକାର, ଦ୍ୱିଭୁଜ, ଚତୁର୍ଭୁଜ ବିରାଟରୂପ ଇତ୍ୟାଦି।

୪. ଯାହାଙ୍କର କ୍ଷଣଟିଏ ମଧ୍ୟ ବ୍ୟର୍ଥ ଯାଏ ନାହିଁ, ଯାହାଙ୍କର ମନ ଭଗବାନଙ୍କ ଚିନ୍ତନରେ ରହିଥାଏ, ଯାହାଙ୍କ ବାଣୀ ଭଗବାନଙ୍କ ଜପରେ ଓ ସତ୍ୟ-ଭାଷଣରେ ରହେ, ଭଗବାନଙ୍କ ଗୁଣ, ପ୍ରେମ, ପ୍ରଭାବ, ରହସ୍ୟପୂର୍ଣ୍ଣ କଥାମୃତ ଶ୍ରବଣ-ମନନ-ପଠନ-ପାଠନରେ ଯେଉଁମାନଙ୍କର ସମୟ ବିତେ, ଯାହାଙ୍କ ହାତ-ଗୋଡ଼ ଓ ଶରୀର ଦ୍ୱାରା ଅନ୍ୟମାନଙ୍କର ଉପକାର ହୁଏ—ସେପରି ପୁରୁଷ ଧନ୍ୟବାଦର ପାତ୍ର ଅଟନ୍ତି।

୫. ଭକ୍ତଙ୍କ ଦର୍ଶନରେ ପାପୀ ମଧ୍ୟ ପାପମୁକ୍ତ ହୋଇଯାଏ। ଯଦି ତାରି ମାଧ୍ୟମରେ ଅନେକ ଲୋକେ ଜୀବନ୍ମୁକ୍ତ ହୋଇ ଯାଆନ୍ତି, ତେବେ ତା'ର ନିଜେ ଜୀବନ୍ମୁକ୍ତ ହେବାର ଆବଶ୍ୟକତା ବା କ'ଣ ରହିବ? ସେ ସବୁକାଳରେ ନିରନ୍ତର ଏକମାତ୍ର ଭଗବାନଙ୍କ ପ୍ରେମପୂର୍ବକ ଚିନ୍ତନ ହେବାର ଅଭିଳାଷ ବ୍ୟତୀତ ଆଉ କିଛି ଅଭିଳାଷ ନ ରଖିବା ଉଚିତ।

୬. ଯେତେବେଳେ ଭକ୍ତ ଭଗବାନଙ୍କ ବ୍ୟତୀତ ଅନ୍ୟ କାହାରି ସତ୍ତା ଦେଖେ ନାହିଁ, ସେତେବେଳେ ସେହି ପ୍ରେମୀଭକ୍ତ ଆନନ୍ଦମୟ ହୋଇଯାଏ। ତା'ପାଇଁ ନାରାୟଣଙ୍କ ବ୍ୟତୀତ ଆଉ କିଛି ରହେ ନାହିଁ।

୭. ଭଗବାନଙ୍କ ପ୍ରେମୀ ଭକ୍ତ ଯେଉଁଠି ରହେ, ସେଇଠି ସମସ୍ତ ତୀର୍ଥ ବାସ କରନ୍ତି ଓ ଯେଉଁଠି ତାଙ୍କ ପ୍ରେମୀ ଭକ୍ତଗଣ ଭଗବାନଙ୍କ ଗୁଣାବଳୀ-କୀର୍ତ୍ତନ କରନ୍ତି, ସେଠାରେ ତ ଭଗବାନ ସ୍ୱୟଂ ବିରାଜମାନ କରନ୍ତି।

୮. 'ଭକ୍ତମାଳ'ରେ ବହୁତ ଭକ୍ତଙ୍କ କଥା ଅଛି। ଯେଉଁ ଭକ୍ତବୃନ୍ଦ ନାନା ସିଦ୍ଧି ଦେଖାଇଲେ, ତାହା କେବଳ ଲୋକଙ୍କ ଉପରେ ଦୟା କରି ସେମାନଙ୍କୁ ଭଗବାନଙ୍କ ସହ ସଂଲଗ୍ନ କରିବା ପାଇଁ ହିଁ ଦେଖାଇଥିଲେ।

୯. ଯଦ୍ୟପି ସିଦ୍ଧି ଦେଖାଇବା ନିନ୍ଦନୀୟ କଥା, ତଥାପି ଭକ୍ତବୃନ୍ଦ ସେହି କାମ ସଂସାରର ହିତ ପାଇଁ କରି ଥାଆନ୍ତି।

୧୦. ଭକ୍ତ ତ ନିଜ ମାଲିକ ଅନୁସାରେ ହିଁ ପରିଚାଳିତ ହୁଅନ୍ତି। ଯିଏ ସ୍ୱାମୀଙ୍କ ଆଜ୍ଞା ଓ ରୁଚି ଅନୁସାରେ ଚାଲେ, ସେ ହିଁ ଭକ୍ତ ଅଟେ।

୧୧. ଯେଉଁ ଭକ୍ତ ନିଜର ସର୍ବସ୍ୱକୁ ଭଗବାନଙ୍କ ଠାରେ ଅର୍ପଣ କରିଦିଏ, ଶ୍ରୀନାରାୟଣଦେବ ମଧ୍ୟ ନିଜର ସର୍ବସ୍ୱ ତା'ଠାରେ ଅର୍ପଣ କରିଦିଅନ୍ତି।

୧୨. ଏପରି ଭକ୍ତ ସଂସାରରେ ଦୁର୍ଲଭ, ଯେଉଁମାନଙ୍କୁ ଭଗବାନଙ୍କ ପକ୍ଷରୁ ମୁକ୍ତିଆରନାମା ଅଧିକାରପତ୍ର ମିଳିଛି। ଆଜି ଯଦି ଅଧିକାରପ୍ରାପ୍ତ ପୁରୁଷ ମିଳିଯାନ୍ତି, ତା'ହେଲେ ଆମ ସମସ୍ତଙ୍କର ଉଦ୍ଧାର ହୋଇଯିବ।

୧୩. ଆପଣମାନେ ଯଦି ଚେଷ୍ଟା କରନ୍ତି, ତା'ହେଲେ ଏହିଭଳି ହୋଇ ପାରନ୍ତି। ଜଣେ ଲୋକ ଯଦି ଏପରି ମିଳିଯାଆନ୍ତି, ତା'ହେଲେ କଲ୍ୟାଣ ହୋଇପାରେ। ଏଣୁ ସେମାନଙ୍କୁ ଖୋଜି ବାହାର କରିବା ଉଚିତ।

୧୪. ଭଗବାନ ବିଷ୍ଣୁଙ୍କ ନାମ ଓ ଗୁଣାବଳୀ ଶ୍ରବଣ ଓ କୀର୍ତ୍ତନ କରିବା, ଭଗବାନଙ୍କ ଗୁଣ, ପ୍ରଭାବ, ଲୀଳା ଓ ସ୍ୱରୂପ ସ୍ମରଣ କରିବା, ଭଗବାନଙ୍କ ଚରଣ ସେବା କରିବା, ଭଗବାନଙ୍କ ବିଗ୍ରହ ପୂଜା କରିବା ଓ ତାଙ୍କୁ ନମସ୍କାର କରିବା, ଦାସଭାବେ ଆଜ୍ଞା ପାଳନ କରିବା, ସଖାଭାବେ ପ୍ରେମ କରିବା ଓ ସର୍ବସ୍ୱ ସହିତ ନିଜେ ନିଜକୁ ସମର୍ପଣ କରିଦେବା—ଭକ୍ତର ଏହା ହିଁ ଆଦର୍ଶ ଆଚରଣ ଅଟେ।

୧୫. ଭକ୍ତ ଦ୍ୱାରା କୌଣସି ଜୀବକୁ କ୍ଷୋଭ ପ୍ରାପ୍ତ ହୁଏ ନାହିଁ।

୧୬. ଅନ୍ୟର ସତ୍କାର କରିବା ଓ ତାଙ୍କୁ ମାନ-ବଡ଼ିମା ଦେବା ଭକ୍ତର ସାଧାରଣ ସ୍ୱଭାବ ହୋଇଯାଏ।

୧୭. ଭକ୍ତର ମନ ଓ ବୁଦ୍ଧି ନିରନ୍ତର ଭଗବାନଙ୍କ ଠାରେ ସମର୍ପିତ ହୋଇଥାଏ। ଏଣୁ ତା'ଜୀବନର ଅଧିକାଂଶ ସମୟ ଭଗବାନଙ୍କ ଭଜନ, ଧ୍ୟାନ, ଗୁଣାନୁବାଦ ଓ ସେବା ଆଦିରେ ଲାଗେ।

୧୮. ଭଗବତ୍‌ପ୍ରେମୀର ସ୍ୱାଭାବିକ ଭାବେ ଜଗତ୍ ସହିତ ଅକୃତ୍ରିମ ପ୍ରେମ ରହିଥାଏ।

୧୯. ଭକ୍ତ ପ୍ରତ୍ୟେକ କାର୍ଯ୍ୟ ଭଗବାନଙ୍କ ଇଚ୍ଛାନୁକୂଳରେ ହିଁ କରେ। ଫଳରେ ସେ କେବେ ପାପ ବା ନିଷିଦ୍ଧ କର୍ମ କରି ପାରେନା। ତା'ର ପ୍ରତ୍ୟେକ କାର୍ଯ୍ୟ ସ୍ୱାଭାବିକ, ସରଳ, ସାତ୍ତ୍ୱିକ ଓ ଲୋକହିତକାରୀ ହୋଇଥାଏ, କାରଣ

ତା'ର ସଂସାରରେ କୌଣସି ସ୍ୱାର୍ଥ ନ ଥାଏ କି କୌଣସି ବସ୍ତୁରେ ଆସକ୍ତି ଓ କୌଣସି ସମୟରେ କାହାପ୍ରତି ଭୟ ନ ଥାଏ।

୨୦. ଭକ୍ତ ନିଜ ଭଗବାନଙ୍କ ପ୍ରତ୍ୟେକ ବିଧାନରେ ପରମ ସନ୍ତୁଷ୍ଟ ରହେ। ସେ ଦୁଃଖରେ ଉଦ୍‌ବିଗ୍ନ ହୁଏ ନାହିଁ କି ସୁଖରେ ସ୍ପୃହା ରଖେ ନାହିଁ।

୨୧. ଭକ୍ତ ସମସ୍ତଙ୍କ ସହ ନିଜ ଆତ୍ମା ସଦୃଶ ବ୍ୟବହାର କରେ, ତା'ଦ୍ୱାରା କେବେ କାହାରି ଅନିଷ୍ଟ ହୋଇପାରେ ନାହିଁ।

୨୨. ଭକ୍ତର ପ୍ରତ୍ୟେକ କାର୍ଯ୍ୟ ଈଶ୍ୱରଙ୍କ ଆଜ୍ଞାନୁସାରେ ହୁଏ। ତା'ର କୌଣସି କ୍ରିୟା ପରମାତ୍ମାଙ୍କ ଇଚ୍ଛାର ପ୍ରତିକୂଳ ହୁଏ ନାହିଁ; କାରଣ ପରମାତ୍ମାଙ୍କ ଇଚ୍ଛାରେ ହିଁ ସେ ନିଜର ଇଚ୍ଛାକୁ ମିଶାଇ ଦିଏ, ସେ ନିଜର କୌଣସି ସ୍ୱତନ୍ତ୍ର ଇଚ୍ଛା ରଖେ ନାହିଁ।

୨୩. ଭକ୍ତ ସମଗ୍ର ବିଶ୍ୱକୁ ସାକ୍ଷାତ୍ ନିଜର ଇଷ୍ଟଦେବ ଭଗବାନ ଭାବି ଦରକାର ପଡ଼ିଲେ ବିଶ୍ୱହିତ ପାଇଁ ପ୍ରସନ୍ନତାପୂର୍ବକ ନିଜର ସମସ୍ତ ଐଶ୍ୱର୍ଯ୍ୟ ସହିତ ନିଜକୁ ବଳିବେଦି ଉପରେ ଚଢ଼ାଇ ଦିଏ।

୨୪. ଭକ୍ତ ଦୟାର ସମୁଦ୍ର ଅଟନ୍ତି।

୨୫. ଭକ୍ତଙ୍କ ହୃଦୟ ଭଗବାନଙ୍କ ଭଳି ବଜ୍ରଠାରୁ ବଳି କଠୋର ଓ ପୁଷ୍ପଠାରୁ ବଳି କୋମଳ ହୋଇଥାଏ।

୨୬. ଭକ୍ତଙ୍କ ସହିତ କେହି ଯେତେ ପ୍ରକାରର କ୍ରୂର ବ୍ୟବହାର କରୁ ନା କାହିଁକି, ସେ ତା' ବଦଳରେ ତା'ର ହିତ ସାଧନ ହିଁ କରି ଥାଆନ୍ତି।

୨୭. ନିଜ ଉପରେ କୌଣସି ବିପତ୍ତି ଆସିଲେ ଭକ୍ତ ବହୁତ ବଡ଼ ବଡ଼ ବିପତ୍ତିକୁ ମଧ୍ୟ ପ୍ରସନ୍ନତାର ସହ ସହି ଯାଆନ୍ତି।

୨୮. ଅନ୍ୟମାନଙ୍କ ହିତ ତୁଳନାରେ ସେହି ଭକ୍ତଗଣ ମୁକ୍ତିକୁ ମଧ୍ୟ ତୁଚ୍ଛ ଭାବନ୍ତି।

୨୯. ସର୍ବଶକ୍ତିମାନ୍ ପରମାତ୍ମାଙ୍କୁ ଯିଏ ସବୁ ସ୍ଥାନରେ ଦେଖେ, ତା'ଦ୍ୱାରା ପାପ କିପରି ବା ହୋଇପାରିବ?

୩୦. ଯେ ନିଜକୁ ଭକ୍ତ ବୋଲି ପରିଚୟ ଦେଇ ପାପ ସମୂହରେ ବୁଡ଼ି ରହନ୍ତି ବା କଥା କଥାକେ ମୃତ୍ୟୁ ଆଦିକୁ ଭୟ କରନ୍ତି, ସେମାନେ ଯଥାର୍ଥରେ ଈଶ୍ୱରଙ୍କ ଅସ୍ତିତ୍ୱ ମାନନ୍ତି ନାହିଁ। ଈଶ୍ୱରଙ୍କୁ ମାନୁଥିବା ଲୋକ ନିତ୍ୟ ନିଷ୍ପାପ ଓ ନିର୍ଭୟ ରହନ୍ତି।

୩୧. ଭକ୍ତଙ୍କୁ ରକ୍ଷା କରିବା ତ ଭଗବାନଙ୍କର ଯଶ ଅଟେ ।

୩୨. ଯେଉଁ ଭକ୍ତ ସଂପୂର୍ଣ୍ଣ ଜଗତ୍‌କୁ ପରମାତ୍ମାଙ୍କ ସ୍ୱରୂପ ଭାବି ସମସ୍ତଙ୍କ ସେବା କରିବା ନିଜର କର୍ତ୍ତବ୍ୟ ବୋଲି ବୁଝେ, ସେ ନିଷ୍କ୍ରିୟ, ଅଳସୁଆ କିପରି ବା ହୋଇପାରିବ?

୩୩. ଭକ୍ତର ଦୃଷ୍ଟିରେ ଏକମାତ୍ର ପରମାତ୍ମା ହିଁ ତାହାର ପରମଜୀବନ, ପରମଧନ, ପରମଆଶ୍ରୟ, ପରମଗତି ଓ ପରମଲକ୍ଷ୍ୟ ହୋଇଥାନ୍ତି । ପ୍ରତି କ୍ଷଣ ତାଙ୍କର ନାମ-ଗୁଣାବଳୀର ଚିନ୍ତନ କରିବା, ତାଙ୍କରି ପ୍ରେମରେ ତନ୍ମୟ ହୋଇ ରହିବା, ବାହ୍ୟଜ୍ଞାନ ଭୁଲି ଉନ୍ମତ୍ତ ହୋଇଯିବା, ପରମ ଉଲ୍ଲାସର ସହ ପ୍ରେମମଗ୍ନ ରହିବା—ଏହା ହିଁ ତା'ର ଜୀବନଚର୍ଯ୍ୟା ହୋଇଯାଏ ।

୩୪. "ଯାହାର ବାଣୀ ମୋର (ଭଗବାନଙ୍କର) ନାମ, ଗୁଣ ଓ ଲୀଳା-ଦର୍ଶନ କରୁ କରୁ ଗଦ୍‌ଗଦ ହୋଇଯାଏ, ଯାହାର ଚିତ୍ତ ମୋ ରୂପ, ଗୁଣ, ପ୍ରଭାବ ଓ ଲୀଳା ସମୂହକୁ ସ୍ମରଣ କରୁ କରୁ ଦ୍ରବିତ ହୋଇଯାଏ, ଯିଏ ବାରମ୍ବାର କାନ୍ଦୁଥାଏ ଓ କେବେ କେବେ ହସୁଥାଏ ଏବଂ ଯିଏ ଲଜ୍ଜା ଛାଡ଼ି ପ୍ରେମମଗ୍ନ ହୋଇ ପାଗଳ ପରି ଉଚ୍ଚ ସ୍ୱରରେ ଗାୟନ କରେ ଓ ନାଚେ, ଏପରି ଭକ୍ତ ସଂସାରକୁ ପବିତ୍ର କରିଦିଏ ।"

୩୫. ଭଗବାନଙ୍କ ପ୍ରେମର ମୂର୍ତ୍ତିମାନ୍ ବିଗ୍ରହ ହୋଇଯାଇଥିବା ଭକ୍ତକୁ ସାରା ସଂସାର ପରମ ପ୍ରେମମୟ ଓ ପରମ ଆନନ୍ଦମୟ ପ୍ରତୀତ ହୁଏ । ସେ ଯେଉଁ ମାର୍ଗରେ ଯାଏ, ସେହି ମାର୍ଗରେ ଶ୍ରଦ୍ଧା, ପ୍ରେମ, ଭକ୍ତି, ଆନନ୍ଦ, ସମତା ଓ ଶାନ୍ତି ପ୍ରବାହିତ ହୁଏ । ଏପରି ଭକ୍ତକୁ ନିଜ ଉପରେ ଧାରଣ କରି ଧରଣୀ ଧନ୍ୟ ଓ ସନାଥ ହୁଏ, ପିତୃଗଣ ଆନନ୍ଦିତ ହୋଇ ଯାଆନ୍ତି ଓ ଦେବତା ନାଚିବାରେ ଲାଗନ୍ତି ।

୩୬. ଯେଉଁମାନେ ଭଜନ, ଧ୍ୟାନ ଆଦି ସାଧନ ଦ୍ୱାରା ମୁକ୍ତି ପାଆନ୍ତି, ସେମାନେ ପରିଶ୍ରମ କରି ପେଟ ପୋଷୁଥିବା ଲୋକଙ୍କ ସହ ସମାନ ଅଟନ୍ତି । ଯେଉଁମାନେ କାଶୀ ଆଦି କ୍ଷେତ୍ରମାନଙ୍କରେ କୌଣସି ମହାତ୍ମା ପୁରୁଷଙ୍କ ଶରଣାପନ୍ନ ହୋଇ ମୁକ୍ତି ପ୍ରାପ୍ତ କରନ୍ତି, ସେମାନେ ଭିକ୍ଷା ମାଗି ପେଟ ପୋଷୁଥିବା ଲୋକ ପରି ଅଟନ୍ତି ଓ ଯେଉଁମାନେ ଭଗବାନ ଦେଲେ ମଧ୍ୟ ମୁକ୍ତିକୁ ଗ୍ରହଣ ନ କରି ସମସ୍ତଙ୍କ କଲ୍ୟାଣ ପାଇଁ ଭଗବାନଙ୍କ ଗୁଣ, ପ୍ରେମ, ତତ୍ତ୍ୱ, ରହସ୍ୟ ଓ ପ୍ରଭାବଯୁକ୍ତ

ଭଗବାନଙ୍କ ସିଦ୍ଧାନ୍ତକୁ ସଂସାରରେ ପ୍ରଗ୍ଚର କରନ୍ତି, ସେମାନେ ସମସ୍ତଙ୍କୁ ଖୁଆଇ ସାରି ଭୋଜନ କରୁଥିବା ଲୋକଙ୍କ ସମାନ ଅଟନ୍ତି ।

୩୭. ଯାହାର ଅନ୍ୟମାନଙ୍କ ହିତ ପାଇଁ ଅନାୟାସରେ ସର୍ବସ୍ୱ ତ୍ୟାଗ କରିବାର ସ୍ୱଭାବ ରହିଛି, ଯାହାଠାରେ ସମସ୍ତଙ୍କର କଲ୍ୟାଣ କରିବାର ସ୍ୱାଭାବିକ ବୃତ୍ତି ଅନନ୍ତକାଳରୁ ରହି ଆସିଛି ଓ ଯିଏ ଅନ୍ୟମାନଙ୍କ ପ୍ରସନ୍ନତାରେ ହିଁ ସଦା ପ୍ରସନ୍ନ ରହେ, ଏପରି ଉଦାର ସ୍ୱଭାବଯୁକ୍ତ ପରମ ଦୟାଳୁ ପ୍ରେମୀ ଭକ୍ତକୁ ଭଗବାନ ନିଜର ପୂର୍ଣ୍ଣ ଅଧିକାର ଦେଇ ପାରନ୍ତି ।

୩୮. ଭକ୍ତଙ୍କର ଭଗବାନଙ୍କ ସହିତ ପୂର୍ଣ୍ଣ ଏକତା ହୋଇଯାଏ । ଭଗବାନ ଓ ଭକ୍ତ କହିବାକୁ କେବଳ ଦୁଇ ଅଟନ୍ତି । ନାରଦ ମଧ୍ୟ ନିଜ ଭକ୍ତିସୂତ୍ରରେ ଏପରି ଭକ୍ତକୁ ଭଗବାନଙ୍କ ସ୍ୱରୂପ ବୋଲି କହିଛନ୍ତି—**''ତସ୍ମିଂସ୍ତଜ୍ଜନେ ଭେଦାଭାବାତ୍''** (ନାରଦ ଭକ୍ତିସୂତ୍ର ୪୧) । ଭଗବାନ ଓ ତାଙ୍କ ଭକ୍ତଙ୍କ ମଧ୍ୟରେ କୌଣସି ଅନ୍ତର ନାହିଁ ।

୩୯. ସାରା ସଂସାର ଭଗବାନଙ୍କର ଗୋଟିଏ ଅଂଶରେ ସ୍ଥିତ (ଗୀତା ୧୦।୪୨) ଓ ସେହି ଭଗବାନ ଭକ୍ତଙ୍କ ହୃଦୟରେ ଅଛନ୍ତି—ଏହି ସିଦ୍ଧାନ୍ତ ଦୃଷ୍ଟିରୁ ଭଗବାନଙ୍କ ଭକ୍ତ ଭଗବାନଙ୍କ ଠାରୁ ବଡ଼ ଅଟନ୍ତି ।

୪୦. ଯେଉଁ କାମ ଭଗବାନ କରି ପାରନ୍ତି ନାହିଁ, ତାହାକୁ ଭକ୍ତ କରି ଦିଅନ୍ତି । ଏହି ନ୍ୟାୟରେ ଭଗବାନଙ୍କ ଭକ୍ତ ଭଗବାନଙ୍କ ଠାରୁ ବଡ଼ ଅଟନ୍ତି ।

୪୧. ଭଗବାନ ଭକ୍ତଙ୍କ ପ୍ରେମରେ ବାଧ୍ୟ ହୋଇ ଅବତାର ଗ୍ରହଣ କରନ୍ତି । ଭଗବାନଙ୍କର ପ୍ରକଟ ହେବା ଭକ୍ତମାନଙ୍କର ଅଧୀନ ଅଟେ ।

୪୨. ଯଦି ସଂସାରରେ ଭକ୍ତ ନ ଥାଆନ୍ତେ, ତା'ହେଲେ ଭଗବାନଙ୍କ ଭକ୍ତିର ନାମ ସଂସାରରେ ସମ୍ଭବତଃ ନ ଥାଆନ୍ତା, ଏଥିପାଇଁ ଭଗବାନ ଭକ୍ତଙ୍କ ଋଣୀ ଅଟନ୍ତି ।

୪୩. ଭକ୍ତ ନ ଥିଲେ ଭଗବାନଙ୍କ ଗୁଣ-ମହିମା ଓ ମହତ୍ତ୍ୱ-ପ୍ରଭୁତ୍ୱର ବିସ୍ତାର ଜଗତ୍‌ରେ କିଏ କରନ୍ତା?

୪୪. ଭଗବାନଙ୍କର ଯେଉଁମାନେ ପ୍ରକୃତପ୍ରେମୀ ଭକ୍ତ, ସେମାନେ ନିଜ ମୁକ୍ତିକୁ ଖାତିରି ନ କରି ସମସ୍ତଙ୍କ କଲ୍ୟାଣ ପାଇଁ ପ୍ରସନ୍ନତାର ସହ ତତ୍ପର ହୋଇ ଯାଆନ୍ତି ଓ ଭଗବାନଙ୍କୁ ଏହି ବର ମଧ୍ୟ ମାଗନ୍ତି ଯେ, ''ସମସ୍ତ ଜୀବମାନଙ୍କର କଲ୍ୟାଣ ହେଉ ।''

୪୫. ସେହି ପୁରୁଷମାନେ ଧନ୍ୟ ଅଟନ୍ତି, ଯେଉଁମାନେ ସାକ୍ଷାତ୍ ପୂର୍ଣ୍ଣ ବ୍ରହ୍ମ ପରମେଶ୍ୱର ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ମହାରାଜଙ୍କ ନାମ, ରୂପ, ଗୁଣ, ଚରିତ୍ର, ପ୍ରଭାବ, ତତ୍ତ୍ୱ ଓ ରହସ୍ୟକୁ ବୁଝି ପ୍ରେମ ଓ ଆନନ୍ଦରେ ତନ୍ମୟ ହୋଇ ସଂସାରରେ ତାଙ୍କୁ ଅନୁକରଣ କରି ବିଚରଣ କରନ୍ତି । ସେହି ପୃଥିବୀ ଧନ୍ୟ ଅଟେ, ଯେଉଁଠି ଏପରି ପୁରୁଷ ବାସ କରନ୍ତି ।

୪୬. ଭକ୍ତଙ୍କର ଯେଉଁଠି ଚରଣ ପଡ଼େ, ସେହି ଦେଶ ତୀର୍ଥ ପାଲଟି ଯାଏ ଏବଂ ସେଠାରେ ପ୍ରେମ, ଆନନ୍ଦ ଓ ଶାନ୍ତିର ସ୍ରୋତ ବହିବାରେ ଲାଗେ । ଏପରି ଭଗବତ୍‌ପରାୟଣ ପୁରୁଷରତ୍ନ ଯେଉଁଠି ଉତ୍ପନ୍ନ ହୁଅନ୍ତି । ସେହି ବଂଶ ଧନ୍ୟ, ଜଗତ୍‌ପୂଜ୍ୟ ଓ ପରମ ପବିତ୍ର ଅଟେ ।

୪୭. ଭଗବଦ୍‌ଭକ୍ତ ସ୍ୱୟଂ ତୀର୍ଥରୂପ ଅଟନ୍ତି ।

୪୮. ପବିତ୍ରତାଦୃଷ୍ଟିରୁ ଭଗବାନଙ୍କ ଭକ୍ତ ତୀର୍ଥମାନଙ୍କ ଠାରୁ ବଡ଼; କାରଣ ସମସ୍ତ ତୀର୍ଥମାନଙ୍କର ଉତ୍ପତ୍ତି ସେହିମାନଙ୍କ କାରଣରୁ ବା ପ୍ରତାପରୁ ହୋଇଛି ।

୪୯. ତୀର୍ଥସମୂହ ସାରା ସଂସାରକୁ ପବିତ୍ର କରନ୍ତି, କିନ୍ତୁ ଭଗବାନଙ୍କ ଭକ୍ତ ତ ତୀର୍ଥମାନଙ୍କୁ ମଧ୍ୟ ପବିତ୍ର କରନ୍ତି ।

୫୦. ଭଗବାନଙ୍କ ଭକ୍ତଙ୍କର ଆଶ୍ରୟ ଗ୍ରହଣ କରି ତାଙ୍କ ବଚନ ଅନୁସାରେ କାର୍ଯ୍ୟ କରୁଥିବା ଅତିଶୟ ମୂଢ଼ପୁରୁଷ ମଧ୍ୟ ଦୁଃଖସମୂହରୁ ମୁକ୍ତ ହୋଇ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଏ ।



# ସତ୍‌ସଙ୍ଗ

୧. ଭଜନ ଓ ସତ୍‌ସଙ୍ଗ ଅଧିକ ହେଲେ ହିଁ ବିଶ୍ୱାସ ଓ ପ୍ରେମ ଜାତ ହୁଏ । ଏଣୁ ଭଜନ ଓ ସତ୍‌ସଙ୍ଗ ପାଇଁ ବିଶେଷ ଚେଷ୍ଟା କରିବା ଉଚିତ ।

୨. ଭଗବାନଙ୍କ ନାମ-ଜପକୁ ସର୍ବୋତ୍ତମ ବୁଝିଯିବା ପରେ ଭଜନ ଅଧିକ ହୋଇପାରେ । ଭଗବାନଙ୍କ ନାମର ମହିମା ତଥା ପ୍ରଭାବ ଜାଣିବା ପରେ ବି ଭଜନ ଅଧିକ ହୋଇପାରେ; କିନ୍ତୁ ତାହା ଜାଣିହୁଏ ସତ୍‌ସଙ୍ଗରୁ ।

୩. ସମସ୍ତ ଲୋକ ଏକତ୍ର ହୋଇ ଭଗବାନଙ୍କ ଚର୍ଚ୍ଚା କରିବା ବହୁତ ଉତ୍ତମ । ସତ୍‌ସଙ୍ଗ ହିଁ ସାର ।

୪. ଭଗବାନଙ୍କ ଭଜନ-ଧ୍ୟାନ ଓ ସତ୍‌ସଙ୍ଗଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୋଇପାରେ।

୫. ସତ୍‌ସଙ୍ଗ ତ ସବୁ ସ୍ଥାନରେ ପ୍ରାପ୍ତ ହୋଇପାରେ, କିନ୍ତୁ ସେଥିପାଇଁ ଅନୁସନ୍ଧାନ ଆବଶ୍ୟକ।

୬. ପ୍ରବଳ ଇଚ୍ଛା ଥିଲେ ଓ ତଦନୁସାରେ ଉଦ୍ୟମ କରାଗଲେ ସତ୍‌ସଙ୍ଗ ଅବଶ୍ୟ ପ୍ରାପ୍ତ ହୁଏ। ନିଜେ ନିଜ ଘରେ ବସି ସତ୍‌ସଙ୍ଗ ଲାଭ କରିବା ଭାଗ୍ୟରେ ଥିଲେ ହିଁ ସମ୍ଭବ ହୁଏ।

୭. ଭକ୍ତଙ୍କ ଦ୍ୱାରା ଯଦି ସଂସାରର କାମ ହୁଏ, ତା'ହେଲେ ଭଜନ ସହିତ ହିଁ ହୁଏ। ଭଜନ ଏକ ଅମୂଲ୍ୟ ବସ୍ତୁ ଅଟେ, ଭଜନ ସଦୃଶ କୌଣସି ବସ୍ତୁ ନାହିଁ। ଏପ୍ରକାରର ବିଶ୍ୱାସ ଜନ୍ମିଲେ ଭଜନ ଅଧିକ ହୁଏ। ଏପ୍ରକାରର ବିଶ୍ୱାସ ମଧ୍ୟ ଭଗବାନଙ୍କ କୃପା, ସତ୍‌ସଙ୍ଗ ଓ ଭଜନ ଦ୍ୱାରା ହିଁ ହୁଏ।

୮. ଶ୍ରଦ୍ଧା-ଭକ୍ତିର ସହିତ ସତ୍‌ସଙ୍ଗର ଅନୁସନ୍ଧାନ କଲେ ପ୍ରାୟ ସବୁ ଜାଗାରେ ସତ୍‌ସଙ୍ଗ ମିଳିପାରେ। ଯାହାର ସତ୍‌ସଙ୍ଗ ପ୍ରତି ପ୍ରେମ ଥିବ, ସେ କୌଣସିଠାରେ ସତ୍‌ସଙ୍ଗ ଖୋଜିଲେ ବି ତାକୁ ସତ୍‌ସଙ୍ଗ ମିଳିଯିବ।

୯. ସତ୍‌ସଙ୍ଗର କଥାଗୁଡ଼ିକୁ ବହୁତ ଉତ୍ତମ ଓ ଅମୂଲ୍ୟ ଭାବି ମନକୁ ସେଥିରେ ଲଗାଇବା ଉଚିତ।

୧୦. ନିଷ୍କାମ ପ୍ରେମଭାବରେ ସତ୍‌ସଙ୍ଗ କଲେ ବିଶେଷ ଶ୍ରଦ୍ଧା ହୋଇଥାଏ, ସତ୍‌ସଙ୍ଗରେ ଶୁଣିଥିବା କଥାକୁ ନିଜ ଶକ୍ତି ଅନୁସାରେ ଧାରଣ କର। ସତ୍‌ସଙ୍ଗର ସାମର୍ଥ୍ୟ ବହୁତ ଅଟେ; ଯେପରି କି—ଅଗ୍ନିର ସ୍ଫୁଲିଙ୍ଗ।

୧୧. ଯାହାଙ୍କ ଘରେ ପ୍ରତିଦିନ ଭଗବତ୍ କଥା ସତ୍‌ସଙ୍ଗ ହୁଏ, ତାଙ୍କ ଭାଗ୍ୟର ପ୍ରଶଂସା କେହି କରି ପାରିବ ନାହିଁ।

୧୨. ସତ୍‌ସଙ୍ଗ ଦ୍ୱାରା କଲ୍ୟାଣ ହୁଏ। ଏହି କଥା ଉପରେ ବିଶ୍ୱାସ କଲେ ମଧ୍ୟ କଲ୍ୟାଣ ହୋଇଯାଏ।

୧୩. ସତ୍‌ସଙ୍ଗ ମାସକ ପାଇଁ ହେଉ ବା ନ ହେଉ, କିନ୍ତୁ ସତ୍‌ସଙ୍ଗରେ ପ୍ରେମ ହେବା ଉଚିତ। ଯଦି ପୂର୍ଣ୍ଣ ଶ୍ରଦ୍ଧା, ପ୍ରେମ ଓ ନିଷ୍କାମ ଭାବ ଥିବ, ତା'ହେଲେ ଗୋଟିଏ ମୁହୂର୍ତ୍ତର ସତ୍‌ସଙ୍ଗ ଯଥେଷ୍ଟ ଅଟେ।

୧୪. ଖୁବ୍ ଉତ୍କଣ୍ଠା ଥାଇ ମଧ୍ୟ ସତ୍‌ସଙ୍ଗ ତ୍ୟାଗ ଅର୍ଥାତ୍ ନିଜେ ନ

ଯାଇ ଅନ୍ୟମାନଙ୍କୁ ସତ୍‌ସଙ୍ଗରେ ଲଗାଇବାର ଚେଷ୍ଟା ଉତ୍ତମ ଅଟେ । ଯେପରି ଅର୍ଥ ଲୋଭୀ ପୁରୁଷର ଅର୍ଥ ପ୍ରତି ଉତ୍କଣ୍ଠା ଥିଲେ ସୁଦ୍ଧା ଉପଯୁକ୍ତ ପାତ୍ର ପ୍ରାପ୍ତ ହୋଇଗଲେ ଦାନ ଦେବାର ଚେଷ୍ଟା କରିଥାଏ ।

୧୫. ଯଦି ସତ୍‌ସଙ୍ଗରେ ଅନ୍ୟକୁ ପଠାଇବା ପାଇଁ ନିଜକୁ ସତ୍‌ସଙ୍ଗ ଛାଡ଼ିବାକୁ ପଡ଼େ, ତା'ହେଲେ ଉତ୍କଣ୍ଠା ରଖିବା ସହିତ ସତ୍‌ସଙ୍ଗ ତ୍ୟାଗ କଲେ ହାନି ନାହିଁ । କିନ୍ତୁ ସତ୍‌ସଙ୍ଗକୁ ଅନ୍ୟକୁ ପଠାଇ ନିଜେ ଯଦି ସତ୍‌ସଙ୍ଗର ଉତ୍କଣ୍ଠା ଛାଡ଼ି ଦିଅନ୍ତି ତଥା ସାଧନକୁ କୋହଳ କରି ଦିଅନ୍ତି, ତା'ହେଲେ ହାନି ହୁଏ ତଥା ଅନ୍ୟ ଯାହାକୁ ପଠାଇବେ ତାକୁ ସେତିକି ଲାଭଦାୟକ ନୁହେଁ ବୋଲି ବୁଝିଲେ ନିଜେ ଯିବା ହିଁ ଠିକ୍ ।

୧୬. ସତ୍‌ସଙ୍ଗର ମର୍ମ ଜାଣିଯିବାପରେ ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ ସତ୍‌ସଙ୍ଗ ଛାଡ଼ିଲେ ବହୁତ କ୍ଷତି ଅନୁଭବ ହୁଏ । ସତ୍‌ସଙ୍ଗ ସମାନ ଆଉ କିଛି ଦେଖାଯାଏ ନାହିଁ ।

୧୭. ସତ୍‌ସଙ୍ଗ କରିବା ସମୟରେ ବଡ଼ ଆନନ୍ଦ ମିଳିଥାଏ, ଅଶ୍ରୁପାତ ମଧ୍ୟ ହୁଏ ଓ ବାରମ୍ବାର ରୋମାଞ୍ଚ ଜାତ ହୁଏ । ଯେପର୍ଯ୍ୟନ୍ତ ଏପରି ଅବସ୍ଥା ନ ହୋଇଛି, ସେପର୍ଯ୍ୟନ୍ତ ବୁଝିବା ଉଚିତ ଯେ ପ୍ରକୃତ ସତ୍‌ସଙ୍ଗ ହୋଇ ନାହିଁ ଓ ତା'ର ମର୍ମ ଜଣାଯାଇ ନାହିଁ ।

୧୮. ଭଜନ-ସତ୍‌ସଙ୍ଗ ରୂପୀ ଔଷଧକୁ ବହୁଦିନ ଧରି ସେବନ କଲେ, ଜନ୍ମ-ମରଣରୂପୀ କଠିନ ଭବରୋଗ ନିଶ୍ଚିତରୂପେ ନଷ୍ଟ ହୋଇଯାଏ ।

୧୯. ଉତ୍ତମ ଆଚରଣ ପାଇଁ ବିଶେଷ ଚେଷ୍ଟା କରିବା ଉଚିତ । ସତ୍‌ସଙ୍ଗ ଦ୍ୱାରା ହିଁ ଉତ୍ତମ ଆଚରଣ ହେବା ସମ୍ଭବ । ଅତଏବ ଭଜନ, ଧ୍ୟାନ ଓ ସତ୍‌ସଙ୍ଗ ପାଇଁ ବିଶେଷ ପ୍ରଯତ୍ନ କରିବା ଉଚିତ ।

୨୦. ଭଗବାନଙ୍କ ନାମ-ଜପ ଓ ସ୍ମରଣ ଅଧିକ ହେବାର ଉପାୟ ସତ୍‌ସଙ୍ଗ ଅଟେ । ସତ୍‌ସଙ୍ଗ କରିବା ଓ ଭଗବାନଙ୍କ ଗୁଣାନୁବାଦ ପଢ଼ିବା ଦ୍ୱାରା ଭଗବାନଙ୍କ ଠାରେ ଶ୍ରଦ୍ଧା ଜାତ ହୋଇ ଭଗବାନଙ୍କ ସ୍ମରଣ ଅଧିକ ହୁଏ, ଫଳରେ ପାପ ସମୂହ ନାଶ ହୋଇ ପୂର୍ଣ୍ଣପ୍ରେମ ହୋଇଯାଏ ।

୨୧. ସତ୍‌ସଙ୍ଗ ଦ୍ୱାରା ଭଜନ ଅଧିକ ହୋଇଥାଏ । ଭଜନର ଆଧିକ୍ୟରୁ ଭଗବାନଙ୍କ ଠାରେ ପ୍ରେମ ଓ ସଂସାର ପ୍ରତି ବୈରାଗ୍ୟ ଜାତ ହୋଇଥାଏ ।

ବୈରାଗ୍ୟ ଜାତ ହୋଇଗଲେ ବିନା ଉଦ୍ୟମରେ ପରମାତ୍ମାଙ୍କ ପ୍ରତି ଧ୍ୟାନ ରହେ, ସେତେବେଳେ ଧ୍ୟାନପାଇଁ ବିଶେଷ ସାଧନ କରିବାର ଆବଶ୍ୟକତା ରହେ ନାହିଁ।

୨୨. ସତ୍‌ସଙ୍ଗ କଲେ ପରମାତ୍ମାଙ୍କ ଠାରେ ଯେ ମନ ନ ଲାଗିବ, ଏପରି ହୋଇ ନ ପାରେ; ସତ୍‌ସଙ୍ଗଦ୍ୱାରା ଉଦ୍ଧାର ହୋଇପାରେ।

୨୩. ସଂସାରର ସତ୍ତା ଓ ଆସକ୍ତି ନାଶ ହେବାର ଉପାୟ ଜପ ଓ ସତ୍‌ସଙ୍ଗ ଅଟେ।

୨୪. ସତ୍‌ସଙ୍ଗରେ ଶ୍ରଦ୍ଧା ହେଲେ ସାମାନ୍ୟ ସଙ୍ଗ ଦ୍ୱାରା ମଧ୍ୟ ଭଗବତ୍‌ପ୍ରାପ୍ତି ହୋଇପାରେ।

୨୫. ସତ୍‌ସଙ୍ଗର ଉତ୍କଣ୍ଠା ଥିଲେ ଯଦି କୌଣସି ନ୍ୟାୟଯୁକ୍ତ କାରଣରୁ ସତ୍‌ସଙ୍ଗରେ ଉପସ୍ଥିତ ହେବା ସମ୍ଭବ ନ ହୁଏ, ତେବେ ଘରେ ବସି ମଧ୍ୟ ଉତ୍ତମ ଉପଦେଶ ଓ ସାଧୁସଙ୍ଗତି ପ୍ରାପ୍ତି ହୋଇପାରେ।

୨୬. ଭଗବତ୍‌ପ୍ରାପ୍ତି ପାଇଁ ଯଦି ସତ୍‌ସଙ୍ଗରେ ବିଶେଷ ଉତ୍କଣ୍ଠା ହୋଇଯାଏ, ତା'ହେଲେ ଭଗବାନ ନିଜେ ସାଧୁବେଶରେ ତା'ନିକଟକୁ ଆସିଯିବା କିଛି ଅସମ୍ଭବ ନୁହେଁ। ଅତଏବ ଭଜନ-ଧ୍ୟାନ ଓ ସତ୍‌ସଙ୍ଗ ପ୍ରତି ବିଶେଷ ଉତ୍କଣ୍ଠା ରଖିବା ଉଚିତ।

୨୭. ଭଜନ-ଧ୍ୟାନ ଓ ସତ୍‌ସଙ୍ଗର ପ୍ରଭାବରେ ମଳ, ବିକ୍ଷେପ ଓ ଆବରଣ-ଦୋଷ କ୍ଷୀଣ ହୋଇଗଲେ ସାଧକର ଭଗବାନଙ୍କ ପ୍ରତି ପ୍ରେମ ଜାତ ହୁଏ ଓ ତା'ପରେ ସଂସାର ପ୍ରତି ବୈରାଗ୍ୟ ଉତ୍ପନ୍ନ ହୁଏ।

୨୮. ପ୍ରତ୍ୟେକ ସମୟରେ ଭଜନ, ଧ୍ୟାନ, ସତ୍‌ସଙ୍ଗ ଓ ସେବା ପାଇଁ କଟିବଦ୍ଧ ହୋଇ ଚେଷ୍ଟା କରିବା ହିଁ ମନୁଷ୍ୟର କର୍ତ୍ତବ୍ୟ ଅଟେ।

୨୯. ଭଜନ ଓ ସତ୍‌ସଙ୍ଗ ଅଧିକ ହେଲେ ଅନ୍ତଃକରଣ ଶୁଦ୍ଧ ହେବ, ତେଣିକି ଧାରଣା ହେବାରେ ବିଳମ୍ବ ହେବ ନାହିଁ ଏବଂ ସଂସାରର କାମନା ରହିବ ନାହିଁ।

୩୦. ନିତ୍ୟ ସତ୍‌ସଙ୍ଗକାରୀଙ୍କ ମୁକ୍ତିରେ ସଂଦେହ ନାହିଁ। ଯଦି କେହି ନିତ୍ୟ ସତ୍‌ସଙ୍ଗ କରିବା ପାଇଁ ଆଜି ହିଁ ଶପଥ ନେଇଛି ଓ ସେ ଯଦି ଆଜି ହିଁ ରାତିରେ ମରିଗଲା, ତା'ହେଲେ ବି ସେ ଉଦ୍ଧାର ପାଇଯିବ।

୩୧. ସତ୍ପୁରୁଷଙ୍କ ଠାରୁ ଯେତେ ସମୟ ପର୍ଯ୍ୟନ୍ତ ଭଗବତ୍‌ବିଷୟକ ବାର୍ତ୍ତା ଶୁଣିବାକୁ ମିଳେ, ତାହାରି ନାମ ସାଧାରଣ ପୁରୁଷଙ୍କ ପାଇଁ ସତ୍‌ସଙ୍ଗ ଅଟେ। କିନ୍ତୁ ପରମ ଶ୍ରଦ୍ଧାଳୁ ପୁରୁଷଙ୍କ ପାଇଁ ସେହି ସତ୍ପୁରୁଷଙ୍କ ଦର୍ଶନ, ଭାଷଣ, ସ୍ପର୍ଶ, ଚିନ୍ତନ ସମସ୍ତ ସତ୍‌ସଙ୍ଗ ଅଟେ, କାରଣ ସେମାନଙ୍କୁ ପଦେ ପଦେ ଶିକ୍ଷା ମିଳେ।

୩୨. କେତେକ ଲୋକ ଏହି କଥା ମନରେ ରଖି ଥାଆନ୍ତି ଯେ ମହାପୁରୁଷଙ୍କ ସଂସର୍ଗ ଦ୍ୱାରା ଉଦ୍ଧାର ହୋଇଯିବ, ଏଥିପାଇଁ ଅନ୍ୟ କୌଣସି ସାଧନ ଆବଶ୍ୟକ ନାହିଁ। ଏତାଦୃଶ ମାନ୍ୟତା ଯୁକ୍ତିସଙ୍ଗତ ନୁହେଁ; କାରଣ ଯେଉଁ ସତ୍‌ସଙ୍ଗର ଏହା ମହିମା ଓ ଯେଉଁ ସତ୍‌ସଙ୍ଗ କରିବାଦ୍ୱାରା ଉଦ୍ଧାର ହୋଇଯିବ, ସାଧନା କମ୍ ହୋଇଯିବା ତାହାର ଫଳ ହୋଇ ନ ପାରେ। ସତ୍‌ସଙ୍ଗଦ୍ୱାରା ତ ସାଧନା ତୀବ୍ର ହେବା ହିଁ ଉଚିତ।

୩୩. ସତ୍ପୁରୁଷଙ୍କ ସାନ୍ନିଧ୍ୟ ଲାଭ ପାଇଁ ଚେଷ୍ଟା କରିବା ଉଚିତ।

୩୪. ମୂଲ୍ୟବାନ୍ ମୂଲ୍ୟବାନ୍ କାମରେ ହିଁ ସମୟ ଲଗାଇବା ଉଚିତ। ଭଜନ, ଧ୍ୟାନ ଓ ସତ୍‌ସଙ୍ଗ ସମାନ ସଂସାରରେ କୌଣସି ମୂଲ୍ୟବାନ୍ ପଦାର୍ଥ ନାହିଁ।

୩୫. ମହାପୁରୁଷଙ୍କ ସଙ୍ଗ ଦୁର୍ଲଭ, ଅଗମ୍ୟ ଓ ଅମୋଘ ଅଟେ। ଏଣୁ ଭଗବତ୍‌ପ୍ରାପ୍ତି ଇଚ୍ଛୁକ ପୁରୁଷଙ୍କୁ ସେହି ସତ୍ପୁରୁଷଙ୍କର ସଙ୍ଗ ଅବଶ୍ୟ କରିବା ଉଚିତ।

୩୬. ଭଗବତ୍‌ସଙ୍ଗୀ ଅର୍ଥାତ୍ ନିତ୍ୟ ଭଗବାନଙ୍କ ସହ ରହୁଥିବା ଅନନ୍ୟ ପ୍ରେମୀ ଭକ୍ତଙ୍କର ନିମିଷମାତ୍ରକ ସଂସର୍ଗ ସହ ଆମେ ସ୍ୱର୍ଗ ତଥା ମୋକ୍ଷର ସମାନତା କରି ପାରିବା ନାହିଁ, ପୁଣି ମନୁଷ୍ୟଙ୍କ ଇଚ୍ଛିତ ପଦାର୍ଥଗୁଡ଼ିକର ତୁଳନା ବା କ'ଣ କରିବା?

୩୭. ମହାପୁରୁଷଙ୍କ ସଂସର୍ଗ ଦ୍ୱାରା ହିଁ ସମସ୍ତ କାର୍ଯ୍ୟର ସିଦ୍ଧି ହୋଇଥାଏ।

୩୮. ସାଧକର ଧାରଣାରେ ତାକୁ ସଂସାରରେ ଯେଉଁ ସବୁଠୁଁ ଉତ୍ତମ ସଦାଚାରୀ, ତ୍ୟାଗୀ, ଜ୍ଞାନୀ ମହାତ୍ମା ଦେଖାଯିବେ, ତାଙ୍କରି ପାଖକୁ ଯାଇ ସେ ତାଙ୍କରି ଆଜ୍ଞାନୁସାରେ ସାଧନରେ ତତ୍ପରତାର ସହ ଲାଗି ଯାଉ। ତାଙ୍କ ବଚନ-ଗୁଡ଼ିକରେ ପୂର୍ଣ୍ଣ ବିଶ୍ୱାସ ରଖୁ, ତାଙ୍କ ନିକଟକୁ ଯାଇ ପୁଣି "କିଂକର୍ତ୍ତବ୍ୟବିମୂଢ଼"

ହୋଇ ନ ରହୁ । ନିଜ ବୁଦ୍ଧିକୁ ପ୍ରାଧାନ୍ୟ ନ ଦେଉ । ତାଙ୍କ ଦ୍ୱାରା ବତାଇ ଦିଆଯାଇଥିବା ସାଧନ ଯଦି ଠିକ୍ ଭାବେ ବୁଝି ନ ହୁଏ, ତା'ହେଲେ ନମ୍ରତାପୂର୍ବକ ପଗ୍ଚରି ନିଜର ସମାଧାନ କରୁ ଓ ସାଧନରେ ଲାଗିଲେ ମଧ୍ୟ ଯଦି କିଛି ସମୟ ପର୍ଯ୍ୟନ୍ତ ପ୍ରତ୍ୟକ୍ଷ ସୁଖର ପ୍ରତୀତି ନ ହୁଏ, ତା'ହେଲେ ମଧ୍ୟ ପରିଣାମରେ ହେଉଥିବା ପରମହିତ ଉପରେ ବିଶ୍ୱାସ କରି ତାଙ୍କ ଆଜ୍ଞା ପାଳନ କରିବାରେ କେବେହେଲେ ବିମୁଖ ନ ହେଉ ।

୩୯. ନିଜର ସାରା ଜୀବନ ମହାପୁରୁଷଙ୍କ ସଂସର୍ଗରେ ରହି ଭଗବାନଙ୍କ ନାମ, ରୂପ, ଗୁଣ, ପ୍ରେମ, ପ୍ରଭାବ, ଲୀଳା, ଧାମ, ରହସ୍ୟ ଓ ତତ୍ତ୍ୱର ଅମୃତମୟୀ କଥାଗୁଡ଼ିକୁ ନିରନ୍ତର ଶୁଣିବା ଉଚିତ ଓ ସେଗୁଡ଼ିକୁ ଶୁଣି ଶୁଣି ପ୍ରେମ ଓ ଆନନ୍ଦରେ ମୁଗ୍ଧ ହୋଇ ନିଜର ମନୁଷ୍ୟ ଜୀବନକୁ ସଫଳ କରିବା ଉଚିତ ।

୪୦. ନିତ୍ୟ ନିୟମପୂର୍ବକ ସତ୍‌ସଙ୍ଗ କର, ଯଦି କେଉଁଠି ସତ୍‌ସଙ୍ଗ ନ ମିଳେ, ତା'ହେଲେ ସଦ୍‌ଗ୍ରନ୍ଥଗୁଡ଼ିକୁ ଅଧ୍ୟୟନ କର ଏବଂ ଭଗବତ୍‌ବାକ୍ୟଗୁଡ଼ିକ ସହ ସଂପର୍କ ରଖ ।

୪୧. ଭଗବତ୍ସମ୍ବନ୍ଧୀ କଥାଗୁଡ଼ିକର ଅନ୍ୱେଷଣ ଖୁବ୍ ତତ୍ପରତାର ସହ କର । ଯଦି କେହି ସତ୍‌ସଙ୍ଗ କରି ଆସିଅଛି ଅଥବା କୌଣସି ସତ୍‌ସଙ୍ଗ ସମ୍ବନ୍ଧୀୟ ପତ୍ର ମିଳିଛି, ତା'ହେଲେ ପରସ୍ପର ମଧ୍ୟରେ ଚର୍ଚ୍ଚା କରିବା ଉଚିତ ।

୪୨. ସତ୍‌ସଙ୍ଗର ସାଧନା କର । ସନ୍ଥ-ମହାପୁରୁଷଙ୍କ ସଙ୍ଗ, ସେବା ଓ ଆଜ୍ଞା ପାଳନ କର ।

୪୩. କର୍ମଯୋଗ ଓ ସାଂଖ୍ୟଯୋଗର ସାଧନଗୁଡ଼ିକଦ୍ୱାରା ଯେଉଁମାନେ ଅଧ୍ୟାତ୍ମପଥରେ ପ୍ରବେଶ କରନ୍ତି, ସେମାନଙ୍କର ସଫଳତା ସୁନିଶ୍ଚିତ । କିନ୍ତୁ ସନ୍ଥ-ମହାପୁରୁଷଙ୍କ ଦ୍ୱାରା କୁହାଯାଇଥିବା କୌଣସି ଗୋଟିଏ ମାର୍ଗକୁ ଯେଉଁମାନେ ଅନୁସରଣ କରନ୍ତି, ସେମାନେ ମଧ୍ୟ ପରମପଦକୁ ପ୍ରାପ୍ତ ହୋଇଯାଆନ୍ତି ।

୪୪. ସତ୍‌ସଙ୍ଗରେ ଯେତିକି କଥା କୁହାଯାଏ, ଯଦି ସେଗୁଡ଼ିକ ବିଷୟରେ ଧାରଣା କରିନିଅ, ସେଗୁଡ଼ିକୁ ଜୀବନରେ ନିୟମ ପରି କରିନିଅ, ତା'ହେଲେ ନିଶ୍ଚିତଭାବେ ସାଧନାରେ ଉନ୍ନତି ହେବ ।

୪୫. ମହାତ୍ମାଜନ ଯଦି କୌଣସି ଏକ ସାଧନର ଅଂଶମାତ୍ରକ କହି

ଦିଅନ୍ତି, ତେବେ ସେହି ଏକ ଅଂଶମାତ୍ରର ସାଧନରେ ମଧ୍ୟ ସାଧକର କଲ୍ୟାଣ ହୋଇଯାଏ।

୪୬. କେବଳ ଗୋ-ସେବା ମାତ୍ରକେ ସତ୍ୟକାମକୁ ଭଗବାନଙ୍କ ପ୍ରାପ୍ତି ହୋଇଗଲା। ମହାତ୍ମାଙ୍କ ଦ୍ୱାରା କୁହାଯାଇଥିବା କାରଣରୁ ଗୋ-ସେବା ହିଁ ପରମ ସାଧନ ହୋଇଗଲା।

୪୭. ମନୁଷ୍ୟର ଯେପରି ସଂସର୍ଗ ହୁଏ, ସେହି ସଂସର୍ଗ ଅନୁସାରେ ହିଁ ତା'ଉପରେ ସେପରି ପ୍ରଭାବ ପଡ଼େ।

୪୮. ପରଶମଣି ସହିତ ଲୁହାକୁ ଛୁଆଁଇ ଦେଲେ ତାହା ସୁନା ହୋଇଯାଏ—ଏ କଥା ସତ ଅଟେ, କିନ୍ତୁ ମଝିରେ ଯଦି ବ୍ୟବଧାନ ରହେ, ତା'ହେଲେ ତାହା ସୁନା ହୁଏ ନାହିଁ। ଏହିଭଳି ମହାତ୍ମାଙ୍କ ସଙ୍ଗ ଦ୍ୱାରା ପ୍ରଭାବ ନିଶ୍ଚିତରୂପେ ପଡ଼େ, କିନ୍ତୁ ଯଦି ଅବିଶ୍ୱାସର ବ୍ୟବଧାନ ରହେ, ତେବେ ପ୍ରଭାବ ପଡ଼େ ନାହିଁ। ଯାହାର ପୂର୍ଣ୍ଣ ବିଶ୍ୱାସ ଅଛି, ତା'ଉପରେ ପ୍ରଭାବ ପଡ଼େ।

୪୯. ଅନ୍ତଃକରଣ (ହୃଦୟ) ମଳିନ ହେଲେ ସତ୍‌ସଙ୍ଗର ପ୍ରଭାବ ପଡ଼େ ନାହିଁ। ମଇଳା ଲୁଗାକୁ ରଙ୍ଗରେ ବୁଡ଼ାଇଲେ ସେଥିରେ ରଙ୍ଗ ଭଲ ଧରେ ନାହିଁ। ପରିଷ୍କାର ଥିଲେ ରଙ୍ଗ ଭଲ ଧରେ।

୫୦. ମହାପୁରୁଷଙ୍କ ତତ୍ତ୍ୱକୁ ନ ବୁଝି ସେମାନଙ୍କ କାର୍ଯ୍ୟରେ ବିପରୀତ ଭାବନା ଆଣିବା ଯୋଗୁଁ ସବୁ ଲୋକ ଲାଭ ଉଠାଇ ପାରନ୍ତି ନାହିଁ।

୫୧. କୁସଙ୍ଗ କେବେ କରିବା ଉଚିତ ନୁହେଁ। ଯେଉଁ ପୁରୁଷ ବିଷୟୀ, ପାମର, ଦୁରାଗ୍ରହୀ, ପାପୀ ବା ନାସ୍ତିକ ଅଟେ, ତାହା ସହିତ ସଂସର୍ଗ କଦାପି କର ନାହିଁ ଓ ତାକୁ ନିଜ ପ୍ରତିବେଶୀ କରି ରଖ ନାହିଁ। ତାହାଠାରୁ ସର୍ବଦା ଦୂରରେ ରୁହ। ସେ ପ୍ଲେଗ ରୋଗ ସହିତ ସମାନ ଅଟେ। ଏଣୁ ତାହାର ଆଚରଣ ଓ ଦୁର୍ଗୁଣଗୁଡ଼ିକୁ ଘୃଣା କର, କିନ୍ତୁ ତାକୁ ଘୃଣା କର ନାହିଁ।

୫୨. ସତ୍‌ସଙ୍ଗ ନ ହେଲେ ବିଷୟମାନଙ୍କର ସଙ୍ଗ ସ୍ୱାଭାବିକଭାବେ ହୋଇଥାଏ, ତା'ଦ୍ୱାରା ମନୁଷ୍ୟର ପତନ ହୋଇଯାଏ ଓ ସତ୍‌ସଙ୍ଗ ଦ୍ୱାରା ପ୍ରତ୍ୟକ୍ଷ ପରମ ଲାଭ ମିଳିଥାଏ।

୫୩. ସତ୍‌ସଙ୍ଗ ବିନା ଭଜନ, ଧ୍ୟାନ, ସେବା ଆଦି ହୁଏ ନାହିଁ କି ଭଗବାନଙ୍କ ଠାରେ ଅନନ୍ୟ ପ୍ରେମ ହୋଇପାରେ ନାହିଁ। ଏହା ବିନା ପ୍ରଭୁଙ୍କ ପ୍ରାପ୍ତି ହେବା କଠିନ। ଏହି କାରଣରୁ ସତ୍‌ସଙ୍ଗର ମହିମା ଏତେ ଅଧିକ।

୫୪. ଶ୍ରଦ୍ଧାପୂର୍ବକ କରାଯାଇଥିବା ମହାପୁରୁଷଙ୍କ ସଂସର୍ଗ ଭଜନ ଓ ଧ୍ୟାନ ଠାରୁ ମଧ୍ୟ ବଡ଼ ଅଟେ । ଏଇଥିପାଇଁ ସନକାଦି ମହର୍ଷିଗଣ ଧ୍ୟାନକୁ ଛାଡ଼ି ଭଗବାନଙ୍କ ଗୁଣାନୁବାଦ ଶୁଣୁଥିଲେ ।

୫୫. ସତ୍‌ସଙ୍ଗ ଦ୍ୱାରା ଭଗବାନଙ୍କ ଗୁଣ, ପ୍ରଭାବ ଓ ପ୍ରେମପୂର୍ଣ୍ଣ କଥାଗୁଡ଼ିକୁ ଶୁଣିଲେ ହିଁ ଭଗବାନଙ୍କ ପ୍ରତି ଶ୍ରଦ୍ଧା ଏବଂ ପ୍ରେମ ହୋଇଥାଏ ।

୫୬. ରାଜା ପରୀକ୍ଷିତ ତ କେବଳ ଭଗବାନଙ୍କ ଗୁଣାନୁବାଦ ଶୁଣି ମୁକ୍ତ ହୋଇଗଲେ ।

୫୭. ଯେଉଁ ମନୁଷ୍ୟ ମହାପୁରୁଷଙ୍କ ତତ୍ତ୍ୱକୁ ବୁଝି ସେମାନଙ୍କ ସହ ସଙ୍ଗତି କରେ, ସେ ନିଜେ ଅନ୍ୟମାନଙ୍କୁ ପବିତ୍ର କରିବାକୁ ସକ୍ଷମ ହୋଇଯାଏ ।

୫୮. ସତ୍‌ପୁରୁଷଙ୍କ ସଂସର୍ଗ ବଡ଼ ରହସ୍ୟ ଓ ମହତ୍ତ୍ୱର ବିଷୟ । ଶ୍ରଦ୍ଧା ଓ ପ୍ରେମପୂର୍ବକ ସତ୍‌ସଙ୍ଗ କରୁଥିବା ଲୋକେ ହିଁ ଏହାର ମହତ୍ତ୍ୱ ଜାଣନ୍ତି । ସଂପୂର୍ଣ୍ଣ ରହସ୍ୟ ତ ସ୍ୱୟଂ ଭଗବାନ ହିଁ ଜାଣନ୍ତି, ଯିଏ କି ଭକ୍ତଗଣଙ୍କ ପ୍ରେମର ଅଧୀନ ହୋଇ ସେମାନଙ୍କ ପଛେ-ପଛେ ଘୂରି ବୁଲନ୍ତି ।

୫୯. ଉତ୍ତମ ପୁରୁଷଙ୍କୁ ତାଙ୍କ ସିଦ୍ଧାନ୍ତ ପାଳନକାରୀ ଯେତେ ପ୍ରିୟ ହୋଇଥାଏ, ତାଙ୍କ ନିଜ ପ୍ରାଣ ମଧ୍ୟ ସେତେ ପ୍ରିୟ ହୋଇ ନ ଥାଏ ।



## ସମତା

୧. ସମତା ହିଁ ଭଗବତ୍‌ପ୍ରାପ୍ତିର କଷଟି ଅଟେ । ଜ୍ଞାନ, କର୍ମ ଏବଂ ଭକ୍ତି—ତିନୋଟିଯାକ ମାର୍ଗରେ ସାଧନରୂପେ ମଧ୍ୟ ସମତାର ଆବଶ୍ୟକତା ରହିଛି ।

୨. ସମସ୍ତଙ୍କଠାରେ ଏକ ଅଖଣ୍ଡ ନିତ୍ୟ ଭଗବତ୍‌ସ୍ୱରୂପ ସମତା ସଦାସର୍ବଦା ସର୍ବତ୍ର ରହିବା ଉଚିତ

୩. ପ୍ରଭୁଙ୍କୁ ପ୍ରାପ୍ତ ହେଲେ ହିଁ ମନୁଷ୍ୟ ସମତାର ସଂପୂର୍ଣ୍ଣ ରହସ୍ୟ ବୁଝିପାରେ ।

୪. ସଂସାରରେ ବସ୍ତୁତଃ ଯାହାକୁ ସମଭାବ ପ୍ରାପ୍ତି ହୋଇଛି, ସେହି ମନୁଷ୍ୟ ଧନ୍ୟ ଅଟେ ।

୫. ଯଦି ମନୁଷ୍ୟ ସମସ୍ତଙ୍କ ସୁଖ-ଦୁଃଖକୁ ନିଜର ସୁଖ-ଦୁଃଖ ପରି ଅନୁଭବ କରେ, ତେବେ ତା'ଠାରେ ସମତା ଭାବ ଥିବାର ସ୍ୱୀକାର କରା ଯାଇପାରେ ।

୬. ଯାହାର ସର୍ବତ୍ର ସମଦୃଷ୍ଟି ଅଛି, ବ୍ୟବହାରରେ ନାମକୁ ମାତ୍ର ଅହଂକାର ମମତା ଥାଇ ମଧ୍ୟ ଯିଏ ସମସ୍ତଙ୍କ ଠାରେ ସମବୁଦ୍ଧି ରଖେ, ଯାହାର ସମଷ୍ଟିରୂପ ସମସ୍ତ ସଂସାରରେ ଆତ୍ମଭାବ ରହିଛି, ସେ ହିଁ ସମତାଯୁକ୍ତ ପୁରୁଷ ଓ ସେ ହିଁ ପ୍ରକୃତ ସାମ୍ୟବାଦୀ ଅଟେ ।

୭. ପ୍ରକୃତରେ ଭଗବାନଙ୍କର ସେ ହିଁ ଅନନ୍ୟ ଭକ୍ତ, ଯେ ସମସ୍ତ ସଚରାଚର ଭୂତ (ପ୍ରାଣୀ) ସମୁଦାୟକୁ ସାକ୍ଷାତ୍ ଈଶ୍ୱରଙ୍କ ସ୍ୱରୂପ ଭାବି ସମସ୍ତଙ୍କ ସହ ସମତାର ବ୍ୟବହାର କରେ ।

୮. ସମସ୍ତଙ୍କ ଠାରେ ଏକମାତ୍ର ଆତ୍ମା ସମରୂପେ ସ୍ଥିତ । ଏହି କଥାକୁ ଅନୁଭବ କରି ସମସ୍ତଙ୍କ ସଙ୍ଗେ ସେମାନଙ୍କର ଯେଉଁ ପ୍ରକାରରେ ହିତ ହେବ, ସେହି ପ୍ରକାରରେ ଯଥାଯୋଗ୍ୟ ବ୍ୟବହାର କରିବା ହିଁ ବାସ୍ତବିକ ସମତା ଅଟେ ।

୯. ସମସ୍ତଙ୍କ ସହ ଯଥାଯୋଗ୍ୟ ବ୍ୟବହାର କରି ଆତ୍ମୀୟତା ଦୃଷ୍ଟିରୁ ସମସ୍ତଙ୍କ ଠାରେ ସମଭାବାପନ୍ନ ରହିବା ଉଚିତ ।

୧୦. ଯେପରି କେହି ମଧ୍ୟ ନିଜର ଆତ୍ମାର ଜାଣି ଶୁଣି କ୍ଷତି କରେ ନାହିଁ, ତାକୁ ଦୁଃଖ ଦିଏ ନାହିଁ ଓ ନିଜର କଲ୍ୟାଣ ଚ୍ୱହେଁ ଏବଂ ସୁଖ ତଥା କଲ୍ୟାଣ ପାଇଁ ଚେଷ୍ଟା କରେ, ସେହିପରି କାହାରିକୁ ଦୁଃଖ ନ ଦେଇ, ଅହିତ ନ ଚ୍ୱହିଁ, ସମସ୍ତଙ୍କର କଲ୍ୟାଣ କାମନା କରିବା ଓ ସୁଖ ଦେବାକୁ ଚେଷ୍ଟା କରିବା ହିଁ ସମତା ଅଟେ । ବ୍ୟବହାରରେ ଯଥାଯୋଗ୍ୟ ଯେତେ ବିଷମତା ହେଲେ ମଧ୍ୟ ତାହା ବିଷମତା ନୁହେଁ ।

୧୧. ପରମ ପୂଜନୀୟା ମାତାଠାରେ ପୂଜ୍ୟଭାବ ହେଲେ ମଧ୍ୟ ରଜସ୍ୱଳା ବା ପ୍ରସବ ସ୍ଥିତିରେ ଆମେ ତାକୁ ସ୍ପର୍ଶ କରି ନ ଥାଉ, ସ୍ପର୍ଶ କଲେ ସ୍ନାନ କରିବାର ବିଧି ଅଛି । ଏପରି ବିଷମତା ବସ୍ତୁତଃ ବିଷମତା ନୁହେଁ ।

୧୨. ଶାସ୍ତ୍ରୀୟ ବିଷମତା ବ୍ୟବହାରିକ କ୍ଷେତ୍ରରେ ଦୂଷିତ ନୁହେଁ, ବରଂ ପରମାର୍ଥରେ ସହାୟକ ଅଟେ ।

୧୩. ଗୀତାର ସାମ୍ୟବାଦ ଓ ଆଜିକାଲିକାର ତଥାକଥିତ ସାମ୍ୟବାଦରେ ବହୁତ ଅନ୍ତର ଅଛି । ଆଜିକାଲିକାର ସାମ୍ୟବାଦ ଈଶ୍ୱରବିରୋଧୀ ଓ ଗୀତାର ଏହି ସାମ୍ୟବାଦ ସର୍ବତ୍ର ଈଶ୍ୱରଙ୍କୁ ଦେଖେ । ତାହା ହିଂସାମୟ, ଏହା ଅହିଂସାର ପ୍ରତିପାଦକ । ତାହା ସ୍ୱାର୍ଥମୂଳକ, ଏହା ସ୍ୱାର୍ଥକୁ ନିକଟକୁ ଆସିବାକୁ ଦିଏ ନାହିଁ । ତାହା ଖାଦ୍ୟ-ପେୟ-ସ୍ପର୍ଶାଦିରେ ଏକତା ରଖି ଆନ୍ତରିକ ଭେଦଭାବ ରଖେ, ଏହା ଖାଦ୍ୟ-ପେୟ-ସ୍ପର୍ଶାଦିରେ ଶାସ୍ତ୍ରମର୍ଯ୍ୟାଦାନୁସାରେ ଯଥାଯୋଗ୍ୟ ଭେଦ ରଖି ମଧ୍ୟ ଆନ୍ତରିକ ଭେଦ ରଖେ ନାହିଁ ଓ ସମସ୍ତଙ୍କଠାରେ ଆତ୍ମାକୁ ଅଭିନ୍ନ ଦେଖିବାପାଇଁ ଶିକ୍ଷା ଦିଏ । ସେଥିରେ ନିଜ ଦଳର ଅଭିମାନ ଅଛି ଓ ଅନ୍ୟମାନଙ୍କ ପ୍ରତି ଅନାଦର ଅଛି; ତାହାର ଲକ୍ଷ୍ୟ କେବଳ ଧନୋପାସନା ଅଟେ, ଏହାର ଲକ୍ଷ୍ୟ ଈଶ୍ୱର ପ୍ରାପ୍ତି ଅଟେ, ଏଥିରେ ସର୍ବଦା ଅଭିମାନଶୂନ୍ୟତା ଅଛି ଓ ସାରା ଦୁନିଆଁରେ ପରମାତ୍ମାଙ୍କୁ ଦେଖି ସମସ୍ତଙ୍କୁ  ସମ୍ମାନ କରିବା ଅଛି । ସେଥିରେ ବାହ୍ୟ ବ୍ୟବହାରର ପ୍ରଧାନତା ଅଛି, ଏଥିରେ ଅନ୍ତଃକରଣ ଭାବର ପ୍ରଧାନତା ଅଛି । ସେଥିରେ ଭୌତିକ ସୁଖ ମୁଖ୍ୟ, ଏଥିରେ ଆଧ୍ୟାତ୍ମିକ ସୁଖ ମୁଖ୍ୟ ଅଟେ । ସେଥିରେ ପରଧନ ଓ ପରମତରେ ଅସହିଷ୍ଣୁତା ଅଛି, ଏଥିରେ ସମସ୍ତଙ୍କ ପ୍ରତି ସମାନ ଆଦର ଅଛି । ସେଥିରେ ରାଗ-ଦ୍ୱେଷ ଅଛି, ଏଥିରେ ରାଗ-ଦ୍ୱେଷରହିତ ବ୍ୟବହାର ଅଛି ।



# ବୈରାଗ୍ୟ

୧. କଲ୍ୟାଣକାମୀ ପୁରୁଷଙ୍କ ପକ୍ଷେ ବୈରାଗ୍ୟ ସାଧନର ପରମ ଆବଶ୍ୟକତା ଅଛି । ବୈରାଗ୍ୟ ଜାତ ହେବା ବିନା ଆତ୍ମାର ଉଦ୍ଧାର କେବେ ହୋଇପାରେ ନାହିଁ ।

୨. ପ୍ରକୃତ ବୈରାଗ୍ୟ ଦ୍ୱାରା ସାଂସାରିକ ଭୋଗ୍ୟ ପଦାର୍ଥଗୁଡ଼ିକ ପ୍ରତି ନିବୃତ୍ତି ଉତ୍ପନ୍ନ ହୁଏ । ନିବୃତ୍ତିଦ୍ୱାରା ପରମେଶ୍ୱରଙ୍କ ସ୍ୱରୂପର ଯଥାର୍ଥ ଧ୍ୟାନ ହୋଇଥାଏ । ଧ୍ୟାନଦ୍ୱାରା ପରମାତ୍ମାଙ୍କ ସ୍ୱରୂପର ବାସ୍ତବିକ ଜ୍ଞାନ ହୁଏ ଓ ଜ୍ଞାନଦ୍ୱାରା ଉଦ୍ଧାର ହୋଇଥାଏ ।

୩. ବୈରାଗ୍ୟର ଲକ୍ଷଣ ମହର୍ଷି ପତଞ୍ଜଳି ଏପ୍ରକାରେ ଦର୍ଶାଇଛନ୍ତି–

**ଦୃଷ୍ଟାନୁଶ୍ରବିକବିଷୟବିତୃଷ୍ଣସ୍ୟ ବଶୀକାରସଂଜ୍ଞା ବୈରାଗ୍ୟମ୍ ।** (୧ । ୧୫)

ଅର୍ଥାତ୍ "କାଞ୍ଚନ, କାମିନୀ ଆଦି ଦୃଷ୍ଟ ବିଷୟସମୂହରେ ତଥା ଶ୍ରୁତିମାନଙ୍କରେ କୁହାଯାଇଥିବା ସ୍ୱର୍ଗାଦି ଅଦୃଷ୍ଟ ବିଷୟସମୂହରେ ତୃଷ୍ଣାରହିତ ଓ ବଶରେ ଥିବା ଚିତ୍ତର ଆସକ୍ତିରହିତ ସ୍ଥିତିର ନାମ 'ବୈରାଗ୍ୟ' ଅଟେ ।"

୪. ସଂସାରର ପଦାର୍ଥଗୁଡ଼ିକରେ ଆସକ୍ତି ନ ହେବାର ନାମ ବୈରାଗ୍ୟ । ସଂସାରର କୌଣସି ଭୋଗରେ ଆସକ୍ତି ନ ରହୁ, ପ୍ରୀତି ନ ରହୁ, ଆକର୍ଷଣ ନ ରହୁ—ଏପରିକି ବ୍ରହ୍ମଲୋକର ସଂପୂର୍ଣ୍ଣ ଭୋଗ ମଧ୍ୟ କାକବିଷ୍ଠାପରି ପ୍ରତୀତ ହେଉ, ଏହା ହିଁ ବୈରାଗ୍ୟ ।

୫. ଧ୍ୟାନ କରିବାର ଶହ-ଶହ ଉପାୟଗୁଡ଼ିକର ଗୋଟିଏ ମୂଳ ଉପାୟ ହେଲା ବୈରାଗ୍ୟ । ବୈରାଗ୍ୟ ଆସିଯିବାପରେ ତେଣିକି ଅନ୍ୟ ଉପାୟ ତ ଆପେ-ଆପେ ଉତ୍ପନ୍ନ ହେବାରେ ଲାଗନ୍ତି ।

୬. ଭୟରୁ ହେଉଥିବା ବୈରାଗ୍ୟଃ—ସଂସାରର ଭୋଗ ଭୋଗିବାଦ୍ୱାରା ପରିଣାମରେ ନରକ ପ୍ରାପ୍ତି ହେବ, କାରଣ ଭୋଗରେ ସଂଗ୍ରହର ଆବଶ୍ୟକତା ଅଛି, ସଂଗ୍ରହ ପାଇଁ କର୍ମାରମ୍ଭ ଆବଶ୍ୟକ, ଆରମ୍ଭରେ ପାପ ହୁଏ, ପାପର ଫଳ ନରକ ବା ଦୁଃଖ ଅଟେ । ଏହିପରି ଭୋଗର ସାଧନସମୂହରେ ପାପ ଓ ପାପର ପରିଣାମ ଦୁଃଖ ବୁଝି ତା' ଭୟରେ ବିଷୟସମୂହରୁ ଦୂରେଇ ରହିବା ହିଁ ଭୟରୁ ଉତ୍ପନ୍ନ ବୈରାଗ୍ୟ ଅଟେ ।

୭. ବିଚାରରୁ ହେଉଥିବା ବୈରାଗ୍ୟଃ—ଯେଉଁ ପଦାର୍ଥଗୁଡ଼ିକୁ ଭୋଗ୍ୟ ମାନି ସେଗୁଡ଼ିକର ସଙ୍ଗଦ୍ୱାରା ଆନନ୍ଦର ଭାବନା କରାଯାଏ, ଯେଉଁଗୁଡ଼ିକର ପ୍ରାପ୍ତିରେ ସୁଖର ପ୍ରତୀତି ହୁଏ, ସେଗୁଡ଼ିକ ପ୍ରକୃତରେ ଭୋଗ୍ୟ ନୁହେଁ, କି ସୁଖର ସାଧନ ନୁହେଁ। ସେଗୁଡ଼ିକରେ ସୁଖ ମଧ୍ୟ ନାହିଁ। ଦୁଃଖପୂର୍ଣ୍ଣ ପଦାର୍ଥଗୁଡ଼ିକରେ ବା ଦୁଃଖରେ ହିଁ ଅବିଚାରବଶତଃ ସୁଖର କଳ୍ପନା କରି ନିଆ ଯାଇଛି । ଏଣୁ ତାହା ସୁଖ ପରି ଜଣାଯାଉଛି, ପ୍ରକୃତରେ ଏଗୁଡ଼ିକ ତ ଦୁଃଖ ବା ଦୁଃଖର କାରଣ ଅଟନ୍ତି । ଭଗବାନ ଗୀତା (୫ । ୨୨) ରେ କହିଛନ୍ତି—

**ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ ।**
**ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ ॥**

ଯାହା ଏହି ଇନ୍ଦ୍ରିୟ ତଥା ବିଷୟ ସମୂହର ସଂଯୋଗରୁ ଉତ୍ପନ୍ନ ହୁଏ, ସେ

ସବୁ ଭୋଗ ପଦବାଚ୍ୟ। ସେଗୁଡ଼ିକ ଯଦ୍ୟପି ବିଷୟୀ ପୁରୁଷଙ୍କୁ ସୁଖ ବୋଲି ଜଣା ଯାଆନ୍ତି, ତଥାପି ଦୁଃଖର ହିଁ କାରଣ ଅଟନ୍ତି ଏବଂ ଆଦି-ଅନ୍ତଯୁକ୍ତ ଅର୍ଥାତ୍ ଅନିତ୍ୟ ଅଟନ୍ତି। ଏଣୁ ହେ ଅର୍ଜୁନ! ବୁଦ୍ଧିମାନ୍ ବିବେକୀ ପୁରୁଷ ସେଥିରେ ଅନୁରକ୍ତ ହୁଅନ୍ତି ନାହିଁ।

—ଏହିପରି ବିବେକଦ୍ୱାରା ଉତ୍ପନ୍ନ ବୈରାଗ୍ୟ ବିଗ୍ରହରୁ ଉତ୍ପନ୍ନ ହେଉଥିବା ବୈରାଗ୍ୟ ଅଟେ।

୮. ସାଧନାଦ୍ୱାରା ହେଉଥିବା ବୈରାଗ୍ୟ:—ଯେତେବେଳେ ମନୁଷ୍ୟ ସାଧନା କରୁଥିବା ଅବସ୍ଥାରେ ପ୍ରେମରେ ବିହ୍ୱଳ ହୋଇ ଭଗବାନଙ୍କ ତତ୍ତ୍ୱର ଅନୁଭବ କରିବାରେ ଲାଗେ, ସେତେବେଳେ ତା'ମନରେ ଭୋଗସମୂହ ପ୍ରତି ସ୍ୱତଃ ବୈରାଗ୍ୟ ଉତ୍ପନ୍ନ ହୋଇଥାଏ। ସେ ସମୟରେ ତାକୁ ସଂସାରର ସମସ୍ତ ଭୋଗ୍ୟ ପଦାର୍ଥ ପ୍ରତ୍ୟକ୍ଷ ଦୁଃଖରୂପେ ପ୍ରତୀତ ହେବାରେ ଲାଗନ୍ତି। ସବୁ ବିଷୟ ଭଗବତ୍-ପ୍ରାପ୍ତିରେ ସ୍ପଷ୍ଟ ବାଧକ ଦେଖାଯାଆନ୍ତି।

୯. ପରମାତ୍ମତତ୍ତ୍ୱ ଜ୍ଞାନରୁ ହେଉଥିବା ବୈରାଗ୍ୟ:—ଯେତେବେଳେ ସାଧକକୁ ପରମାତ୍ମତତ୍ତ୍ୱର ଉପଲବ୍ଧି ହୋଇଯାଏ, ସେତେବେଳେ ସଂସାରର ସଂପୂର୍ଣ୍ଣ ପଦାର୍ଥ ତାକୁ ସ୍ୱତଃ ରସହୀନ ଓ ମାୟାମାତ୍ର ପ୍ରତୀତ ହେବାରେ ଲାଗନ୍ତି। ପୁଣି ତାକୁ ଭଗବତ୍‌ତତ୍ତ୍ୱ ଅତିରିକ୍ତ ଅନ୍ୟ କୌଣସିଥିରେ କିଛି ମଧ୍ୟ ସାର ଜଣାଯାଏ ନାହିଁ। ଯେପରି ମୃଗତୃଷ୍ଣାଜଳକୁ ମରୀଚିକା ଜାଣିଯିବା ପରେ ସେଥିରେ ଜଳ ଦେଖାଯାଏ ନାହିଁ, ଯେପରି ନିଦରୁ ଉଠିବା ପରେ ସ୍ୱପ୍ନକୁ ସ୍ୱପ୍ନ ବୁଝି ସ୍ୱପ୍ନର ସଂସାରକୁ ଚିନ୍ତନ କଲେ ମଧ୍ୟ ସେଥିରେ ସତ୍ତା ପ୍ରତୀତି ହୁଏ ନାହିଁ, ସେହିପରି ତତ୍ତ୍ୱଜ୍ଞାନୀ ପୁରୁଷକୁ ଜଗତ୍‌ର ପଦାର୍ଥ ମଧ୍ୟରେ ସାର ଓ ସତ୍ତାର ପ୍ରତୀତି ହୁଏ ନାହିଁ। ଯେପରି ଚତୁର ଯାଦୁକରଦ୍ୱାରା ନିର୍ମିତ ରମ୍ୟ ବଗିଚ୍ଛରେ ଅନ୍ୟ ସମସ୍ତେ ମୋହିତ ହୁଅନ୍ତି, କିନ୍ତୁ ତା' ତତ୍ତ୍ୱ ଜାଣିଥିବା ବାଜାବାଲା ତାକୁ ମାୟାମୟ ଓ ଅସାର ବୁଝି ମୋହିତ ହୁଏ ନାହିଁ, ନିଜ ମାୟାପତି ମାଲିକର ଲୀଳା ଦେଖି ଦେଖି ଆହ୍ଲାଦିତ ଅବଶ୍ୟ ହୁଏ, ଠିକ୍ ସେହିପରି ଏହି ଶ୍ରେଣୀର ବୈରାଗୀ ପୁରୁଷ ବିଷୟ-ଭୋଗସମୂହରେ ମୋହିତ ହୁଏ ନାହିଁ।

୧୦. ବାରମ୍ବାର ବୈରାଗ୍ୟ ଭାବନା କଲେ, ତ୍ୟାଗର ମହତ୍ତ୍ୱ ମନନ

କଲେ, ଜଗତ୍‌ର ଯଥାର୍ଥ ସ୍ଥିତି ଉପରେ ବିଚାର କଲେ, ମୃତ ବ୍ୟକ୍ତି, ଶୂନ୍ୟ ମହଲ, ଭଙ୍ଗାଘର ଓ ଶ୍ମଶାନଗୁଡ଼ିକୁ ଦେଖିଲେ, ଶୁଣିଲେ, ପ୍ରାଚୀନ ନରପତିମାନଙ୍କର ଅନ୍ତିମ ଗତି ଉପରେ ଧ୍ୟାନ ଦେଲେ ଓ ଅନାସକ୍ତ ବିଚାରଶୀଳ ପୁରୁଷଙ୍କ ସଂସର୍ଗ କଲେ, ହୃଦୟରେ ଆପେ-ଆପେ ଅନେକ ପ୍ରଶ୍ନ ଉଠେ, ଯେଉଁଗୁଡ଼ିକଦ୍ୱାରା ବିଷୟସମୂହ ପ୍ରତି ବୈରାଗ୍ୟ ଉତ୍ପନ୍ନ ହୁଏ।

୧୧. ପରମାତ୍ମାଙ୍କ ନାମ-ଜପ ଓ ତାଙ୍କ ସ୍ୱରୂପର ନିରନ୍ତର ସ୍ମରଣ କରି ଚାଲିଲେ ହୃଦୟର ମଳି ଯେତେ ଯେତେ ଦୂର ହୁଏ, ସେତେ ସେତେ ଉଜ୍ଜ୍ୱଳତା ଆସେ। ଏପରି ଉଜ୍ଜ୍ୱଳ ଓ ଶୁଦ୍ଧ ଅନ୍ତଃକରଣରେ ବୈରାଗ୍ୟର ଲହରୀ ସମୂହ ଉଠନ୍ତି, ଯାହାଦ୍ୱାରା ବିଷୟାନୁରାଗ ମନରୁ ଆପେ ଆପେ ଦୂରେଇ ଯାଏ।

୧୨. ଯେପରି ମଇଳା ଦର୍ପଣକୁ ତୁଳାରେ ଘଷିଲେ ଯେତେ ଯେତେ ମଳି ଦୂର ହୁଏ, ସେତେ ସେତେ ତାହା ଉଜ୍ଜ୍ୱଳ ବା ସ୍ୱଚ୍ଛ ଦେଖାଯାଏ ଓ ସେଥିରେ ମୁଖର ପ୍ରତିବିମ୍ବ ସ୍ପଷ୍ଟ ଦେଖାଯାଏ, ସେହିପରି ପରମାତ୍ମାଙ୍କ ଭଜନ-ଧ୍ୟାନରୂପୀ ତୁଳାକୁ ନିରନ୍ତର ଘଷିବାଦ୍ୱାରା ଅନ୍ତଃକରଣରୂପୀ ଦର୍ପଣର ମଳି ଦୂର ହେଲେ ତାହା ସ୍ୱଚ୍ଛ ହେବାକୁ ଲାଗେ ଏବଂ ସେଥିରେ ସୁଖସ୍ୱରୂପ ଆତ୍ମାର ପ୍ରତିବିମ୍ବ ଦେଖାଯାଏ। ଏପରି ସ୍ଥିତିରେ ଟିକିଏ ବି ବାକି ରହିଥିବା ବିଷୟ-ମଳି ଦାଗ ସାଧକ ହୃଦୟରେ ଶୂଳପରି ଯନ୍ତ୍ରଣାଦାୟକ ହୋଇଥାଏ।

୧୩. ସାଧକମାନେ ପ୍ରଥମେ ସଂସାରର ବିଷୟସମୂହକୁ ପରିଣାମରେ ହାନିକାରକ ମାନି ଭୟ ବା ଦୁଃଖ ବୋଲି ବୁଝି ଘୃଣାରେ ହିଁ ସେଗୁଡ଼ିକୁ ତ୍ୟାଗ କରିବା ଆବଶ୍ୟକ।

୧୪. ନାନାପ୍ରକାରର ଭୋଗସମୂହର ଇଚ୍ଛା ବିଷୟସମୂହର ଉପଭୋଗରେ କେବେ ଶାନ୍ତ ହୁଏ ନାହିଁ, ବରଂ ଘୃତ ଆହୁତି ପାଉଥିବା ଅଗ୍ନି ସମାନ ଅଧିକରୁ ଅଧିକ ବଢ଼ିଥାଏ।

୧୫. ପତଙ୍ଗକୁ ପ୍ରଜ୍ୱଳିତ ପ୍ରଦୀପ ଆଦିରେ ସୁଖ ଓ ଶାନ୍ତି ପ୍ରତୀତ ହୁଏ, କିନ୍ତୁ ବାସ୍ତବରେ ସେହି ଦୀପ ତାର ବିନାଶକାରୀ ଅଟେ। ଏହିପରି ସଂସାରର ବିଷୟ-ଭୋଗସମୂହରେ ମନୁଷ୍ୟକୁ ମୋହବଶତଃ କ୍ଷଣିକ ଶାନ୍ତି ଓ ସୁଖ ପ୍ରତୀତ ହୁଏ, କିନ୍ତୁ ବାସ୍ତବରେ ବିଷୟସମୂହର ସଂସର୍ଗ ତାହାର ନାଶକ ଅର୍ଥାତ୍ ପତନକାରୀ ଅଟେ। ଏଥିପାଇଁ ବିବେକ, ବିଚାର, ଭୟ ବା ଜିଦ୍‌ରେ କୌଣସି ପ୍ରକାରେ

ହେଉ ମନ-ଇନ୍ଦ୍ରିୟଙ୍କୁ ବିଷୟ ସମୂହରୁ ଦୂରେଇ ବଶୀଭୂତ କରିବା ପାଇଁ କଟିବଦ୍ଧ ହୋଇ ଆପ୍ରାଣ ଉଦ୍ୟମ କରିବା ଉଚିତ।

୧୬. ପୁତ୍ର, ପରିବାର, ଧନ, ଗୃହ, ମାନ, ବଡ଼ିମା, କୀର୍ତ୍ତି, କାନ୍ତି ଆଦି ସମସ୍ତ ପଦାର୍ଥମାନଙ୍କରେ ନିରନ୍ତର ଦୁଃଖ ଓ ଦୋଷ ଦେଖି ସେଗୁଡ଼ିକରୁ ମନକୁ ଦୂରେଇ ନେବା ଉଚିତ।

୧୭. ଯାଦୁ କାଛୁ କୁଣ୍ଡାଇବା ସମୟରେ ବହୁତ ସୁଖଦାୟକ ଜଣାଯାଏ, କିନ୍ତୁ ପରିଣାମରେ ଜ୍ୱାଳା ହେଲେ ତାହା ହିଁ ମହାନ୍ ଦୁଃଖଦାୟକ ହୋଇଯାଏ। ଏହା ହିଁ ବିଷୟସୁଖର ପରିଣାମ ଅଟେ।

୧୮. ଯେତେବେଳେ ମନୁଷ୍ୟ ନିଜ ଠାରୁ ଅନ୍ୟଙ୍କୁ କୌଣସି ବିଷୟରେ ଅଧିକ ଆଗୁଆ ଦେଖେ, ତେବେ ନିଜର ସାମାନ୍ୟ ସୁଖ କାରଣରୁ ତାହା ହୃଦୟରେ ବଡ଼ ଜ୍ୱାଳା ହୁଏ।

୧୯. ବିଷୟସମୂହର ପ୍ରାପ୍ତି, ସେଗୁଡ଼ିକର ସଂରକ୍ଷଣ ଓ ବିନାଶରେ ସବୁବେଳେ ଜ୍ୱାଳା ହିଁ ଲାଗି ରହିଥାଏ।

୨୦. ଏପରି କୌଣସି ବିଷୟ ସୁଖ ନାହିଁ, ଯାହା ସନ୍ତାପଦାୟକ ହୋଇ ନ ଥିବ।

୨୧. ଯାହା ମନରେ ବିଷୟ ଭୋଗଗୁଡ଼ିକର ବହୁଳତାରେ ସମସ୍ତ ସୁଖଗୁଡ଼ିକର ଛାପ ପଡ଼ିଥାଏ, ତାକୁ ହିଁ ସେଗୁଡ଼ିକର ଅଭାବର ଆଭାସ ହୋଇଥାଏ। ଅଭାବର ଆଭାସରେ ଦୁଃଖ ପୂରି ରହିଥାଏ।

୨୨. ସଂସାରର ସମସ୍ତ ବିଷୟସୁଖ ସବୁ ଅବସ୍ଥାରେ ଦୁଃଖମିଶ୍ରିତ ଅଟନ୍ତି।

୨୩. ସଂସାରର ସମସ୍ତ ସୁଖ ଦୁଃଖରୂପ ଅଟନ୍ତି, ଅତଏବ ଏଗୁଡ଼ିକରୁ ମନକୁ ଦୂରେଇ ନେବାକୁ ପୂର୍ଣ୍ଣମାତ୍ରାରେ ଚେଷ୍ଟା କରିବା ଉଚିତ।

୨୪. ସବୁ ପ୍ରକାରର ବିଷୟସମୂହକୁ ବିଷସଦୃଶ ତ୍ୟାଗ କରିବା ଉଚିତ। ବିଷ ମିଶ୍ରିତ ମଧୁର ପଦାର୍ଥ ମଧ୍ୟ ସେବନ କରିବାର ଯୋଗ୍ୟ ହୁଏ ନାହିଁ, ଠିକ୍ ଏହିପରି ବିଷୟ ସୁଖ ଭଳି ଜଣା ପଡ଼ିଲେ ବି ତ୍ୟାଗର ଯୋଗ୍ୟ ଅଟେ।

୨୫. ଭୋଗ-ଲାଳସା ବଢ଼ି ବୁଦ୍ଧିକୁ ଅସ୍ଥିର କରି ଦିଏ। ବହୁ ଶାଖାଯୁକ୍ତ ବୁଦ୍ଧିଦ୍ୱାରା ଆତ୍ମତତ୍ତ୍ୱର ଉପଲବ୍ଧି ହୁଏ ନାହିଁ ଓ ତାହା ନ ହେଲେ ଦୁଃଖସମୂହରୁ ସବୁଦିନ ପାଇଁ ମୁକ୍ତି ମିଳେ ନାହିଁ।

୨୬. ସାଧାରଣ ଭୋଗଜନିତ ମିଥ୍ୟା ସୁଖସମୂହର କଥା ସାଧକ ଆଦୌ ପଗ୍ରେ ନାହିଁ। ବରଂ ଭୋଗ-ବିଳାସ ସେହି ସାଧକକୁ ନାଶବାନ୍, କ୍ଷଣିକ ଓ ପ୍ରତ୍ୟକ୍ଷ ଦୁଃଖରୂପ ପ୍ରତୀତ ହୁଅନ୍ତି।

୨୭. ସଂସାରର ସମସ୍ତ ବିଷୟଜନ୍ୟ ସୁଖ ପରିଣାମ, ତାପ, ସଂସ୍କାର ଓ ସାଂସାରିକ ଦୁଃଖଗୁଡ଼ିକ ସହ ମିଶ୍ରିତ ହୋଇଥିବାରୁ ତଥା ସାତ୍ତ୍ୱିକ, ରାଜସ ଓ ତାମସ ଗୁଣଗୁଡ଼ିକର ବୃତ୍ତିସମୂହର ପରସ୍ପର ବିରୋଧୀ ହେବା କାରଣରୁ ବିବେକୀ ପୁରୁଷଙ୍କ ପାଇଁ ଦୁଃଖମୟ ହିଁ ଅଟେ।

୨୮. ବିଷୟସମୂହର ଚିନ୍ତନରୁ ହିଁ ସମସ୍ତ ଅନର୍ଥର ଉପତ୍ତି ହୋଇଥାଏ।

୨୯. ଚିତ୍ତ-ବୃତ୍ତିଗୁଡ଼ିକୁ ବିଷୟସମୂହଠାରୁ ସବୁବେଳେ ଦୂରେଇ ରଖିବା ଉଚିତ। ସଂସାରରେ ଯେତେ ଭୋଗ ଅଛି, ସେଗୁଡ଼ିକରେ ଦୁଃଖ ଓ ଦୋଷ ଦର୍ଶନ କର। ଯଦ୍ୟପି ମୋହ ଓ ଆସକ୍ତି କାରଣରୁ ବିଷୟ ଅମୃତ ସମାନ ସୁଖକାରୀ ଲାଗନ୍ତି, କିନ୍ତୁ ପରିଣାମରେ ବିଷ ସମାନ ଘାତକ ଅଟନ୍ତି, ପ୍ରାଣ-ହରଣକାରୀ ଅଟନ୍ତି, ଇହଲୋକ-ପରଲୋକର ବିଘ୍ନକାରୀ ଅଟନ୍ତି।

୩୦. ବିଷୟସମୂହରେ ଯେ ବିଚରଣ କରେ, ତାକୁ ଏଇଥିପାଇଁ ମୂର୍ଖ କୁହାଯାଏ ଯେ ତାହାର ସମୟ ଓ ଧନ ବ୍ୟର୍ଥ ଯାଏ, ଜୀବନ ପାପମୟ ହୁଏ ଓ ପାପ କାରଣରୁ ତାକୁ ଦୁଃଖ ଭୋଗ କରିବାକୁ ପଡ଼େ।

୩୧. ବିଷୟସମୂହର ଭୋକ୍ତା ସଂସାରରେ ବାରମ୍ବାର ଜନ୍ମ ପାଏ, ମରେ ଓ ନାନା ପ୍ରକାରର ଦୁଃଖରେ ସଢ଼େ। ବିଷୟସମୂହର ଭୋଗ ବିଷ-ଭକ୍ଷଣଠାରୁ ମଧ୍ୟ ଅଧିକ ଖରାପ ଅଟେ।

୩୨. ସାରା ବିଷୟ ଅତ୍ୟନ୍ତ ଅପବିତ୍ର ଅଟନ୍ତି, ଘୃଣାର ଯୋଗ୍ୟ ଅଟନ୍ତି ଓ ସେଗୁଡ଼ିକରେ ପ୍ରବୃତ୍ତ ହେବା ପାପ ଅଟେ।

୩୩. ବିଷୟ ଅନିତ୍ୟ, ଅସ୍ଥାୟୀ, ଅସୁଖ, ବିଷରୂପ ଓ ତାହା ନରକରେ ପକାଇଦିଏ।

୩୪. ବିଷୟସମୂହ ପ୍ରତି ଆମର ଯେଉଁ ଆସକ୍ତିଦୃଷ୍ଟି ଅଛି ଓ ବୈରାଗ୍ୟ ପ୍ରତି ଆମର ଯେଉଁ ବିରକ୍ତି ଅଛି, ଏହାରି କାରଣରୁ ସମସ୍ତ ବ୍ୟବସ୍ଥା ଓଲଟି ଯାଇଛି, ବିଷୟସମୂହରେ ଆମକୁ ସୁଖର ଓ ବୈରାଗ୍ୟରେ ଦୁଃଖର ଆଭାସ ହେଉଛି।

୩୫. ବିଷୟସମୂହର ଭୋଗମାତ୍ରକେ ହିଁ ଶରୀର ଓ ସମସ୍ତ ଇନ୍ଦ୍ରିୟ କ୍ଷୀଣ ହୋଇଯାଆନ୍ତି ଓ ଅନ୍ତଃକରଣ ଦୂଷିତ, ଦୁର୍ବଳ ଓ ଚଞ୍ଚଳ ହୋଇଯାଏ, ପୂର୍ବକୃତ ପୁଣ୍ୟ ସମୂହର କ୍ଷୟ ଓ ପାପ ସମୂହର ବୃଦ୍ଧି ହୋଇଥାଏ।

୩୬. ସର୍ବଶକ୍ତିମାନ୍ ବିଜ୍ଞାନ-ଆନନ୍ଦଘନ ପରମାତ୍ମା ହିଁ ନିତ୍ୟ। ଅତଏବ ସେହି ପରମାତ୍ମାଙ୍କ ସମ୍ବନ୍ଧରୁ ହେଉଥିବା ସୁଖ ହିଁ ସତ୍ୟ ଓ ନିତ୍ୟ ସୁଖ ଅଟେ। ଯେତେ ସାଂସାରିକ ପଦାର୍ଥ ଅଛି, ସେଗୁଡ଼ିକ କ୍ଷଣଭଙ୍ଗୁର ଓ ଅନିତ୍ୟ ହେବା କାରଣରୁ ସେଗୁଡ଼ିକରେ ପ୍ରତୀତ ହେଉଥିବା ସୁଖ କ୍ଷଣିକ ଓ ଅନିତ୍ୟ ଅଟେ।

୩୭. ଯେପରି ଦୀପର ଶିଖା ଦେଖିବାକୁ ଏକ ହେଲେ ମଧ୍ୟ ପ୍ରତିକ୍ଷଣ ବଦଳୁ ଥାଏ ଅଥବା ନଦୀର ଜଳ ଏକା ଦେଖା ଯାଉଥିଲେ ମଧ୍ୟ ପ୍ରତିକ୍ଷଣ ବଦଳୁ ଥାଏ, ସେହିପରି ସଂସାରର ପ୍ରତ୍ୟେକ ପଦାର୍ଥର ପ୍ରତିକ୍ଷଣ ରୂପାନ୍ତର ହୋଇ ଚାଲିଛି।

୩୮. ଯାହାଙ୍କ ପାଖରେ ଯେତେ ଅଧିକ ବିଷୟ-ଭୋଗର ସାମଗ୍ରୀ ଅଛି, ସେ ସେତେ ଅଧିକ ଦୁଃଖୀ ଦେଖାଯାଏ। ଏହା ତ ସ୍ୱାଭାବିକ କଥା। ଯେଉଁ ବସ୍ତୁ ନିଜେ ଅନିତ୍ୟ, ତାହା ଆମକୁ ନିତ୍ୟ ସୁଖ କିପରି ଦେଇ ପାରିବ?

୩୯. ବାରମ୍ବାର ଦୁଃଖ ପାଇଲେ ମଧ୍ୟ ଆମେ ବିଷୟସମୂହରୁ ସୁଖ ପାଇବାର ଆଶାକୁ ଛାଡୁ ନାହୁଁ ଓ ବାରମ୍ବାର ସେଗୁଡ଼ିକୁ ଧରି ରଖୁଛୁ। ଏହା ହିଁ ତ ମୋହର ମହିମା ଅଟେ।

୪୦. ମଦିରା ପାନ କରି ମନୁଷ୍ୟ ଯେପରି ପ୍ରମତ୍ତ ହୋଇଯାଏ ଓ ତା'ର ପୂର୍ବାପର ଜ୍ଞାନ ରହେ ନାହିଁ, ସେହିପରି ଆମ୍ଭେମାନେ ମଧ୍ୟ ମୋହରୂପୀ ମଦିରାକୁ ପାନ କରି ବିବେକଶୂନ୍ୟ ହୋଇ ଯାଇଛୁ ଓ ଭୋଗ୍ୟବସ୍ତୁଗୁଡ଼ିକର ପଛରେ ପାଗଳ ହୋଇ ବ୍ୟର୍ଥ ଭ୍ରମଣ କରୁଛୁ– **"ପୀତ୍ୱା ମୋହମୟୀଂ ପ୍ରମାଦମଦିରାମୁନ୍ମତ୍ତଭୂତଂ ଜଗତ୍ ।"**

୪୧. ଭୋଗସୁଖ ଧୀରେ ଧୀରେ ପ୍ରଭାବ ବିସ୍ତାରକାରୀ ଭୟାନକ ମିଠା ବିଷ ଅଟେ।

୪୨. ସଂସାରରେ ଯେତେ ପଦାର୍ଥ ରହିଛି, ସେଗୁଡ଼ିକ ବିଷତୁଲ୍ୟ। ଏକଥା ବୁଝୁଥିବା ଲୋକ ଏଗୁଡ଼ିକୁ ସେବନ କରି ପାରେ ନାହିଁ।

୪୩. ବିଗ୍ୱରରୁ ବିବେକ ଉତ୍ପନ୍ନ ହେବ ଏବଂ ତା'ପରେ ବିବେକରୁ ହିଁ

ବୈରାଗ୍ୟର ଶୁଭୋଦୟ ହେବ । ଏହି ବୈରାଗ୍ୟଶସ୍ତ୍ରଦ୍ୱାରା ବିଷୟରୂପୀ ସଂସାର ବୃକ୍ଷକୁ କାଟିବା ଆଖୁକୁ କାଟିବା ସମାନ ସୁଗମ ହୋଇଯାଏ ।

୪୪. ଆମେ ଯଦି ଶାସ୍ତ୍ର, ଭଗବାନ ବା ସନ୍ଥ ପୁରୁଷଙ୍କ ବାଣୀ ଉପରେ ବିଶ୍ୱାସ କରିବା, ତା'ହେଲେ ଏହି ଭୋଗସମୂହରେ କେବେ ମନକୁ ସଂଲଗ୍ନ କରାଇବା ନାହିଁ ।

୪୫. ବୈରାଗ୍ୟ ଅଭ୍ୟାସ କରିବା ଉଚିତ ଓ ଜୀବନକୁ କଠୋର ସଂଯମ ସହ ବିତାଇବା ଉଚିତ ।

୪୬. ବିଷୟ-ସୁଖସମୂହକୁ ତ୍ୟାଗ କଲେ ଯେଉଁ ବାସ୍ତବିକ ଏବଂ ସ୍ଥାୟୀ ସୁଖ ମିଳେ, ଯାହା କେବେ ନାଶ ହୁଏ ନାହିଁ ଓ ମୃତ୍ୟୁପରେ ବି ରହିଥାଏ, ସେହି ସୁଖକୁ ପ୍ରାପ୍ତ କରିବାପାଇଁ ଆମକୁ ପ୍ରାଣପଣେ ଚେଷ୍ଟା କରିବା ଉଚିତ । ଏହି ସୁଖକୁ ପ୍ରାପ୍ତ କରିବା ହିଁ ମନୁଷ୍ୟ-ଜୀବନର ଲକ୍ଷ୍ୟ ଅଟେ । ଏହା ହିଁ ପରମ ପୁରୁଷାର୍ଥ ଅଟେ ।

୪୭. ଯେପର୍ଯ୍ୟନ୍ତ ଆମେ ପରମାତ୍ମାରୂପ ନିତ୍ୟ ଏବଂ ନିରତିଶୟ ସୁଖ ପ୍ରାପ୍ତି କରି ନ ପାରିବା, ସେପର୍ଯ୍ୟନ୍ତ ଏହି ସୁଖର ସନ୍ଧାନ ଆମର ଲାଗି ରହିଥିବ, ଆମର ତୃପ୍ତି କେବେ ହେବ ନାହିଁ ।

୪୮. ବର୍ତ୍ତମାନ ସୁଦ୍ଧା ଆମର କେତେ ଜନ୍ମ ହୋଇ ସାରିଲାଣି, ଆମେ କେତେ ଥର ସ୍ୱର୍ଗସୁଖ ଭୋଗିଛୁ, କେତେ ଥର ଆମେ ଇନ୍ଦ୍ର ହୋଇସାରିଛୁ, କେତେ ଥର ଆମେ ଚକ୍ରବର୍ତ୍ତୀ ସମ୍ରାଟ ହୋଇସାରିଛୁ, କେତେ ଥର ଆମେ ସ୍ତ୍ରୀ-ସୁଖ, ସନ୍ତାନ ସୁଖ ଓ ଜିହ୍ୱା ଆଦି ଇନ୍ଦ୍ରିୟଙ୍କ ସୁଖ ଭୋଗିଛୁ, କିଏ କହି ପାରିବ! ତଥାପି ଏ ସମସ୍ତଦ୍ୱାରା ଆମର ତୃପ୍ତି ହୋଇ ନାହିଁ ।

୪୯. ଅନନ୍ତ ସୁଖର ସନ୍ଧାନ ହିଁ ଜୀବର ଧର୍ମ ଅଟେ । ଯେପର୍ଯ୍ୟନ୍ତ ଏହି ସୁଖ ତାକୁ ପ୍ରାପ୍ତ ହୋଇ ନ ଯିବ, ସେପର୍ଯ୍ୟନ୍ତ ତାକୁ ସ୍ଥିରତା ବା ଶାନ୍ତି ମିଳିବ ନାହିଁ କି ତାର ବ୍ୟର୍ଥ ଘୂରି ବୁଲିବା ବନ୍ଦ ହେବ ନାହିଁ କି ତାକୁ ବିଶ୍ରାମ ମିଳିବ ନାହିଁ ।

୫୦. ଯେଉଁ ସୁଖ ଅଟଳ, ନିତ୍ୟ, ଅବିନାଶୀ, ତାହା ହିଁ ବାସ୍ତବିକ ସୁଖ ଅଟେ । ଯେଉଁ ସୁଖ କ୍ଷଣିକ, ଗୋଟିଏ କ୍ଷଣରେ ଉପନ୍ନ ହେଉଛି ତ ଅନ୍ୟ କ୍ଷଣରେ ବିନାଶ ହେଉଛି, ସେ ସୁଖ ସୁଖ ନୁହେଁ । ତାହା ମିଥ୍ୟା ସୁଖ ବା ସୁଖର ଭ୍ରାନ୍ତି ଅଟେ ।

୫୧. ଯେଉଁପରି ଜୁଳୁଜୁଳିଆ ପୋକର ଜ୍ୟୋତି କ୍ଷଣକ ପାଇଁ ନିଜର ଛଟା ଦେଖାଇ ଶୀଘ୍ର ବିଲୀନ ହୋଇଯାଏ, ସେହିପରି ବିଷୟ ସୁଖ କେବଳ ଭୋଗ କାଳରେ ସୁଖଦାୟୀ ପ୍ରତୀତ ହୁଏ; ଭୋଗର ପୂର୍ବକାଳରେ ଆମେ ସେଗୁଡ଼ିକର କାମନାଦ୍ୱାରା ସଂତାପିତ ହେଉ ଓ ପରିଣାମରେ ମଧ୍ୟ ତାହା ଦୁଃଖଦାୟୀ ହୁଏ।

୫୨. ଭୋଗକାଳରେ ମଧ୍ୟ ଆମକୁ ବିଷୟସମୂହରେ ସୁଖର ଆଭାସ ମାତ୍ର ହୁଏ, ପ୍ରକୃତରେ ସେଗୁଡ଼ିକରେ ସୁଖ ନାହିଁ। ଯଦି ସୁଖ ଥାଆନ୍ତା, ତା'ହେଲେ ସବୁବେଳେ ରହନ୍ତା, ତା'ର ବିନାଶ ହୁଅନ୍ତା ନାହିଁ।

୫୩. ଯେଉଁ ଲୋକେ ସୁଖର ଆଶାରେ ବିଷୟସମୂହ ପଛରେ ବ୍ୟର୍ଥରେ ଘୂରି ବୁଲୁଥାଆନ୍ତି, ସେମାନଙ୍କ ଅବସ୍ଥା ମଣି ପାଇବା ଆଶାରେ ସରୋବରରେ ତାହାର ପ୍ରତିବିମ୍ବକୁ ଧରିବା ପାଇଁ ବ୍ୟର୍ଥ ପ୍ରୟାସ କରୁଥିବା ମୂଢ଼ ମନୁଷ୍ୟ ପରି।

୫୪. ଯେତେ ବି ବିଷୟ ସୁଖ ଅଛି, ସେସବୁ କ୍ଷଣିକ ହେବା ସହିତ ହିଁ ବିଷଯୁକ୍ତ ମଧୁ ପରି ଦୁଃଖମୟ। ଭୋଗକାଳରେ ସୁଖରୂପେ ପ୍ରତୀତ ହେଲେ ବି ପରିଣାମରେ ଦୁଃଖରୂପ ହିଁ ଅଟନ୍ତି।

୫୫. ଯେଉଁ ସୁଖ ଇନ୍ଦ୍ରକୁ ଅମରାବତୀରେ ଇନ୍ଦ୍ରାଣୀ ସହ ରହିବାରେ ମିଳେ, ସେହି ସୁଖ ଗୋଟିଏ କୁକୁରକୁ କୁକୁରୀ ସହ ସହବାସରୁ ପ୍ରାପ୍ତ ହୋଇଥାଏ। ଯେଉଁ ସ୍ୱାଦ ଆମକୁ ଷଡ଼ରସ ଭୋଜନ କରିବାରେ ମିଳେ, ସେହି ସ୍ୱାଦ ବିଷ୍ଠା ଖାଉଥିବା ଶୂକରୀକୁ ବିଷ୍ଠାରେ ମିଳେ। ଯେଉଁ ଆରାମ ଆମକୁ ମଖମଲ ଗଦି ଉପରେ ଶୋଇଲେ ମିଳେ, ସେହି ଆରାମ ଗୋଟିଏ ଗଧକୁ ଅଳିଆ-ଆବର୍ଜନା ଉପରେ ଥିବା ପାଉଁଶକାଣ୍ଡିରେ ଗଡ଼ିବାରେ ମିଳେ। ପୁଣି ପଶୁ ଓ ଆମ ମଧ୍ୟରେ ପ୍ରଭେଦ କ'ଣ ରହିଲା?

୫୬. ସମସ୍ତ ଲୋକେ କୌଣସି ନା କୌଣସି ଅଭାବ ଅନୁଭବ କରନ୍ତି। ଅଭାବ ହିଁ ଦୁଃଖର କାରଣ। ଏପରି ସ୍ଥିତିରେ ଏହି ଦୁଃଖମୟ ଜଗତ୍‌ରୁ ବିମୁଖ ହୋଇ ତା'ଠାରୁ ସୁଖ ପାଇବାର ଆଶା ଛାଡ଼ି ନିତ୍ୟସୁଖର ଭଣ୍ଡାର ସୁଖସ୍ୱରୂପ ପରମାତ୍ମାଙ୍କ ଆଶ୍ରୟ ଗ୍ରହଣ କରିବା ଉଚିତ।

୫୭. ବିଷୟସମୂହ ପାଇଁ ବ୍ୟର୍ଥ ଘୂରି ବୁଲିବା ଛାଡ଼ି ସେହି ପରମସୁଖର ପ୍ରାପ୍ତି ପାଇଁ ହିଁ ମନୁଷ୍ୟକୁ ନିରନ୍ତର ଅକ୍ଳାନ୍ତ ଉଦ୍ୟମ କରିବା ଉଚିତ ଓ

ଯେପର୍ଯ୍ୟନ୍ତ ତାହା ପ୍ରାପ୍ତ ହୋଇ ନ ଯାଏ, ସେପର୍ଯ୍ୟନ୍ତ ଅନ୍ୟ ଦିଗକୁ ଚ୍ହିଁବା ମଧ୍ୟ ଅନୁଚିତ।

୫୮. ଖଦ୍ୟୋତର ଯେପରି ସୂର୍ଯ୍ୟଙ୍କ ସହ ତଥା ଜଳବିନ୍ଦୁର ଯେପରି ସମୁଦ୍ର ସହିତ ତୁଳନା ସମ୍ଭବ ନୁହେଁ, ସେହିପରି ସାରା ଦୁନିଆର ସଂପୂର୍ଣ୍ଣ ସୁଖକୁ ଏକତ୍ର କରି ମଧ୍ୟ ସେହି ବିଜ୍ଞାନ-ଆନନ୍ଦଘନ ପ୍ରାପ୍ତିରୂପ ସତ୍‌ସୁଖ ସହ ତୁଳନା କରାଯାଇ ନ ପାରେ।

୫୯. ଯଦି ଯଥାର୍ଥ କଲ୍ୟାଣର ଇଚ୍ଛା ଥାଏ, ତା'ହେଲେ ସାଧକକୁ ବାସ୍ତବିକ ଦୃଢ଼ବୈରାଗ୍ୟ ଉପାର୍ଜନ କରିବା ଉଚିତ। କେବଳ ବୈରାଗ୍ୟର ଅଭିନୟରେ କାମ ଚଳିବ ନାହିଁ।

୬୦. କୌଣସି କାରଣବଶତଃ ବା ମୂଢ଼ତାରୁ ସ୍ତ୍ରୀ, ପୁତ୍ର, ପରିବାର, ଧନାଦି ତ୍ୟାଗ କରିଦେବା, ଗେରୁଆ ପିନ୍ଧିବା, ଦାଢ଼ି ଛାଡ଼ିଦେବା, ଲଣ୍ଡା ହୋଇପଡ଼ିବା ବା ଅନ୍ୟ ବାହ୍ୟ ଚିହ୍ନଗୁଡ଼ିକୁ ଧାରଣ କରିବାକୁ ବୈରାଗ୍ୟ କୁହାଯାଏ ନାହିଁ।

୬୧. ମନେ ମନେ ବିଷୟସମୂହରେ ଘୂରି ବୁଲିବା ଓ ଉପରେ ଉପରେ ବୈରାଗ୍ୟର ଛଳନା କରିବା ତ ମିଥ୍ୟାଚ୍ର ବା ଦମ୍ଭ ଅଟେ।

୬୨. ଯେଉଁ ଲୋକେ ଜ୍ଞାନ ସମ୍ପାଦନପୂର୍ବକ ମୁକ୍ତି ପ୍ରାପ୍ତ କରିବାରେ ବୈରାଗ୍ୟ ଓ ନିବୃତ୍ତିର କୌଣସି ଆବଶ୍ୟକତା ବୁଝନ୍ତି ନାହିଁ, ସେମାନଙ୍କ ମୁକ୍ତି ବାସ୍ତବରେ ମୁକ୍ତି ନ ହୋଇ କେବଳ ଭ୍ରମ ହିଁ ହୋଇଥାଏ।

୬୩. ଯେଉଁ ପୁରୁଷ ଚିତ୍ତବୃତ୍ତିଗୁଡ଼ିକୁ ଭଗବଦ୍‌ଚିନ୍ତନରେ ନିଯୁକ୍ତ କରି ପ୍ରକୃତ ବୈରାଗ୍ୟବୃତ୍ତିରେ ବାହ୍ୟାଭ୍ୟନ୍ତର ତ୍ୟାଗ କରନ୍ତି, ତାଙ୍କୁ ସମସ୍ତ ଶାସ୍ତ୍ର ପ୍ରଶଂସା କରନ୍ତି।

୬୪. ବୈରାଗ୍ୟର ପରାକାଷ୍ଠା ସେହି ପୁରୁଷଙ୍କ ଠାରେ ଦେଖିବାକୁ ମିଳେ, ଯେଉଁମାନେ ଜୀବନ୍ମୁକ୍ତ ମହାତ୍ମା ଅଟନ୍ତି—ଅର୍ଥାତ୍ ଯେଉଁମାନେ ପରମାତ୍ମରସରେ ବୁଡ଼ ମାରି ବିଷୟରସରୁ ନିଜକୁ ସର୍ବଥା ମୁକ୍ତ କରି ଦେଇଛନ୍ତି।

୬୫. ମାନ-ବଡ଼ିମା, ପୂଜା-ପ୍ରତିଷ୍ଠା, ସତ୍କାର-ସମ୍ମାନ ଆଦିକୁ ସେ ଏତେ ଭୟ କରନ୍ତି, ଯେପରି କି ସାଧାରଣ ମନୁଷ୍ୟ ସିଂହ, ବ୍ୟାଘ୍ର, ଭୂତ, ପ୍ରେତ ଓ ଯମରାଜକୁ ଭୟ କରେ। ଯେଉଁଠାରେ ତାଙ୍କୁ ସତ୍କାର, ପୂଜା ବା ସମ୍ମାନ

ମିଳିବାର କିଞ୍ଚିତ୍ ମଧ୍ୟ ସମ୍ଭାବନା ଥାଏ, ସେଠାକୁ ଯିବାରେ ତାଙ୍କୁ ବଡ଼ ଭୟ ଜଣାଯାଏ। ଏଣୁ ଏପରି ସ୍ଥାନମାନଙ୍କୁ ସେ ଦୂରରୁ ହିଁ ତ୍ୟାଗ କରନ୍ତି।

୬୬. ଯେଉଁ ପ୍ରଶଂସା-ପ୍ରତିଷ୍ଠା, ମାନ-ସମ୍ମାନ ପ୍ରାପ୍ତିରେ ସାଧାରଣ ମନୁଷ୍ୟ ଅତ୍ୟଧିକ ଆନନ୍ଦିତ ହୁଏ, ସେଥିରେ ବୈରାଗ୍ୟବାନ୍‌କୁ ଲଜ୍ଜା, ସଂକୋଚ ଓ ଦୁଃଖ ହୁଏ, ସେ ସେଥିରେ ନିଜର ଅଧଃପତନ ବୁଝେ।

୬୭. ଯେଉଁ ସ୍ତ୍ରୀ-ପୁତ୍ରାଦି ଅଜ୍ଞାନ ଦୃଷ୍ଟିରେ ରମଣୀୟ ଓ ସୁଖପ୍ରଦ ଜଣାଯାଆନ୍ତି, ସେମାନେ ବୈରାଗ୍ୟବାନ୍‌ର ଦୃଷ୍ଟିରେ ଘୃଣିତ ଓ ଦୁଃଖପ୍ରଦ ପ୍ରତୀତ ହୁଅନ୍ତି। ଧନସମ୍ପତ୍ତି, ଘରବାଡ଼ି, ରୂପ-ଯୌବନ, ଗାଡ଼ି-ମୋଟର, ପଦ-ଗୌରବ, ବିଳାସବ୍ୟସନ, ସୁଖ, ସାଜସଜ୍ଜା ଆଦି ସବୁଥିରେ ତା'ର ବିଷବତ୍ ବୁଦ୍ଧି ହୋଇଯାଏ ଏବଂ ସେଗୁଡ଼ିକର ସଂସର୍ଗ ତାକୁ ସାକ୍ଷାତ୍ କାରାଗାରଠାରୁ ମଧ୍ୟ ଅଧିକ ବନ୍ଧନକାରକ, ଦୁଃଖଦାୟୀ ତଥା ଘୃଣାସ୍ପଦ ବୋଧ ହେବାରେ ଲାଗେ।

୬୮. ଆମ୍ଭେମାନେ ଯେପରି ଅପବିତ୍ର ଓ ଘୃଣିତ ପଦାର୍ଥଗୁଡ଼ିକ ଦେଖିବାକୁ କୁଣ୍ଠାବୋଧ କରୁ, ସେହିପରି ସେ ମାନ-ବଡ଼ିମାକୁ ଘୃଣା କରେ। କାହାରିକୁ ମଧ୍ୟ ପ୍ରସନ୍ନ କରିବାକୁ ବା କାହାରି ଗ୍ୱପରେ ସେ ମାନ-ବଡ଼ିମାକୁ ସ୍ୱୀକାର କରେ ନାହିଁ। ତାକୁ ତାହା ସବୁ ପ୍ରତ୍ୟକ୍ଷ ନରକ ତୁଲ୍ୟ ଜଣା ଯାଆନ୍ତି।

୬୯. ପ୍ରକାଶମୟ ସୂର୍ଯ୍ୟଦେବ ଉଦୟ ହେଲେ ଚନ୍ଦ୍ରମା ଯେପରି ଦେଖାଯାଏ, ବୈରାଗୀ ପୁରୁଷକୁ ସଂସାରର ସ୍ତ୍ରୀ, ପୁତ୍ର, ସମ୍ମାନ, ବଡ଼ିମା, ଧନ, ଐଶ୍ୱର୍ଯ୍ୟ ଆଦି ସେହିପରି କାନ୍ତିହୀନ ଓ ନିରସ ଜଣା ଯାଆନ୍ତି।

୭୦. ବୈରାଗ୍ୟବାନ୍ ପୁରୁଷର ସଂସାରରେ କୌଣସି ଭୋଗ୍ୟ-ପଦାର୍ଥ ପ୍ରତି ଆସ୍ଥା ରହେ ନାହିଁ, ତେବେ ତାକୁ ସେଥିରେ ରମଣୀୟତା ଓ ସୁଖର ଭ୍ରାନ୍ତି କିପରି ହୋଇପାରେ?

୭୧. ବୈରାଗ୍ୟବାନ୍‌ର ଦର୍ଶନମାତ୍ରକେ ବୈରାଗ୍ୟ ହୋଇଯାଏ, ପୁଣି ତାହାର ଇଙ୍ଗିତରେ ବା ବ୍ୟାଖ୍ୟାନରେ ଅନ୍ୟ ମନରେ ବୈରାଗ୍ୟ ଉତ୍ପନ୍ନ ହୋଇଯିବାଟା କେଉଁ ବିଚିତ୍ର କଥା ଅବା!

୭୨. ବୈରାଗ୍ୟବାନ୍‌ର ବ୍ୟାଖ୍ୟାନଦ୍ୱାରା ବେଶ୍ୟାର ହୃଦୟ ମଧ୍ୟ ବଦଳିଯାଏ। ଦତ୍ତାତ୍ରେୟଙ୍କ ଦର୍ଶନରେ ଜଣେ ବେଶ୍ୟାକୁ ବୈରାଗ୍ୟ ଆସିଗଲା। ଭକ୍ତ ହରିଦାସଙ୍କ ସଂପର୍କରେ ଆସି ଅନ୍ୟ ଜଣେ ବେଶ୍ୟା ବୈରାଗ୍ୟବତୀ ହୋଇଗଲା।

୭୩. ଜଡ଼ଭରତଙ୍କ ଉପରେ ମଧ୍ୟ ବୈରାଗ୍ୟର ନିଶା ଏତେ ଚଢ଼ି ରହୁଥିଲା, ସତେ ଯେପରି କେହି ଜଣେ ମଦ୍ୟପାନ କରିଅଛି। ମଦର ନିଶା ତାମସିକ, ଅନ୍ନର ନିଶା ରାଜସିକ ଓ ବୈରାଗ୍ୟର ନିଶା ସାତ୍ତ୍ୱିକ ଅଟେ।

୭୪. ବୈରାଗ୍ୟର କଥା କେବଳ ବୈରାଗ୍ୟବାନ୍ ହିଁ କହିପାରେ। ପ୍ରକୃତ ବୈରାଗ୍ୟବାନ୍ ପୁରୁଷକୁ ତ କହିବାକୁ ଆବଶ୍ୟକ ପଡ଼େ ନାହିଁ। ତାହା ସହିତ ବୈରାଗ୍ୟ ମୂର୍ତ୍ତିମାନ୍ ହୋଇ ଗ୍ଲେ। ସେ ଯେଉଁ ମାର୍ଗ ଦେଇ ଯାଏ, ସେହି ମାର୍ଗରେ ସତେ ଯେପରି ବୈରାଗ୍ୟର ବନ୍ୟା ଆସିଯାଏ। ତା'ର ନେତ୍ରଯୁଗଳରୁ ବୈରାଗ୍ୟଭାବ ଜାତ ହୋଇ ସବୁଆଡ଼େ ବ୍ୟାପ୍ତ ହୋଇଯାଏ।

୭୫. ଯେପରି କାମୀର ହୃଦୟରେ କାମିନୀ ସମ୍ପର୍କୀୟ ବର୍ଣ୍ଣନା ଦ୍ୱାରା କାମଭାବ ଜାଗ୍ରତ ହୋଇଯାଏ, ସେହିପରି ବୈରାଗ୍ୟଯୋଗ୍ୟ ଭୂମି ହେଲେ ଏବଂ ବକ୍ତା ବୈରାଗ୍ୟମୟ ଓ ଶ୍ରୋତା ସତ୍‌ପାତ୍ର ହେଲେ ବୈରାଗ୍ୟ କଥା ବର୍ଣ୍ଣନା କରିବା କ୍ଷଣି ବୈରାଗ୍ୟ ଜାଗ୍ରତ ହୋଇଯାଏ।

୭୬. ଧ୍ୟାନ କରୁଥିବା ଯୋଗୀ ମହାତ୍ମାଗଣ ବୈରାଗ୍ୟର ହିଁ ଆଶ୍ରୟ ନିଅନ୍ତି।

୭୭. ଏବେ ମଧ୍ୟ ଉତ୍ତରାଖଣ୍ଡରେ ରହିଲେ ସ୍ୱାଭାବିକ ବୈରାଗ୍ୟ ହୁଏ। ସେହି ସ୍ଥାନମାନଙ୍କରେ ବୈରାଗ୍ୟର ପରମାଣୁ ଓତଃପ୍ରୋତ ଜଡ଼ିତ ଅଛି।

୭୮. ବଣ, ପାହାଡ଼, ଗଙ୍ଗାକୂଳ ଇତ୍ୟାଦି ସ୍ଥାନଗୁଡ଼ିକରେ ବୈରାଗ୍ୟର ଚର୍ଚ୍ଚା ଅଧିକ ଶୋଭା ଦିଏ।

୭୯. ବୈରାଗ୍ୟବାନ୍ ପୁରୁଷ ହିଁ ବୈରାଗ୍ୟବାନ୍ ସ୍ଥିତିର ଅଳ୍ପ-ବହୁତ ଅନୁମାନ କରିପାରେ।

୮୦. ଅନ୍ଧକାର ଓ ଆଲୋକ ମଧ୍ୟରେ, ରାତି ଓ ଦିନ ମଧ୍ୟରେ ଯେତିକି ଅନ୍ତର ଅଛି, ରାଗୀ (ଆସକ୍ତ) ଓ ବୈରାଗୀ ପୁରୁଷ ମଧ୍ୟରେ ସେତିକି ଅନ୍ତର ଅଛି।

୮୧. ଯେଉଁ ପଦାର୍ଥ ରାଗୀ ପୁରୁଷପାଇଁ ପ୍ରିୟ, ସେଗୁଡ଼ିକ ବୈରାଗ୍ୟବାନ୍‌କୁ ଓଲଟା ଜଣା ଯାଆନ୍ତି।

୮୨. ରାଗୀକୁ ଅତର, ସୁବାସିତ ତେଲ, କ୍ରିମ୍ ଆଦି ସୁଗନ୍ଧିତ ଦ୍ରବ୍ୟ ଭଲ ଲାଗେ, କିନ୍ତୁ ବୈରାଗ୍ୟବାନ୍ ଏଗୁଡ଼ିକୁ ଘୃଣା ଦୃଷ୍ଟିରେ ଦେଖେ। ଉଭୟଙ୍କ

ରୁଚି ବିପରୀତ ଅଟେ। ମଖମଲ ଗଦି ରାଗୀକୁ ଭଲ ଜଣାଯାଏ, କିନ୍ତୁ ବୈରାଗ୍ୟବାନ୍‌କୁ ତାହା ଭଲ ଲାଗେ ନାହିଁ।

୮୩. ମାନ-ବଡ଼ିମା ରାଗୀ (ଆସକ୍ତ) ପୁରୁଷକୁ ଅମୃତ ପରି ଲାଗେ, କିନ୍ତୁ ବୈରାଗ୍ୟବାନ୍‌କୁ ତାହା ବିଷପରି ଜଣାଯାଏ।

୮୪. ବୈରାଗୀ ଯେଉଁଠି ଇଚ୍ଛା, ସେଇଠି ପଡ଼ିଯାଏ, ଭୂମି ହେଉ ବା ବିଛଣା, ତା'ପାଇଁ ସବୁ ସମାନ ଅଟେ। ବୈରାଗ୍ୟ ନିଶାରେ ତାକୁ ସବୁ କିଛି ଅମୃତତୁଲ୍ୟ ଜଣାଯାଏ।

୮୫. ବୈରାଗ୍ୟବାନ୍‌ର ବୃତ୍ତିଗୁଡ଼ିକ ସଂସାର ବନ୍ଧନରୁ ମୁକ୍ତ ଥାଆନ୍ତି। କୌଣସି ସ୍ଥାନରେ ଯଦି ରାତିରେ ରାଗୀ-ବିରାଗୀ (ଆସକ୍ତ-ଅନାସକ୍ତ) ସମସ୍ତେ ଶୋଉଥିବେ, ଶୀତ ପଡୁଥିବ, ଆଖ-ପାଖରେ ଶାଲ, କମ୍ବଳ ଓ ହେଁସ ସବୁ ଥିବ। ସେହି ପରିସ୍ଥିତିରେ ରାଗୀର ହାତ ସର୍ବପ୍ରଥମେ ଶାଲ ଉପରେ ପଡ଼ିବ। କମ୍ବଳ ଉପରେ ସେ ହାତ ସେତେବେଳେ ପକାଇବ, ଯେତେବେଳେ ଶାଲରେ ତାର ଶୀତ ଦୂର ହେବା ଦେଖା ନ ଯିବ। କିନ୍ତୁ ବୈରାଗ୍ୟବାନ୍‌ର ହାତ ସେହି ପରିସ୍ଥିତିରେ ସ୍ୱାଭାବିକଭାବେ ହେଁସ ଉପରକୁ ଯିବ, ଶାଲ ଉପରକୁ ନୁହେଁ।

୮୬. ବୈରାଗ୍ୟବାନ୍‌କୁ ଯେଉଁ ସୁଖ ପ୍ରାପ୍ତ ହୁଏ, ତାହା ରାଗୀକୁ କେବେ ମିଳେ ନାହିଁ। ବୈରାଗ୍ୟବାନ୍‌ର ସୁଖ ସାତ୍ତ୍ୱିକ ସୁଖ ହୋଇଥାଏ।

୮୭. ପ୍ରକୃତ ନିବୃତ୍ତି ବୈରାଗ୍ୟ ଦ୍ୱାରା ହିଁ ହୁଏ। ତାହାରି ଫଳ ଅଟେ ବ୍ରାହ୍ମୀ ସ୍ଥିତି। ତାକୁ ଯିଏ ପ୍ରାପ୍ତ କରିନିଏ, ସେ ମୋହପ୍ରାପ୍ତ ହୁଏ ନାହିଁ।

୮୮. ସାଧନଦ୍ୱାରା ସାଧକର ବୃତ୍ତିସମୂହ ବହୁତ ଶୀଘ୍ର ସଂସାରରୁ ନିବୃତ୍ତ ହୋଇ ଭଗବାନଙ୍କ ସ୍ୱରୂପରେ ଅଟଳ ଓ ସ୍ଥିର ହୋଇଯାଆନ୍ତି। ସାଧକ ସେହି ପ୍ରକୃତ ଓ ଅପାର ଆନନ୍ଦକୁ ସବୁଦିନ ପାଇଁ ପ୍ରାପ୍ତ ହୋଇ ତୃପ୍ତ ହୋଇଯାଏ। ତା'ର ଦୁଃଖଗୁଡ଼ିକର ଆତ୍ୟନ୍ତିକ ନିବୃତ୍ତି ହୋଇଯାଏ। ଏହା ହିଁ ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ ଅଟେ।

୮୯. ବୈରାଗ୍ୟ ସହିତ ନିବୃତ୍ତି ଲାଗି ରହିଥାଏ ଓ ତା'ସହିତ ଭଗବାନଙ୍କ ଧ୍ୟାନ ଲାଗି ରହିଥାଏ।

୯୦. ପ୍ରଥମେ ବୈରାଗ୍ୟ, ମଝିରେ ନିବୃତ୍ତି, ପଛରେ ଧ୍ୟାନ, ଏହିପରି

ତିନିହେଁ ଏକାସାଙ୍ଗରେ ଚାଲନ୍ତି, ଯେପରି ବଣକୁ ଯିବା ସମୟରେ ରାମ, ସୀତା ଓ ଲକ୍ଷ୍ମଣ ଚାଲିଥିଲେ ।

୯୧. ଯେଉଁଠି ପ୍ରକୃତ ବୈରାଗ୍ୟ ଥିବ, ଧ୍ୟାନ ହେଉଥିବ, ସାଧନ ତୀବ୍ର ହେଉଥିବ, ସେଠାରେ ନିଶ୍ଚୟ ନିବୃତ୍ତି ରହିଥାଏ ।

୯୨. ବୈରାଗ୍ୟଯୁକ୍ତ ନିବୃତ୍ତି ହିଁ ଶ୍ରେଷ୍ଠ, ବିନା ବୈରାଗ୍ୟରେ ନିବୃତ୍ତି ଅପରିପକ୍ୱ ହୋଇଥାଏ ।

୯୩. ଭୋଗ୍ୟ ବସ୍ତୁଗୁଡ଼ିକ ଆଡ଼କୁ ବୃତ୍ତିସମୂହ ନ ଯିବା ହିଁ ନିବୃତ୍ତି ।

୯୪. ଋଷଭଦେବଙ୍କ ସମାନ ନିବୃତ୍ତିର କୌଣସି ଅନ୍ୟ ଉଦାହରଣ ମିଳେ ନାହିଁ । ସଂସାରରେ ବିଚରଣ କରୁଥିଲେ ମଧ୍ୟ ତାଙ୍କର ସାଂସାରିକ ଜ୍ଞାନ ନ ଥିଲା । ବଣରେ ନିଆଁ ଲାଗିଛି, କିନ୍ତୁ ତାଙ୍କୁ ଏକଥା ଜଣା ନ ଥିଲା । ଶେଷରେ ଶରୀରରେ ନିଆଁ ଲାଗିଗଲା, ଶରୀର ନିଆଁରେ ଜଳି ଭସ୍ମ ହୋଇଗଲା; କିନ୍ତୁ ଋଷଭଦେବ ସେତେବେଳେ ମଧ୍ୟ ନିଆଁ ବିଷୟରେ ଜାଣି ପାରିଲେ ନାହିଁ, ଏହା ନିବୃତ୍ତିର ସୀମା ।

୯୫. ଏପରି ମତୁଆଲା ହୋଇଯାଅ ଯେପରି କି କିଛି ଜଣା ନ ଥିବ । ଦେହଜ୍ଞାନ ନ ରହିବ ।

୯୬. କେବଳ ଭିତରର ନିବୃତ୍ତି କମ୍ ମହତ୍ତ୍ୱର କଥା ନୁହେଁ । ଆତ୍ମାର କଲ୍ୟାଣ ପାଇଁ ତ ଭିତରର ନିବୃତ୍ତିର ହିଁ ବିଶେଷ ଆବଶ୍ୟକତା ରହିଛି ।

୯୭. ରାଜା ଜନକଙ୍କ ଠାରେ ବାହ୍ୟ ନିବୃତ୍ତି ନ ଥିଲା । ବାସ୍ତବରେ ତାଙ୍କ ଦୃଷ୍ଟିରେ ଜଗତ୍‌ର ଅଭାବ ଥିଲା । ଶୁକଦେବଙ୍କ ଠାରେ ବାହାର ଭିତର ଉଭୟ ପ୍ରକାରର ନିବୃତ୍ତି ଥିଲା ।

୯୮. ଶୁକଦେବଙ୍କ ଠାରେ ଅଲୌକିକ ନିବୃତ୍ତି ଥିଲା, ଅଲୌକିକ ବୈରାଗ୍ୟ ଥିଲା । ନଦୀକୂଳରେ ସ୍ତ୍ରୀମାନେ ଗାଧୋଉ ଥିଲେ । ସେହି ମାର୍ଗ ଦେଇ ଶୁକଦେବ ଚାଲିଗଲେ, କିନ୍ତୁ କେହି ଲଜ୍ଜା କଲେ ନାହିଁ । ଯେବେ ବେଦବ୍ୟାସ ଆସିଲେ, ତାଙ୍କୁ ଦେଖି ସ୍ତ୍ରୀମାନେ ଲଜ୍ଜାବଶତଃ ଲୁଗା ପିନ୍ଧି ପକାଇଲେ । ବେଦବ୍ୟାସ ଏହାର କାରଣ ପଚାରିଲେ, ସ୍ତ୍ରୀମାନେ କହିଲେ ଯେ ''ଶୁକଦେବଙ୍କ ଦୃଷ୍ଟିରେ ସ୍ତ୍ରୀ-ପୁରୁଷର ଭେଦ ନାହିଁ । ଆପଣ ଆମକୁ ସ୍ତ୍ରୀ ବୋଲି ଭାବୁଛନ୍ତି, ଏଣୁ ଆମେ

ମର୍ଯ୍ୟାଦାବଶତଃ ଆପଣଙ୍କୁ ଦେଖି ଲୁଗା ପିନ୍ଧି ପକାଇଲୁ।'' ଏତେ ଅଧିକ ନିବୃତ୍ତି ଶୁକଦେବଙ୍କ ଠାରେ ଥିଲା!

୯୯. ବୈରାଗ୍ୟବାନ୍‌ର ହୃଦୟରେ କ୍ଷଣ-କ୍ଷଣକେ ଆନନ୍ଦର ଲହରୀ ଉଠୁ ଥାଏ। ଆମେ ତାହାର ସ୍ଥିତିକୁ ବୁଝି ପାରିବା ନାହିଁ, ବୈରାଗ୍ୟ ଥିଲେ ହୁଏତ କିଛି ବୁଝି ହୋଇପାରେ। ସାପ କାମୁଡ଼ିଲେ ଯେପରି କ୍ଷଣ-କ୍ଷଣକେ ବିଷର ଲହଡ଼ି ଆସେ, ସମୁଦ୍ରରେ ଯେପରି ଜଳର ଲହଡ଼ି ଉଠେ, ବିଜୁଳି କରେଣ୍ଟ ମାରିଲେ ଯେପରି ରକ୍ତରେ ଦୁଃଖଦ ଲହଡ଼ି ଉଠେ, ସେହିପରି ବୈରାଗ୍ୟରେ ହିଁ ସୁଖ ଓ ଶାନ୍ତିର ଲହଡ଼ି ଉଠେ।

୧୦୦. ଯେଉଁଠାରେ ଫୁଲବର୍ଷା ହେଉଥିବ, ସେ ସେଠାକୁ ଯିବ ନାହିଁ। ତାକୁ ତ ସଂସାରର ସମସ୍ତ ସୁଖ ଖରାପ ଜଣା ଯାଆନ୍ତି। କେବଳ ସଂସାରର ସୁଖ କାହିଁକି, ଦେବତାଗଣ ବିମାନ ନେଇ ତା'ଆଗକୁ ଆସିଲେ ମଧ୍ୟ ସେ ତାଙ୍କ ଆଡ଼କୁ ଆଖି ଉଠାଇ ଦେଖେ ନାହିଁ।

୧୦୧. ବୈରାଗ୍ୟବାନ୍‌କୁ ବୈରାଗ୍ୟର ନିଶା ଏପରି ଘାରି ଥାଏ ଯେ ଭୋଗସମୂହ ଆଡ଼କୁ ସେ ଦୃଷ୍ଟି ପକାଏ ନାହିଁ। ସେଗୁଡ଼ିକରେ ତାକୁ ରସ ଆଦୌ ମିଳେ ନାହିଁ। ସେ ତ ବୈରାଗ୍ୟ ରସରେ ପୂର୍ଣ୍ଣମାତ୍ରାରେ ସିକ୍ତ ଥାଏ। ନିବୃତ୍ତିରୁ ଯେଉଁ ରସ ମିଳେ, ତାହା ବୈରାଗ୍ୟ ଠାରୁ ଅଧିକ ଓ ଭଗବାନଙ୍କ ଧ୍ୟାନରେ ତ ଆହୁରି ମଧ୍ୟ ବିଶେଷ ସୁଖ ମିଳେ।

୧୦୨. ଏହି ସୁଖକୁ ଶବ୍ଦରେ କୁହାଯାଇ ପାରିବ ନାହିଁ। ସାରା ଜଗତ୍ ପରମାତ୍ମରୂପକ ଅମୃତସାଗରର ଏକ ବିନ୍ଦୁର ଆଭାସମାତ୍ରରେ ହିଁ ଆନନ୍ଦିତ ହେଉଅଛି, ମୁଗ୍ଧ ହେଉଅଛି; ଧ୍ୟାନଜନିତ ସୁଖ ତା'ର ଗୋଟିଏ ବିନ୍ଦୁ ସଦୃଶ ଅଟେ। ଯାହାର ଗୋଟିଏ ବିନ୍ଦୁରେ ଏତେ ସୁଖ ଅଛି, ସେହି ସୁଖସାଗର ସାକ୍ଷାତ୍ ମିଳିଗଲେ କେତେ ଅପାର ସୁଖ ମିଳେ, ତାକୁ କିଏ ବୁଝାଇ ପାରିବ! ତାହା ମନ-ବାଣୀର ଅତୀତ ଅଟେ।

୧୦୩. ସ୍ତ୍ରୀ, ପୁତ୍ର, ଧନ ଓ ସଂପୂର୍ଣ୍ଣ ବିଷୟ-ଭୋଗ ସମୂହରେ ସୁଖ ନାହିଁ। ଯଦି ବାସ୍ତବରେ ଏଗୁଡ଼ିକରେ ସୁଖ ଥାଆନ୍ତା, ଏଗୁଡ଼ିକ ଥିବା ଅବସ୍ଥାରେ ଦୁଃଖ ଆଦୌ ହୁଅନ୍ତା ନାହିଁ। କିନ୍ତୁ ଯେଉଁ ପଦାର୍ଥଗୁଡ଼ିକ ଥାଇ ମଧ୍ୟ ଦୁଃଖ ହୁଏ, ସେଗୁଡ଼ିକରେ ସୁଖ ନାହିଁ ବୋଲି ପ୍ରମାଣିତ ହେଲା। ସୁଖ ତ ବିଗ୍ରହ, ଶାନ୍ତି ଓ ସନ୍ତୋଷରେ ଅଛି।

୧୦୪. ସଂସାରଭୋଗସମୂହର ପ୍ରେମୀ ତ ସଂସାରର ଏକ କୀଟ ଅଟେ ।

୧୦୫. ସଂସାରକୁ ଅଭାବସ୍ୱରୂପ ଓ ସଚ୍ଚିଦାନନ୍ଦଘନଙ୍କୁ ଭାବସ୍ୱରୂପ ନ ବୁଝିବା ପର୍ଯ୍ୟନ୍ତ ସଂସାରରୁ ପୂର୍ଣ୍ଣ ବୈରାଗ୍ୟ ହୁଏ ନାହିଁ ।

୧୦୬. ଯଦି ବୈରାଗ୍ୟ ହୋଇଯାଏ ତେବେ ଘରେ ରହିଲେ ବି କୌଣସି କ୍ଷତି ନାହିଁ । ବୈରାଗ୍ୟ ନ ହେଲେ ଘର ଛାଡ଼ିଦେଲେ ବି କୌଣସି ଲାଭ ନାହିଁ ।

୧୦୭. ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ମନର ବୃତ୍ତିସମୂହ ସ୍ଥିର ରହନ୍ତି ।

୧୦୮. ଆପଣାର ବସ୍ତୁ ତାହା ହିଁ ଅଟେ, ଯେ ଭଗବାନଙ୍କ ଠାରେ ଅଧିକ ପ୍ରେମ କରାଏ; ବାକି ସବୁ ମାଟି ଅଟେ । ସୁନାର ପାହାଡ଼ ଓ ପଥରପାହଡ଼ ମଧ୍ୟରେ ପ୍ରଭେଦ କ'ଣ? କେହି ସାଙ୍ଗରେ ଯିବେ ନାହିଁ । ଶରୀର ମଧ୍ୟ ମାଟିରେ ମିଶିଯିବ । ଏ ପ୍ରକାର ଜାଣି ଏହି ଶରୀରଦ୍ୱାରା ସଂପୂର୍ଣ୍ଣ ଲାଭ ଉଠାଇବା ଉଚିତ ।

୧୦୯. ସଂସାରରୁ ବୈରାଗ୍ୟ ହେଲେ ନିରନ୍ତର ଭଜନ-ଧ୍ୟାନ ହୋଇପାରେ । ପରମାତ୍ମାଙ୍କ ଠାରେ ପ୍ରେମ ହେଲେ ସଂସାରରୁ ଆପେ ଆପେ ବୈରାଗ୍ୟ ଜାତ ହୁଏ । ଭଗବାନଙ୍କ ଗୁଣାନୁବାଦ, ତାଙ୍କ ସ୍ୱଭାବ, ସାମର୍ଥ୍ୟ ଓ ପ୍ରେମପୂର୍ଣ୍ଣ କଥାଗୁଡ଼ିକ ପଢ଼ିବା-ଶୁଣିବାଦ୍ୱାରା ଭଗବାନଙ୍କ ମର୍ମ ଜାଣି ଭଗବାନଙ୍କ ଠାରେ ପ୍ରେମ ହୁଏ, ସେତେବେଳେ ସଂସାରର ଭୋଗ ଭଲ ଲାଗେ ନାହିଁ । ଏକମାତ୍ର ଭଗବାନଙ୍କୁ ପାଇବା ପାଇଁ ହିଁ ବାରମ୍ବାର ଉତ୍ତେଜନା ପ୍ରକାଶ ପାଏ । ସେତେବେଳେ ହିଁ ନିରନ୍ତର ଭଜନ-ଧ୍ୟାନ ହୁଏ ।

୧୧୦. ସଂସାର-ଭୋଗସମୂହର ଫାନ୍ଦରେ ପଡ଼ିବା ଉଚିତ ନୁହେଁ । ସାଂସାରିକ ଭୋଗ-ବିଳାସ, ଆରାମ ଓ ସ୍ୱାଦ-ସଉକ ଆଦି ସମସ୍ତ ବିଷୟ କ୍ଷଣଭଙ୍ଗୁର ଓ ଅନିତ୍ୟ । ଏସବୁ ଭ୍ରମରେ ପକାଇ ବୁଡ଼େଇ ମାରି ଦିଅନ୍ତି ଓ ଲୋଭ ଦେଖାଇ ମଣିଷର ଗଳାରେ ଫାଶି ଲଗାଇ ଦିଅନ୍ତି । ଏପରି ବୁଝି ଭୁଲରେ ମଧ୍ୟ ଏହି ବିଷୟସମୂହ ପ୍ରତି ପ୍ରେମ କର ନାହିଁ ।

୧୧୧. ଶ୍ରୀଭଗବାନଙ୍କୁ ଭକ୍ତି କଲେ ଜ୍ଞାନ ଆପେ ଆପେ ହୋଇପାରେ ।

ଚିତ୍ତ ଶୁଦ୍ଧ ହେଲେ ବୈରାଗ୍ୟ ହୁଏ। କେବଳ ଭଗବାନଙ୍କୁ ଭକ୍ତି କରିବାଦ୍ୱାରା ଚିତ୍ତ ଶୁଦ୍ଧ ହୋଇ ବୈରାଗ୍ୟ ମଧ୍ୟ ହୋଇଯାଏ।

୧୧୨. ସଂସାର ଓ ଶରୀରକୁ ମିଥ୍ୟା ଏବଂ ନାଶବାନ୍, ଅପରପକ୍ଷେ ପରମାତ୍ମାଙ୍କୁ ଆନନ୍ଦରେ ପରିପୂର୍ଣ୍ଣ ଦେଖିବା ଦ୍ୱାରା ବୈରାଗ୍ୟ ହୋଇପାରେ। ସଂସାର ପ୍ରତି ଘୃଣା ଜାତ ହେଲେ ସଂସାରର ଚିନ୍ତନ ସ୍ୱତଃ କମ୍ ହୋଇପାରେ।

୧୧୩. ସଂସାରରେ ଯେତେ ବସ୍ତୁ ଦେଖା ଯାଆନ୍ତି, ସବୁ ନାଶବାନ୍ ଅଟନ୍ତି। ଏହି ପ୍ରକାର ଧାରଣା କରିବା ଦ୍ୱାରା ବୈରାଗ୍ୟ ଜାତ ହୋଇ ମନ ସ୍ଥିର ହୁଏ।

୧୧୪. ବିବେକପୂର୍ବକ ବୈରାଗ୍ୟ ଧାରଣ କରିବା ଦ୍ୱାରା ସମସ୍ତ କଥା ଆସି ଯାଆନ୍ତି।

୧୧୫. ବୈରାଗ୍ୟ ହେବାର ଉପାୟ ହେଲା—ବୈରାଗ୍ୟବାନ୍ ପୁରୁଷଙ୍କ ସଙ୍ଗ କରିବା।

୧୧୬. ଯେଉଁ ସମୟରେ ଜପ ନିରନ୍ତର ହେବାରେ ଲାଗେ, ସେହି ସମୟରେ ତାହା ପ୍ରେମ ସହିତ ହିଁ ହୁଏ। ବୈରାଗ୍ୟ ହେବା ଦ୍ୱାରା ବିନା ଚେଷ୍ଟାରେ ଜପ ଓ ଧ୍ୟାନ ନିରନ୍ତର ହେବାରେ ଲାଗେ।

୧୧୭. ସଂସାରରୁ ଯଦି ବୈରାଗ୍ୟ ହୋଇଯାଏ, ତା'ହେଲେ ସଂସାରର ଚିନ୍ତନ କମ୍ ହୋଇପାରେ ଏବଂ ସଂସାରକୁ ମିଥ୍ୟା, କଳ୍ପିତ ତଥା ଦୁଃଖରୂପ ଦେଖିବା ଦ୍ୱାରା ସଂସାର ପ୍ରତି ବୈରାଗ୍ୟ ହୋଇପାରେ।

୧୧୮. ଶୁଣିଥିବା-ଦେଖିଥିବା ବସ୍ତୁଗୁଡ଼ିକର ସ୍ଫୁରଣ ଠାରୁ ଚିତ୍ତକୁ ରହିତ କରି ପରମାତ୍ମାଙ୍କ ଠାରେ ଲଗାଇବାର ନାମ ହିଁ ବୈରାଗ୍ୟ। ଉପର୍ଯ୍ୟୁକ୍ତ ପ୍ରକାରେ ଅଭ୍ୟାସ କରିବା ଓ ବୈରାଗ୍ୟର ଭାବନା କରିବା ଦ୍ୱାରା ମନ ସ୍ଥିର ହୋଇପାରେ। ଏଗୁଡ଼ିକ ମଧ୍ୟରୁ ଯେଉଁ ସାଧନରେ ରୁଚି ଥିବ ଓ ନିଜର ମନ ପ୍ରସନ୍ନ ରହୁଥିବ, ତାହା ହିଁ ଅଭ୍ୟାସ କରିବା ଉତ୍ତମ ଅଟେ।

୧୧୯. ସଂସାର ଓ ଶରୀର ସବୁ କ୍ଷଣଭଙ୍ଗୁର ଅଟନ୍ତି। ଭୋଗ ସବୁ ରୋଗରୂପ ଅଟନ୍ତି ତଥା ଶେଷରେ ଗ୍ଳାନି ତଥା ଦୁଃଖ ଉତ୍ପନ୍ନକାରକ ଅଟନ୍ତି। ଏହି ଭଳି ବୁଝିବାଦ୍ୱାରା ଜଗତ୍‌ରୁ ବୈରାଗ୍ୟ ହୋଇ ମନ ସ୍ଥିର ହୋଇପାରେ।

୧୨୦. ସଂସାରରେ ମୂର୍ଖମାନଙ୍କୁ ହିଁ ସୁଖ ପ୍ରତୀତ ହୁଏ, ବିବେକସମ୍ପନ୍ନ ପୁରୁଷଙ୍କ ପାଇଁ ତ ସାଂସାରିକ ସୁଖ ଦୁଃଖ ସ୍ୱରୂପ ଅଟେ।

୧୨୧. ସଂସାର ପ୍ରତି ଦୃଢ଼ ବୈରାଗ୍ୟ ହେବା ପାଇଁ ଭଜନ, ଧ୍ୟାନ ଓ ସତ୍‌ସଙ୍ଗ ସୁଗମ ଉପାୟ ଅଟେ। ଏହା ବ୍ୟତୀତ ବିଗ୍ରହାଦି ମଧ୍ୟ ଉପାୟ ଅଟନ୍ତି, କିନ୍ତୁ ଅନ୍ତଃକରଣ ଶୁଦ୍ଧ ନ ହେଲେ ବିଗ୍ରହ ସ୍ଥିର ରହେ ନାହିଁ।

୧୨୨. ବୈରାଗ୍ୟ ବିନା ସତ୍‌ସଙ୍ଗ, ଭଜନ ଓ ଧ୍ୟାନ ହୋଇ ପାରେ ନାହିଁ। ସଂସାରର ଭୋଗସମୂହରେ ବୈରାଗ୍ୟ ହେବା ବିନା ଈଶ୍ୱରଙ୍କ ଠାରେ ପୂର୍ଣ୍ଣ ପ୍ରେମ ହୋଇ ପାରେ ନାହିଁ। ସଂସାରର ସୁଖ ତଥା ଟଙ୍କା କେଉଁ କାମରେ ଆସିବ? ସବୁ କିଛି ଏଇଠି ରହିଯିବ।

୧୨୩. ସଂସାରରେ କିଛି ବି ସୁଖ ନାହିଁ। ଯାହା କିଛି ସୁଖ ଦେଖାଯାଏ, ତାହା ପ୍ରକୃତରେ ମିଥ୍ୟା ଆଭାସ; ଶେଷରେ କେବଳ ଦୁଃଖ ହିଁ ଭୋଗିବାକୁ ପଡ଼େ।



# ଚିତ୍ତ-ନିରୋଧ

୧. ଦୁଃଖ ସମୂହର ଆତ୍ୟନ୍ତିକ ନିବୃତ୍ତି ଏବଂ ପରମାନନ୍ଦପ୍ରାପ୍ତି ପାଇଁ ଚିତ୍ତ ନିରୋଧ କରିବା ଆବଶ୍ୟକ।

୨. ମନକୁ ବଶ ନ କରି ତା'କୁ ନିରୋଧ କରିବା କଠିନ ଓ ବିନା ପବିତ୍ରତାରେ ମନକୁ ବଶ କରିବା କଠିନ।

୩. ମହର୍ଷି ପତଞ୍ଜଳି ସୁଖୀ ପୁରୁଷଙ୍କ ସହିତ ମିତ୍ରତା, ଦୁଃଖୀମାନଙ୍କ ପ୍ରତି ଦୟା, ପୁଣ୍ୟାତ୍ମାମାନଙ୍କୁ ଦେଖି ହର୍ଷ ଓ ପାପୀମାନଙ୍କ ପ୍ରତି ଉଦାସୀନତା ରଖିବାକୁ ଚିତ୍ତ-ଶୁଦ୍ଧିର ସାଧନ ବୋଲି କହିଛନ୍ତି। ଚିତ୍ତ ଶୁଦ୍ଧ ହେବା ଦ୍ୱାରା ହିଁ ପ୍ରସନ୍ନତା ହୁଏ ଓ ସେତେବେଳେ ହିଁ ଚିତ୍ତ ନିରୋଧ ହୁଏ।

୪. ସମସ୍ତ ପ୍ରାଣୀଙ୍କ ହିତରେ ରତ ରହି ନିରଭିମାନ ଏବଂ ନିଃସ୍ୱାର୍ଥ ଭାବେ ସମସ୍ତଙ୍କ ଆତ୍ମାକୁ ସୁଖ ଦେବା ହିଁ ଅନ୍ତଃକରଣ ଶୁଦ୍ଧିର ଉତ୍ତମ ଉପାୟ।

୫. ଅନ୍ତଃକରଣ-ଶୁଦ୍ଧିର ସବୁଠୁଁ ବଳି ଆଉ ଗୋଟିଏ ଉପାୟ ଅଛି, ତାହା ହେଉଛି, ହରିଙ୍କ ନାମ-ଗୁଣ କୀର୍ତ୍ତନ।

୬. ପ୍ରମାଣ, ବିପର୍ଯ୍ୟୟ (ମିଥ୍ୟାଜ୍ଞାନ), ବିକଳ୍ପ (କଳ୍ପନା), ନିଦ୍ରା ଓ ସ୍ମୃତି—ଏଗୁଡ଼ିକ ଚିତ୍ତ (ମନ)ର ପାଞ୍ଚଟି ବୃତ୍ତି ବୋଲି କୁହାଯାଇଛି। ଏଗୁଡ଼ିକର ନିରୋଧର ନାମ ଯୋଗ ଅଟେ।

୭. ବ୍ୟାଧି (ରୋଗ), ସ୍ତ୍ୟାନ (ଅକର୍ମଣ୍ୟତା), ସଂଶୟ, ପ୍ରମାଦ (ବ୍ୟର୍ଥଚେଷ୍ଟା), ଆଳସ୍ୟ, ଅବିରତି (ବୈରାଗ୍ୟର ଅଭାବ), ଭ୍ରାନ୍ତି-ଦର୍ଶନ (ଭ୍ରମ), ଅଲବ୍ଧଭୂମିକତ୍ୱ (ଚିତ୍ତଭୂମିର ଅପ୍ରାପ୍ତି), ଅନବସ୍ଥିତତ୍ୱ (ଚିତ୍ତ ବିଶେଷ ସମୟ ପର୍ଯ୍ୟନ୍ତ ସ୍ଥିର ନ ରହିବା) ଏ ନଅଗୋଟି ଚିତ୍ତର ବିକ୍ଷେପ ବା ଅନବଧାନତା।

୮. ସମସ୍ତ ବିଘ୍ନ ମଧ୍ୟରେ ବ୍ୟାଧି, ଅକର୍ମଣ୍ୟତା, ପ୍ରମାଦ, ଆଳସ୍ୟ, ଆସକ୍ତି ଓ ସ୍ଫୁରଣ—ଏ ଛଅଟି ପ୍ରଧାନ ଅଟନ୍ତି ଓ ଏଗୁଡ଼ିକରେ ମଧ୍ୟ ଆଳସ୍ୟ ଓ ସ୍ଫୁରଣ ବିଶେଷ ବାଧକ।

୯. ଅନ୍ତଃକରଣରେ ଅନେକ ସଂକଳ୍ପ ଉତ୍ପନ୍ନ ହେବାରେ ପୂର୍ବାର୍ଜିତ ସଞ୍ଚିତ ଏବଂ ପ୍ରାରବ୍ଧ କର୍ମଗୁଡ଼ିକର ସଂସ୍କାର ତଥା ମନ୍ଦଅଭ୍ୟାସ ଓ ବିଷୟସମୂହର ଆସକ୍ତି ତଥା ସାଧନ ଆଡ଼କୁ ରୁଚି ନ ହେବାରେ ପୂର୍ବକୃତ ପାପ-କର୍ମ ସମୁଦାୟ ଏବଂ ସଂଶୟ, ଭ୍ରମ ଓ ଅଶ୍ରଦ୍ଧା ହିଁ ପ୍ରଥମ କାରଣ।

୧୦. ଆସକ୍ତିର ନାଶ ପାଇଁ ଏହି ସଂସାରର ଅନିତ୍ୟ, ନାଶବାନ୍ ଓ କ୍ଷଣଭଙ୍ଗୁର ସଂପୂର୍ଣ୍ଣ ପଦାର୍ଥ ଓ ବିଷୟଭୋଗସମୂହରେ ଦୋଷ ଓ ଦୁଃଖଗୁଡ଼ିକୁ ବାରମ୍ବାର ଦେଖି ସେଗୁଡ଼ିକରେ ବୈରାଗ୍ୟ ଏବଂ ସେଗୁଡ଼ିକର ଯଥୋଚିତ ତ୍ୟାଗ କରିବା ଉଚିତ।

୧୧. ପ୍ରାରବ୍ଧ କର୍ମର କ୍ଷୟ ପ୍ରାୟ ଭୋଗଦ୍ୱାରା ହିଁ ହୁଏ ଓ ସଞ୍ଚିତ କର୍ମଗୁଡ଼ିକର ଅର୍ଥାତ୍ ସଂପୂର୍ଣ୍ଣ ପାପସମୂହର ବିନାଶ ନିଷ୍କାମ ଭାବେ ଦୁଃଖୀମନୁଷ୍ୟଙ୍କ ସେବା ତଥା ଈଶ୍ୱରଙ୍କ ନାମ-ଜପ ଦ୍ୱାରା ହୋଇଥାଏ।

୧୨. ମନ୍ଦ ଅଭ୍ୟାସ, ସଂଶୟ, ଭ୍ରମ ଓ ଅଶ୍ରଦ୍ଧାର ବିନାଶ ପାଇଁ ସତ୍‌ପୁରୁଷଙ୍କ ସଂସର୍ଗ ଓ ସତ୍-ଶାସ୍ତ୍ରଗୁଡ଼ିକର ବିଗ୍ଚର ହିଁ ବିଶେଷ ଲାଭପ୍ରଦ।

୧୩. ଯଦ୍ୟପି ମନ ଚଞ୍ଚଳ ଓ ଅସ୍ଥିର, ତଥାପି ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ତାହା ସ୍ଥିର ହୋଇପାରେ।

୧୪. ମହର୍ଷି ପତଞ୍ଜଳିଙ୍କର ଉକ୍ତି ମଧ୍ୟ ଏହା ହିଁ ପ୍ରମାଣିତ କରେ—

**"ଅଭ୍ୟାସବୈରାଗ୍ୟାଭ୍ୟାଂ ତନ୍ନିରୋଧଃ।"** (ଯୋଗ ୧।୧୨)

"ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ତା'ର ନିରୋଧ ହୁଏ।"

୧୫. ସାଂଖ୍ୟର ରଚୟିତା ଭଗବାନ କପିଳଦେବ ମଧ୍ୟ ଅଭ୍ୟାସ ଓ ବୈରାଗ୍ୟକୁ ଚିତ୍ତ-ନିରୋଧର ସାଧନ ବୋଲି କହିଛନ୍ତି—**"ବୈରାଗ୍ୟାଭ୍ୟାସାତ୍"**।

୧୬. ଅଭ୍ୟାସ ଓ ବୈରାଗ୍ୟ ହିଁ ଚିତ୍ତ-ନିରୋଧର ଉପାୟ।

୧୭. ତ୍ରିଗୁଣାତ୍ମକ ସଂସାରର ବିଷୟ-ଭୋଗସମୂହରେ ଓ ସମସ୍ତ ପଦାର୍ଥରେ ତୃଷ୍ଣା ଓ ଆସକ୍ତିର ଆତ୍ୟନ୍ତିକ ଅଭାବର ନାମ ବୈରାଗ୍ୟ।

୧୮. ପରମାତ୍ମାଙ୍କଠାରେ ସ୍ଥିତି ପାଇଁ ଯତ୍ନ କରିବାର ନାମ ଅଭ୍ୟାସ ଅଟେ।

୧୯. ଅଭ୍ୟାସ ନିରନ୍ତର ଦୀର୍ଘକାଳପର୍ଯ୍ୟନ୍ତ ଆଦରପୂର୍ବକ କରାଗଲେ ତାହା ଦୃଢ଼ଭୂମି (ସ୍ଥିତି) ବାନ୍ ହୋଇଥାଏ।

୨୦. ସମସ୍ତ ବିଘ୍ନଗୁଡ଼ିକର ବିନାଶ ଏବଂ ମନର ସ୍ଥିରତାପାଇଁ ସବୁଠୁଁ ଉତ୍ତମ ଏବଂ ସହଜ ଉପାୟ ଈଶ୍ୱରଙ୍କ ନାମ ଜପ ଓ ତାଙ୍କ ସ୍ୱରୂପର ଚିନ୍ତନ ହିଁ ଅଟେ।

୨୧. ଅଭ୍ୟାସର ଅନେକ ପ୍ରଣାଳୀ ଅଛି। ତନ୍ମଧ୍ୟରୁ କୌଣସି ଗୋଟିଏ ଅନୁସାରେ ସାଧନ କଲେ ମନ ସ୍ଥିର ହେବା ସମ୍ଭବପର।

୨୨. ମନ ଯେଉଁଠିକୁ ଯାଉଛି, ସେଠାରୁ ଦୂରେଇ ତାକୁ ନିଜର ଅଧୀନ କରି ପରମାତ୍ମାଙ୍କ ଠାରେ ଲଗାଇବା ଅପେକ୍ଷା, ମନ ଯେଉଁ ସ୍ଥାନକୁ ଯାଉଛି, ସେହିଠାରେ ହିଁ ପରମାତ୍ମାଙ୍କ ସ୍ୱରୂପର ଚିନ୍ତନ କରିବା ଆହୁରି ସହଜ ତଥା ସୁଗମ ଉପାୟ ଅଟେ। ଈଶ୍ୱର ସର୍ବତ୍ର ବ୍ୟାପକ ଅଟନ୍ତି, ନିଜ ବୁଝିବା ଅନୁସାରେ ଶ୍ରଦ୍ଧା ଓ ପ୍ରେମଦ୍ୱାରା ସେହି ପରମେଶ୍ୱରଙ୍କର ସର୍ବତ୍ର ଚିନ୍ତନ କଲେ ଚିତ୍ତ-ବୃତ୍ତିଗୁଡ଼ିକର ନିରୋଧ ହୋଇଯାଏ।

୨୩. ନିଜର ଇଷ୍ଟଦେବ ଯିଏ ହୋଇଥିବେ, ତାଙ୍କରି ମୂର୍ତ୍ତି ବା ଚିତ୍ରକୁ ସମ୍ମୁଖରେ ରଖି, ଶ୍ରଦ୍ଧା ଓ ପ୍ରେମର ସହିତ ସେହି ଭଗବାନଙ୍କ ମୁଖାରବିନ୍ଦରେ ନେତ୍ରଯୁଗଳର ବୃତ୍ତିକୁ ସ୍ଥିର କରି ନିଜ ଉପରେ ଭଗବାନଙ୍କର ଅପାର ଦୟା ଓ ପ୍ରେମ ଥିବା ଅନୁଭବ କରି କରି ସେହି ଆନନ୍ଦମୟ ପରମେଶ୍ୱରଙ୍କ ମୁଖକମଳ ଉପରେ ମନରୂପୀ ଭ୍ରମରକୁ ସ୍ଥାପନ କରିବାଦ୍ୱାରା ଚିତ୍ତବୃତ୍ତିଗୁଡ଼ିକ ଏକାଗ୍ର ହୋଇ ନିରୁଦ୍ଧ ହୁଅନ୍ତି।

୨୪. ପ୍ରାତଃକାଳରେ ସୂର୍ଯ୍ୟଙ୍କ ସମ୍ମୁଖରେ ଠିଆ ହୋଇ ତାଙ୍କ ଆଡ଼କୁ ମୁଖ କରି ଆଖି ବୁଜିଲେ ସୂର୍ଯ୍ୟଙ୍କର ଏକ ମହାନ୍ ତେଜପୁଞ୍ଜ ସର୍ବତ୍ର ସମଭାବରେ ବ୍ୟାପ୍ତ ଜଣାଯାଏ। ତାକୁ ଲକ୍ଷ୍ୟ କରି ତା'ଠାରୁ ହଜାରେ ଗୁଣ ଅଧିକ ଏକ ତେଜପୁଞ୍ଜ ଆକାଶ ଭଳି ସର୍ବତ୍ର ସମାନଭାବେ ପରିପୂର୍ଣ୍ଣ ହେଉଅଛି, ତା'ଅତିରିକ୍ତ ଆଉ କିଛି ନାହିଁ, ତାହା ହିଁ ପରମାତ୍ମାଙ୍କ ତେଜୋମୟ ସ୍ୱରୂପ ଅଟେ। ଏ

ପ୍ରକାର ବୁଦ୍ଧି ସଂପୂର୍ଣ୍ଣ ସଂସାରକୁ ଭୁଲି ସେହି ତେଜୋମୟ ପରମାତ୍ମାଙ୍କ ସ୍ୱରୂପରେ ଚିତ୍ତ-ବୃତ୍ତିଗୁଡ଼ିକୁ ଲଗାଇବାଦ୍ୱାରା ଚିତ୍ତ ସ୍ଥିର ହୋଇପାରେ ।

୨୫. ଦଧୀଚି, ଋଷଭଦେବ, ଜଡ଼ଭରତ, ଶୁକଦେବ ଆଦି ଉଦାସୀନ ମୁନିମାନଙ୍କ ଚରିତ୍ରକୁ ମନନ କରିବାଦ୍ୱାରା ସ୍ୱାଭାବିକ ହିଁ ବୈରାଗ୍ୟ ପ୍ରାପ୍ତି ହୋଇଥାଏ । ଏଣୁ ଯେଉଁମାନେ ବୀତରାଗ ମୁନି ଅଟନ୍ତି, ସଂସାର ପ୍ରତି ଯେଉଁମାନଙ୍କର ଆସକ୍ତି ଆଦୌ ନାହିଁ, ସେପରି ଜ୍ଞାନୀ ମହାତ୍ମାଙ୍କୁ ଧ୍ୟାନ କଲେ ମଧ୍ୟ ହୃଦୟରେ ବୈରାଗ୍ୟ ଜାତ ହୋଇ ଚିତ୍ତ-ବୃତ୍ତିସମୂହର ନିରୋଧ ହୋଇପାରେ । ଚିତ୍ତ-ବୃତ୍ତିସମୂହକୁ ନିରୋଧ କରିବାର ଏହା ଗୋଟିଏ ସରଳ ଉପାୟ ଅଟେ । ମହର୍ଷି ପତଞ୍ଜଳି କହିଛନ୍ତି—**''ବୀତରାଗବିଷୟଂ ବା ଚିତ୍ତମ୍''** (୧ । ୩୭) ''ଅଥବା ବୀତରାଗ ପୁରୁଷଙ୍କ ଚିନ୍ତନରେ ଚିତ୍ତ ସ୍ଥିର ହୋଇଯାଏ ।''

୨୬. ହୃଦୟଦେଶରେ ଗୋଟିଏ ସୁଷୁମ୍ନା ନାମକ ନାଡ଼ୀ ଅଛି, ସେହି ନାଡ଼ୀରେ ପରମାନନ୍ଦ ବିରାଜମାନ । ଯଦି ତାହାର ପ୍ରତ୍ୟେକ ଗତି ସହ ଓଁ ଜପ କରି ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କ ଭାବନା ସେହି ନାଡ଼ୀରେ କରାଯାଏ, ତେବେ ଚିତ୍ତ-ବୃତ୍ତିସମୂହ ସ୍ଥିର ହୋଇ ପରମାତ୍ମପ୍ରାପ୍ତି ହୋଇପାରେ । ମହର୍ଷି ପତଞ୍ଜଳି ମଧ୍ୟ କହିଛନ୍ତି—

**''ବିଶୋକା ବା ଜ୍ୟୋତିଷ୍ମତୀ''** (୧ । ୩୬)

''ଅଥବା ଶୋକରହିତ ପ୍ରକାଶମୟ ଚିତ୍ତର ଅବସ୍ଥାବିଶେଷ ମଧ୍ୟ ମନକୁ ସ୍ଥିର କରାଇଥାଏ ।'' ଏହି ଅବସ୍ଥା ଉପର୍ଯ୍ୟୁକ୍ତ ପ୍ରକାରରେ ସୁଷୁମ୍ନା ନାଡ଼ୀରେ ଧ୍ୟାନ କଲେ ପ୍ରାପ୍ତ ହୋଇପାରେ ।

୨୭. ଯେଉଁଠାରେ ବାହାରର ବାଧା ସୃଷ୍ଟିକାରକ ତୀବ୍ର ଧ୍ୱନି ଶୁଣା ନ ଯିବ, ସେପରି ଏକାନ୍ତ ଓ ପବିତ୍ର ସ୍ଥାନରେ, ଏକାକୀ ସ୍ୱସ୍ତିକ ଆଦି କୌଣସି ଆସନରେ ସୁଖପୂର୍ବକ ବସି ଦୁଇ ଆଙ୍ଗୁଳିରେ କାନର ଦୁଇ ଛିଦ୍ରକୁ ବନ୍ଦ କରି ନିଜ ଭିତରେ ଆପେ ଆପେ ହିଁ ହେଉଥିବା ଦିବ୍ୟ ଶବ୍ଦ ଶୁଣିବାରେ ଧ୍ୟାନ ଲଗାନ୍ତୁ । ସେହି ଶବ୍ଦରେ 'ରାମ', 'ଶିବ' ବା 'ଓଁ' ଭାବନା କଲେ ଭାବନା ଅନୁସାରେ ହିଁ ଧ୍ୱନି ଶୁଣାଯିବ । ସେହି ଶବ୍ଦରେ ବ୍ରହ୍ମ ଭାବନା କଲେ ଚିତ୍ତ-ବୃତ୍ତିସମୂହର ନିରୋଧ ହୋଇ ମନୁଷ୍ୟକୁ ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କ ପ୍ରାପ୍ତି ହୋଇଯାଏ ।

୨୮. ଭ୍ରମର ଗୁଞ୍ଜନ ଭଳି ଅବିଚ୍ଛିନ୍ନ ଓଁକାର ଧ୍ୱନି କରି ସେଥିରେ ପରମେଶ୍ୱରଙ୍କ ସ୍ୱରୂପ ଭାବନା କରିବାଦ୍ୱାରା ଚିତ୍ତ-ବୃତ୍ତିସମୂହ ପରମାତ୍ମାଙ୍କ ଠାରେ ସ୍ଥିର ହୋଇପାରନ୍ତି ।

୨୯. ଯେଉଁ ସ୍ୱରୂପରେ ନିଜର ଶ୍ରଦ୍ଧା ଓ ପ୍ରେମ ଥିବ, ତାହାକୁ ଧ୍ୟାନ କରିବା ଦ୍ୱାରା ଚିତ୍ତବୃତ୍ତିସମୂହ ନିରୁଦ୍ଧ ହୋଇ ଯାଆନ୍ତି । ମହର୍ଷି ପତଞ୍ଜଳି ମଧ୍ୟ କହିଛନ୍ତି—

**"ଯଥାଭିମତଧ୍ୟାନାଦ୍ ବା"** (ଯୋଗ ୧ । ୩୯)

"ଯାହାର ଯାହା ଅଭୀଷ୍ଟ, ସେଥିରେ ଧ୍ୟାନ ଲଗାଇବାଦ୍ୱାରା ମଧ୍ୟ ଚିତ୍ତରେ ଏକାଗ୍ରତା ଆସି ବୃତ୍ତିସମୂହର ନିରୋଧ ହୋଇପାରେ ।"

୩୦. ଓଁକାରର ସ୍ମରଣ କରି କରି ଶ୍ୱାସକୁ ବାହାରକୁ ଛାଡ଼ି ତାକୁ ଯଥାଶକ୍ତି ସୁଖପୂର୍ବକ ବାହାରେ ହିଁ ବାରମ୍ବାର ସ୍ଥିର କରିବା ଓ ସେଥିରେ ପରମେଶ୍ୱରଙ୍କ ଭାବନା କରିବାଦ୍ୱାରା ଚିତ୍ତ-ବୃତ୍ତିସମୂହର ନିରୋଧ ହୁଏ । ମହର୍ଷି ପତଞ୍ଜଳି କହିଛନ୍ତି—

**"ପ୍ରଚ୍ଛର୍ଦନବିଧାରଣାଭ୍ୟାଂ ବା ପ୍ରାଣସ୍ୟ"** (ଯୋଗ ୧ । ୩୪)

"ଅଥବା ପ୍ରାଣକୁ ବାହାରକୁ ଛାଡ଼ିବା ଓ ସ୍ଥିର ରଖିବାଦ୍ୱାରା ଚିତ୍ତ-ବୃତ୍ତିସମୂହର ନିରୋଧ ହୁଏ ।"

୩୧. ପବିତ୍ର ଏକାନ୍ତ ସ୍ଥାନରେ ସୁଖପୂର୍ବକ ଆସନରେ ବସି ନେତ୍ରଯୁଗଳକୁ ବନ୍ଦ କରି ଓ ସମସ୍ତ ଇନ୍ଦ୍ରିୟବୃତ୍ତିସମୂହକୁ ବିଷୟସମୂହରୁ ନିବୃତ୍ତ କରାଇ ସଂପୂର୍ଣ୍ଣ କାମନା ଓ ସଂକଳ୍ପଗୁଡ଼ିକୁ ତ୍ୟାଗ କରି ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କ ଚିନ୍ତନ କରିବା ଉଚିତ । କୌଣସି ସ୍ଫୁରଣ ଚିତ୍ତରେ ଥିଲେ ସେହି ସମୟରେ ତାକୁ ତ୍ୟାଗ କରିଦେବା ଉଚିତ ଅର୍ଥାତ୍ ବୈରାଗ୍ୟଯୁକ୍ତ ଚିତ୍ତରେ ସଂସାର ଓ ଶରୀରକୁ ଏହି ପ୍ରକାର ବିସ୍ମରଣ କରିବା ଉଚିତ ଯେପରି ସେଗୁଡ଼ିକ ଆଦୌ ନାହାନ୍ତି । ଏ ପ୍ରକାର କରିବା ହିଁ ବୈରାଗ୍ୟରୂପୀ ଶସ୍ତ୍ରଦ୍ୱାରା ସଂସାର-ବୃକ୍ଷକୁ ଛେଦନ କରିବା ଅଟେ ।

୩୨. ବିବେକ-ବୁଦ୍ଧିଦ୍ୱାରା ସାମ, ଦାମ, ଦଣ୍ଡ ଓ ଭେଦ ନୀତିରେ ମନକୁ ବୁଝାଇଲେ ପରମାତ୍ମାଙ୍କ ଠାରେ ଚିତ୍ତର ଏକାଗ୍ରତା ଓ ସ୍ଥିତି ହୋଇ ପରମାତ୍ମାଙ୍କ ପ୍ରାପ୍ତି ହୁଏ । ଏହା ପରମାତ୍ମାଙ୍କୁ ପାଇବାର ଗୋଟିଏ ଉତ୍ତମ ଉପାୟ ଅଟେ ।

୩୩. ମନକୁ ମିତ୍ର ଭାବି ପ୍ରେମରେ ବୁଝାଇବାର ନାମ ସାମ-ନୀତି ଅଟେ; ଯଥା—ରେ ମନ! ଯେଉଁ ସଂସାରର ବିଷୟଗୁଡ଼ିକୁ ତୁ ସୁଖରୂପ ଭାବି ଚିନ୍ତନ କରୁଛୁ, ବାସ୍ତବରେ ସେଗୁଡ଼ିକରେ ଲେଶମାତ୍ର ସୁଖ ନାହିଁ। ଭ୍ରାନ୍ତିରେ ହିଁ ତୋତେ ସୁଖର ଆଭାସ ମିଳୁଛି। ଏଣୁ ତୁ ବିଗ୍ଚର କରିବା ଉଚିତ, ନୋଚେତ୍ ଭବିଷ୍ୟତରେ ବହୁତ ପଶ୍ଚାତ୍ତାପ କରିବାକୁ ପଡ଼ିବ।

୩୪. ମନକୁ ଲୋଭ ଦେଖାଇବାର ନାମ ଦାମ-ନୀତି ଅଟେ। ଯଥା—ରେ ମନ! ବିଷୟସମୂହରେ ଯେଉଁ ସୁଖ ଅଛି, ତାହା ଦେଶ ଓ କାଳଦ୍ୱାରା ପରିମିତ ହେବାରୁ ଅନିତ୍ୟ ଓ କ୍ଷଣଭଙ୍ଗୁର ଅଟେ। ପରମାନନ୍ଦ ପରମାତ୍ମାଙ୍କ ପ୍ରାପ୍ତି ସମ୍ମୁଖରେ ଏହି ସାଂସାରିକ ସୁଖ ସୂର୍ଯ୍ୟସମ୍ମୁଖରେ ଖଦ୍ୟୋତ ସଦୃଶ ମଧ୍ୟ ନୁହେଁ। ଏପରି ନାଶବାନ୍ କ୍ଷଣଭଙ୍ଗୁର ସାଂସାରିକ ସୁଖ ଆଡୁ ବୃତ୍ତିସମୂହକୁ ଦୂରେଇ ଦେଇ ନିତ୍ୟ ଶାନ୍ତିମୟ ଓ ଆନନ୍ଦମୟ ସୁଖ ପାଇଁ ହିଁ ଚେଷ୍ଟା କରିବା ଉଚିତ।

୩୫. ସାଂସାରିକ ସୁଖଗୁଡ଼ିକୁ ପାଇବାରେ ଯେତେ ପରିଶ୍ରମ ହୁଏ, ପରମାନନ୍ଦପ୍ରାପ୍ତିରେ ସେତିକି ପରିଶ୍ରମ ନାହିଁ। ଯେଉଁମାନେ ଏହାର ରହସ୍ୟ ଜାଣି ପାରନ୍ତି, ସେମାନଙ୍କର ସାଧନ କାଳରେ ମଧ୍ୟ ଉତ୍ତରୋତ୍ତର ସାତ୍ତ୍ୱିକ ସୁଖ ବୃଦ୍ଧି ପାଏ। ତେଣୁ ଏହି ସାଂସାରିକ ଭୋଗ ଆଡ଼କୁ ଯାଇ ତୁ ସେହି ସତ୍ୟ ସୁଖ ପ୍ରାପ୍ତି ପାଇଁ କଟିବଦ୍ଧ ହୋଇ ପରମାତ୍ମାଙ୍କ ଠାରେ ନିଜକୁ ନିୟୋଜିତ କରିବା ଉଚିତ।

୩୬. ଯଦି ମନ ସାମ ବା ଦାମ ନୀତି ଦ୍ୱାରା ନ ମାନେ, ତା'ହେଲେ ତାକୁ ଦଣ୍ଡନୀତିଦ୍ୱାରା ଅଟକାଇବାକୁ ଚେଷ୍ଟା କରିବା ଉଚିତ। ଭୟ ଦେଖାଇ ବଶୀଭୂତ କରିବାର ନାମ ଦଣ୍ଡ-ନୀତି ଅଟେ। ଯେପରି ରାଜା ଶତ୍ରୁକୁ ଭୟ ଦେଖାଇ ତାକୁ ନିଜ ଅଧୀନସ୍ଥ କରିଥାଏ, ସେହିପରି ମନକୁ ନିଜ ଅଧୀନ କରିବା ଉଚିତ। ଯଥା—ରେ ମନ! ଯଦି ତୁ ସଂସାର ଓ ବିଷୟସମୂହର ଚିନ୍ତନ କରିବୁ, ତା'ହେଲେ ମୁଁ ସଂପୂର୍ଣ୍ଣ ଭୋଗକୁ ତ୍ୟାଗ କରି ବଣରେ ବା ପର୍ବତ ଗୁମ୍ଫାକୁ ଯାଇ ବ୍ରତ-ଉପବାସାଦି ତପଦ୍ୱାରା ବୃତ୍ତିସମୂହକୁ ଶମନ କରିବି।

୩୭. ବିଗ୍ଚର କଲେ ଜଣାଯାଏ ଯେ ତୁ ହିଁ ମୋର ମହାନ୍ ଶତ୍ରୁ। ଏଣୁ ଯେ କୌଣସି ପ୍ରକାରେ ତୋର ବିନାଶ କରିବା ଉଚିତ। ନୋଚେତ୍ ଏହି

ଦୁଃଖମୟ ସଂସାରର ଚିନ୍ତନ ଛାଡ଼ି ଶୀଘ୍ର ଅମୃତମୟ ପରମାତ୍ମାଙ୍କ ଚିନ୍ତନ କର, ଯାହାଦ୍ୱାରା ତୋର ଓ ମୋର ଉଭୟଙ୍କର କଲ୍ୟାଣ ହେବ ।

୩୮. ନିଜ ଉଦ୍ଦେଶ୍ୟର ସିଦ୍ଧି ପାଇଁ ଦୁଇ ମିତ୍ର ବା ସମ୍ବନ୍ଧୀୟଙ୍କ ଠାରେ ପରସ୍ପରର ଦୋଷ ଦେଖାଇ ସେମାନଙ୍କଠାରେ ବୈମନସ୍ୟ ଉତ୍ପନ୍ନ କରାଇ ଦେବାର ନାମ ଭେଦନୀତି ଅଟେ । ବିଷୟଭୋଗସମୂହକୁ ନେଇ ମନ ଓ ଇନ୍ଦ୍ରିୟଙ୍କର ପରସ୍ପର ମଧ୍ୟରେ ଯେଉଁ ପ୍ରୀତି ଅଛି, ତାକୁ ଛିଡ଼ାଇବାପାଇଁ ଏହି ଭେଦନୀତି ପ୍ରୟୋଗ କରିବା ଉଚିତ । ପ୍ରଥମେ ଇନ୍ଦ୍ରିୟଙ୍କୁ ଏପରି ବୁଝାଇବା ଉଚିତ ଯେ, ହେ ଇନ୍ଦ୍ରିୟଗଣ! ଏହି ମନ ବଡ଼ ଚଞ୍ଚଳ, ଲୋଭୀ ଏବଂ ମୂର୍ଖ । ମନର କଥା ଶୁଣି ବିନା ବିଗ୍ୱରରେ ହଠାତ୍ କୌଣସି କାମରେ ନ ଲାଗିବା ଉଚିତ ।

**ମନ ଲୋଭୀ ମନ ଲାଲଚୀ, ମନ ଚଞ୍ଚଲ ମନ ଗ୍ୱେର ।**
**ମନକେ ମତେ ନ ଗ୍ୱଲିୟେ, ପଲକ-ପଲକ ମନ ଓର ॥**

ଅତଏବ ତୁମେ ଯଦି ନିଜର ହିତ ଗ୍ୱହୁଁଥାଅ, ତା'ହେଲେ ପାପାଗ୍ୱର ଓ ବିଷୟସେବନ ତ୍ୟାଗ କର ଏବଂ ବୁଦ୍ଧିର ଆଶ୍ରୟ ଗ୍ରହଣ କରି ନିଜର କଲ୍ୟାଣ ପାଇଁ ସଦାଗ୍ୱର ଓ ପରମେଶ୍ୱରଙ୍କ ସେବା-ପୂଜାଦିରେ ଲାଗିଯାଅ ।

ପୁଣି ମନ୍‌କୁ ବୁଝାଇବା ଉଚିତ ଯେ ଏହି ଇନ୍ଦ୍ରିୟଗୁଡ଼ିକ ନିଜର ଉଦ୍ଦେଶ୍ୟ ପୂରଣ ପାଇଁ ତୋ ସହାୟତାରେ ବିଷୟସେବନ କରୁଛନ୍ତି ଓ ନିଜର ଅଭିପ୍ରାୟ ସିଦ୍ଧ କରି ତୋତେ ବଡ଼ ଦୁଃଖର ଖାତରେ ପକାଇ ଦେଉଛନ୍ତି । ଏଣୁ ରେ ମନ! ଯଦି ତୁ ଅସାବଧାନତା କାରଣରୁ ନିଜକୁ ସଂଯତ ନ କରିବୁ, ତା'ହେଲେ କୋଟି-କୋଟି ଜୀବଙ୍କର ଯେଉଁ ଦଶା ହେଉଛି, ସେହି ଦଶା ତୋର ହେବ, ଅତଏବ ତୁ ସାବଧାନ ହୋଇଯା' ଏବଂ ମନୁଷ୍ୟର ଅମୂଲ୍ୟ ଜୀବନର ଗୋଟିଏ ମୁହୂର୍ତ୍ତ ମଧ୍ୟ ବ୍ୟର୍ଥରେ ଅତିବାହିତ କରନା । ମନୁଷ୍ୟ ଜୀବନର ଗୋଟିଏ ମୁହୂର୍ତ୍ତ ମଧ୍ୟ ଈଶ୍ୱର-ଚିନ୍ତନ ବିନା ବିତେଇବା ନିଜେ ନିଜକୁ ମୃତ୍ୟୁ ମୁଖକୁ ଠେଲିଦେବା ସଙ୍ଗେ ସମାନ । ଅତଏବ ସଂସାରଚିନ୍ତନକୁ ମୃତ୍ୟୁ ସମାନ ବୁଝି ତା'ଠାରୁ ଦୂରେଇ ପ୍ରତ୍ୟେକ ସମୟରେ ଈଶ୍ୱରଙ୍କ ଚିନ୍ତନ କରିବା ଉଚିତ ।

୩୯. ବ୍ୟବହାରକାଳରେ ବୃତ୍ତିସମୂହ ସଂସାରର ବସ୍ତୁ ଆଡ଼କୁ ଯିବାବେଳେ ସର୍ବତ୍ର ଈଶ୍ୱରଙ୍କ ଚିନ୍ତନ କରିବା ଉଚିତ ।

୪୦. ଏହିପ୍ରକାର ମନକୁ ବୁଝାଇ ନିତ୍ୟ-ନିରନ୍ତର ଭଗବାନଙ୍କ ଚିନ୍ତନରେ ଲଗାଇଲେ ତାହା ସ୍ଥିର ହୋଇଯାଏ ଓ ସାଧକକୁ ପରମାତ୍ମାଙ୍କ ପ୍ରାପ୍ତି ହୋଇଯାଏ।

୪୧. ମନ ସ୍ୱତନ୍ତ୍ର ହୋଇ ଉଦ୍ଦଣ୍ଡ ହୋଇଯାଇଛି। ଅତଏବ ମନୁଷ୍ୟ ନିଜ ସାମର୍ଥ୍ୟ ଆଡ଼କୁ ଧ୍ୟାନ ଦେଇ ସାମ, ଦାମ ଆଦି ନୀତିଦ୍ୱାରା ମନର ମନ୍ଦ ଅଭ୍ୟାସସମୂହକୁ ଦୂର କରି ତା'ର ଉଦ୍ଦଣ୍ଡତାକୁ ବିନାଶ କରି ତାକୁ ରାସ୍ତାକୁ ଆଣିବାପାଇଁ ତୀବ୍ର ଅଭ୍ୟାସ କରୁ।

୪୨. ଉତ୍ସାହୀ ପୁରୁଷ ନିଶ୍ଚୟ ମନକୁ ବଶ କରି ପାରନ୍ତି।

୪୩. ଏହା ମନେ ରଖିବା ଉଚିତ ଯେ ଆତ୍ମା ସମ୍ମୁଖରେ ମନର ଶକ୍ତି ଅତ୍ୟନ୍ତ ତୁଚ୍ଛ। ଆତ୍ମା ମନ ଅପେକ୍ଷା ସବୁ ପ୍ରକାରେ ଶ୍ରେଷ୍ଠ ଓ ବଳବାନ୍ ଅଟେ।

୪୪. ସାଧକ ସର୍ବାଗ୍ରେ ମନକୁ ନିଜର ଅଧୀନ, ଶୁଦ୍ଧ ଓ ଏକାଗ୍ର କରିବା ଉଚିତ।

୪୫. ସାଧକ ଦେଖିବା ଉଚିତ ଯେ—ମୋ ମନ ମୋ ଅଧୀନ, ଶୁଦ୍ଧ, ଏକାଗ୍ର ଓ ବିଷୟସମୂହ ପ୍ରତି ଉଦାସୀନ ହୋଇଛି କି ନାହିଁ। କାରଣ ଯେପର୍ଯ୍ୟନ୍ତ ମନ ଓ ଇନ୍ଦ୍ରିୟମାନଙ୍କ ଉପରେ ପୂରା ଅଧିକାର ହୋଇ ନ ଯିବ, ସେପର୍ଯ୍ୟନ୍ତ ପରମାତ୍ମାଙ୍କ ପ୍ରାପ୍ତି ବହୁତ କଠିନ।

୪୬. ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ମନକୁ ଶୁଦ୍ଧ, ନିଜର ଅଧୀନ, ଏକାଗ୍ର ଓ ବୈରାଗ୍ୟସଂପନ୍ନ କରି ଭଗବାନଙ୍କ ସ୍ୱରୂପରେ ନିରନ୍ତର ଅଚଳ-ସ୍ଥିର କରିବା ପାଇଁ ଧ୍ୟାନ ସାଧନ କରିବା ଉଚିତ।

୪୭. ଚିତ୍ତକୁ ସ୍ଥିର କରିବା ପାଇଁ ଯେଉଁ ସାଧନ କରାଯାଏ, ତାହାରି ନାମ "ଅଭ୍ୟାସ" ଅଟେ।

୪୮. ମନ ଓ ଇନ୍ଦ୍ରିୟସମୂହ ସଂଯମ ହେବାଦ୍ୱାରା ରାଗ-ଦ୍ୱେଷ, ହର୍ଷ-ବିଷାଦ ସହଜରେ ନଷ୍ଟ ହୋଇପାରେ।

୪୯. ଯେପର୍ଯ୍ୟନ୍ତ ମନରେ ବିଷୟାସକ୍ତି ଅଛି, ସେପର୍ଯ୍ୟନ୍ତ ଚିତ୍ତ ବଶୀଭୂତ ହେବା କଠିନ। ବିଷୟାସକ୍ତିର ବିନାଶ ପାଇଁ ବୈରାଗ୍ୟ ହିଁ ପ୍ରଧାନ ଉପାୟ।

୫୦. ଯେପରି ଛୋଟ ପିଲାଟିଏ ହାତରେ ଛୁରୀ ବା କଇଁଚି ଧରିଲେ ତା'ମାଆ ତାକୁ ବୁଝାଇ ଛଡ଼ାଇନିଏ। ଯଦି ମୂର୍ଖତା ଯୋଗୁଁ ପିଲାଟି ତାହା ଛାଡ଼ିବାକୁ ବା ଦେବାକୁ ଚାହେଁ ନାହିଁ, ତା'ହେଲେ ମାଆ ତା'ର କାନ୍ଦଣାକୁ

ଖାତିରି ନ କରି ଜବରଦସ୍ତି କରି ଛଡ଼ାଇ ନିଏ। ସେହିପରି ଏହି ମନକୁ ବୁଝାଇ ଅନ୍ୟ ପଦାର୍ଥଗୁଡ଼ିକର ଚିନ୍ତନ ପରିତ୍ୟାଗ କରିବା ଉଚିତ, କାରଣ ଏହି ମନ ମଧ୍ୟ ବାଳକ ପରି ଚଞ୍ଚଳ ଅଟେ। ପରିଣାମରେ ହେବାକୁ ଥିବା କ୍ଷତି ବିଷୟରେ ବିଗ୍ଚର କରେ ନାହିଁ।

୫୧. ଯାହାର ଚିତ୍ତ ସଂଯତ, ସେ ହିଁ ପ୍ରଯତ୍ନ କଲେ ଭଗବାନଙ୍କ ପ୍ରାପ୍ତି କରିପାରେ। ବ୍ୟଭିଗ୍ଚରିଣୀ ବୃତ୍ତିସମୂହଦ୍ୱାରା ଭଗବାନଙ୍କୁ ଧରିବା ବା ପାଇବା କେବଳ କଠିନ ନୁହେଁ, ବରଂ ଅସମ୍ଭବ ମଧ୍ୟ।

୫୨. ଯେବେ ପ୍ରିୟ ଓ ଅପ୍ରିୟର ପ୍ରାପ୍ତିରେ ହର୍ଷ-ଶୋକ ହୁଏ ନାହିଁ ତଥା ମନ ଓ ଇନ୍ଦ୍ରିୟଙ୍କ ସହ ବିଷୟସମୂହର ସଂପର୍କ ହେଲେ ମଧ୍ୟ ଚିତ୍ତରେ କୌଣସି ପ୍ରକାରର ବିକାର ଉତ୍ପନ୍ନ ହୁଏ ନାହିଁ, ତେବେ ବୁଝିବା ଉଚିତ ଯେ ସେ ପ୍ରକୃତ ଜିତେନ୍ଦ୍ରିୟ "ସଂଯମୀ" ପୁରୁଷ ଅଟେ।

୫୩. ଚିତ୍ତ-ନିରୋଧ ପାଇଁ ମହର୍ଷି ପତଞ୍ଜଳି ଆଉ ଗୋଟିଏ ସୁଗମ ଉପାୟ ବତାଇଛନ୍ତି–ତାହା ହେଲା ବୈରାଗ୍ୟବାନ୍ ପୁରୁଷଙ୍କ ଧ୍ୟାନ। **"ବୀତରାଗବିଷୟଂ ବା ଚିତ୍ତମ୍"** (୧।୩୭)

୫୪. ରାତିରେ ଶୋଇବା ପୂର୍ବରୁ ବା ରାତି ପାହାନ୍ତାରୁ ଜାଗି ଉଠି ଯେବେ ଆଳସ୍ୟ ଆଦୌ ଆସୁ ନ ଥିବ, ନେତ୍ର ଓ କର୍ଣ୍ଣଯୁଗଳକୁ ଆଙ୍ଗୁଳିରେ ବନ୍ଦ କରି ଭିତରେ ହେଉଥିବା ଦିବ୍ୟ ଧ୍ୱନିକୁ ଶୁଣିବା ଓ ସେଥିରେ ନିଜ ଇଷ୍ଟଦେବଙ୍କ ନାମର ଭାବନା କରିବା ଉଚିତ। ନାମ ବହୁତ ଛୋଟ ଦୁଇ ଅକ୍ଷରର ହିଁ ହେବା ଉଚିତ–ଯଥାଃ ଓମ୍, ରାମ, ଶିବ, ହରି, ବିଷ୍ଣୁ, କୃଷ୍ଣ ଇତ୍ୟାଦି। ପ୍ରଥମେ ରେଲ ଇଞ୍ଜିନ ସଦୃଶ ଶବ୍ଦ ଶୁଣାଯିବ, ପୁଣି ଘଡ଼ିର ଶବ୍ଦ ପରି ଶୁଣାଯିବ ଏବଂ ତା'ପରେ ଧୀରେ ଧୀରେ ଯେଉଁ ନାମର ଆମେ ଭାବନା କରୁଛୁ, ସେହି ନାମ ଆମକୁ ସ୍ପଷ୍ଟରୂପେ ଶୁଣାଯିବାରେ ଲାଗିବ ଏବଂ ସେଇଥିରେ ଆମ ମନ ସ୍ଥିର ହୋଇଯିବ।

୫୫. କଲିଜା ଭିତରେ ହୃଦୟାକାଶରେ ଯେଉଁ ଗୋଟିଏ ନାଡ଼ୀ ଅଛି, ଯାହାକୁ ସୁଷୁମ୍ନା କହନ୍ତି, ତା'ଭିତରେ ସମସ୍ତ ପ୍ରାଣୀଙ୍କର ହୃଦୟଦେଶରେ ସ୍ଥିତ ପରମାତ୍ମାଙ୍କ ବିଜ୍ଞାନାନନ୍ଦଘନ ସ୍ୱରୂପର ଧ୍ୟାନ କର। ଏପରି ବୁଝିବ ଯେ ସେଠାରେ ଚେତନତା ଓ ଆନନ୍ଦର ପୁଞ୍ଜ ଏକତ୍ରିତ ହେଉଛି। ଚେତନତା ସେହି ଗୁଣର ନାମ ଅଟେ, ଯେଉଁ କାରଣରୁ ଆମେ ଜଡ଼ ପଦାର୍ଥଗୁଡ଼ିକରୁ ଚେତନ ଜୀବର ଓ ମୃତ

ପ୍ରାଣୀଙ୍କଠାରୁ ଜୀବିତ ପ୍ରାଣୀର ଭେଦ ଜାଣି ପାରୁଁ। ଶୁଦ୍ଧ ଆନନ୍ଦର ବା କେବଳ ଚେତନତାର ଧ୍ୟାନ କରିବାଦ୍ୱାରା ମଧ୍ୟ ଚିତ୍ତ ସ୍ଥିର ହୋଇଯାଏ।

୫୬. ଭୃକୁଟୀ ମଧ୍ୟସ୍ଥିତ ଆଜ୍ଞାଚକ୍ରରେ ପୂର୍ଣ୍ଣିମା ଚନ୍ଦ୍ରର ପ୍ରକାଶ ଭଳି ଶୀତଳ ଏବଂ ସୌମ୍ୟ ପ୍ରକାଶରୂପେ ପରମାତ୍ମାଙ୍କ ଧ୍ୟାନ କରିବା ଦ୍ୱାରା ମନର ନିଗ୍ରହ ବା ଅବରୋଧ ହୋଇପାରେ।

୫୭. ଶ୍ୱାସ ଏବଂ ପ୍ରଶ୍ୱାସର ସ୍ୱାଭାବିକ ଗତି ସହିତ ଭଗବାନଙ୍କର କୌଣସି ନାମକୁ ଯୋଗ କରି ସାକ୍ଷୀରୂପେ ତାହାର ଶ୍ରବଣ କରିବାର ଅଭ୍ୟାସ ମଧ୍ୟ ମନକୁ ନିଗୃହୀତ କରିବାରେ ସହାୟକ ହୁଏ।

୫୮. ପରମାତ୍ମାଙ୍କ ସ୍ୱରୂପ ସମ୍ବନ୍ଧରେ ଯାହାକିଛି ଆମେ ପଢ଼ିଛୁ ବା ଶୁଣିଛୁ, ମନନପୂର୍ବକ ତାହା ଉପରେ ବିଚାର କଲେ ତାଙ୍କର ଯେଉଁ ରୂପକୁ ଆମ ବୁଦ୍ଧି ଗ୍ରହଣ କରିପାରିବ, ସେଇଥିରେ ଧ୍ୟାନ ଲଗାଇଲେ ମନର ନିରୋଧ ହୋଇପାରେ।

୫୯. ଭଗବାନଙ୍କ ଶ୍ରୀରାମ, କୃଷ୍ଣ, ଶିବ, ବିଷ୍ଣୁ, ସୂର୍ଯ୍ୟ, ଶକ୍ତି ବା ବିଶ୍ୱରୂପ ଆଦି ଯେକୌଣସି ସ୍ୱରୂପକୁ ମଧ୍ୟ ସର୍ବୋପରି, ସର୍ବାନ୍ତର୍ଯ୍ୟାମୀ, ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବଶକ୍ତିମାନ୍ ଏବଂ ପରମ ଦୟାଳୁ, ପ୍ରେମାସ୍ପଦ ପରମାତ୍ମାଙ୍କ ସ୍ୱରୂପ ବୁଝି ନିଜ ରୁଚି ଅନୁସାରେ ତାଙ୍କ ଚିତ୍ରପଟ ବା ପ୍ରତିମା ସ୍ଥାପନ କରି ଅଥବା ମନଦ୍ୱାରା ହୃଦୟରେ ବା ବାହାରେ ତାଙ୍କୁ ପ୍ରତ୍ୟକ୍ଷସଦୃଶ ଅନୁଭବ କରି ଅତିଶୟ ଶ୍ରଦ୍ଧା ଓ ଭକ୍ତି ସହ ନିରନ୍ତର ତାଙ୍କ ଠାରେ ମନ ଲଗାଇଲେ ତଥା ପତ୍ର-ପୁଷ୍ପ-ଫଳାଦି ଦ୍ୱାରା ଅଥବା ଅନ୍ୟାନ୍ୟ ଯଥୋଚିତ ବିଧିରେ ତାଙ୍କ ସେବା-ପୂଜା କରିବା ଦ୍ୱାରା ଖୁବ୍ ଶୀଘ୍ର ମନ ସ୍ଥିର ହୋଇପାରେ।

୬୦. ନିମ୍ନଲିଖିତ ଉପାୟ ମନକୁ ନିଗୃହୀତ କରିବାରେ ବହୁତ ସହାୟକ ହୋଇପାରନ୍ତି—

(୧) ନିୟମାନୁବର୍ତ୍ତିତାର ପାଳନ କରିବା, ସାରା କାମ ନିୟମିତ ରୂପେ କରିବା।

(୨) ମନର ପ୍ରତ୍ୟେକ କ୍ରିୟାକଳାପ ଉପରେ ବିଚାର କରି ତାକୁ ମନ୍ଦ ଚିନ୍ତନରୁ ନିବୃତ୍ତ କରିବା।

(୩) ମନ କହିବା ଅନୁସାରେ ନ ଚଳିବା।

(୪) ମନକୁ ସବୁବେଳେ ଶୁଭକାର୍ଯ୍ୟରେ ଲଗାଇ ରଖିବା।

(୫) ଅନନ୍ୟ ମନରେ ଭଗବାନଙ୍କ ଶରଣାପନ୍ନ ହେବା।

(୬) ମନଠାରୁ ଅଲଗା ହୋଇ ତା'କାର୍ଯ୍ୟକୁ ନିରୀକ୍ଷଣ କରିବା।

(୭) ପ୍ରେମପୂର୍ବକ ଭଗବନ୍ନାମର କୀର୍ତ୍ତନ କରିବା।

୬୧. ଯଦି ମନୁଷ୍ୟ କେବଳ ପରମାତ୍ମାଙ୍କ ଶରଣ ଗ୍ରହଣ କରି ତାଙ୍କର ନାମ-ଜପ ଓ ସ୍ୱରୂପ ଚିନ୍ତନରେ ତତ୍ପର ହୋଇଯାଏ, ତା'ହେଲେ ଏ ପ୍ରକାର ଧ୍ୟାନ ଦ୍ୱାରା ହିଁ ସବୁ କିଛି ହୋଇପାରେ। ସାଧକର ମନ ଖୁବ୍ ଶୀଘ୍ର ଶୁଦ୍ଧ, ଏକାଗ୍ର ଓ ତା'ର ଅଧୀନ ହୋଇଯାଏ, ଏଥିରେ କିଛି ହେଲେ ସନ୍ଦେହ ନାହିଁ।



## ଧ୍ୟାନ

୧. ଶ୍ରୀମଭଗବଦ୍‌ଗୀତାର ଷଷ୍ଠ ଅଧ୍ୟାୟର ଏକାଦଶରୁ ତ୍ରୟୋଦଶ ଶ୍ଳୋକ ପର୍ଯ୍ୟନ୍ତ ବର୍ଣ୍ଣନା ଅନୁସାରେ ଏକାନ୍ତ, ପବିତ୍ର ଓ ସାତ୍ତ୍ୱିକ ସ୍ଥାନରେ ସିଦ୍ଧ, ସ୍ୱସ୍ତିକ, ପଦ୍ମାସନ ବା ଅନ୍ୟ କୌଣସି ସୁଖସାଧ୍ୟ ଆସନରେ ବସି, ନିଦ୍ରା ଆସିବାର ଭୟ ନ ଥିଲେ ଆଖି ବନ୍ଦ କରି, ଦୁଇ ଚକ୍ଷୁକୁ ଭଗବାନଙ୍କ ମୂର୍ତ୍ତି ଉପରେ ସ୍ଥିର କରି ଅଥବା ଦୁଇଆଖିର ଦୃଷ୍ଟିକୁ ନାସିକାର ଅଗ୍ରଭାଗ ଉପରେ ନିବଦ୍ଧ କରି ପ୍ରତିଦିନ ଅତି କମ୍‌ରେ ତିନି ଘଣ୍ଟା, ଦୁଇ ଘଣ୍ଟା ବା ଏକ ଘଣ୍ଟା ଯେତେ ବି ସମୟ ମିଳିପାରେ ସାବଧାନତାର ସହ ଲୟ, ବିକ୍ଷେପ, କଷାୟ, ରସାସ୍ୱାଦ, ଆଳସ୍ୟ, ପ୍ରମାଦ, ଦମ୍ଭ ଆଦି ଦୋଷଗୁଡ଼ିକରୁ ମୁକ୍ତ ହୋଇ ଶ୍ରଦ୍ଧାଭକ୍ତିପୂର୍ବକ ତତ୍ପରତା ସହକାରେ ଧ୍ୟାନ ଅଭ୍ୟାସ କରିବା ଉଚିତ।

୨. ଅତି ଶୀଘ୍ର ପରମାତ୍ମପ୍ରାପ୍ତି ଚାହୁଁଥିବା ସାଧକଙ୍କ ପାଇଁ ତିନି ଘଣ୍ଟାର ଅଭ୍ୟାସ ଆବଶ୍ୟକ।

୩. ସାକାର ଓ ନିରାକାର ଧ୍ୟାନ ମଧ୍ୟରେ ସାକାର ଅପେକ୍ଷା ନିରାକାରର ଧ୍ୟାନ ସାମାନ୍ୟ କଠିନ। ଉଭୟଙ୍କର ଫଳ ଏକ, କେବଳ ସାଧନରେ ଭେଦ ଅଛି। ଅତଏବ ନିଜ ନିଜ ପ୍ରୀତି ଅନୁସାରେ ନିରାକାର ବା ସାକାର ରୂପର ଧ୍ୟାନ କରିପାରିବେ।

୪. ଏକମାତ୍ର ପରମାତ୍ମାଙ୍କର ଅନେକ ଦିବ୍ୟ ପ୍ରକାଶମୟ ସ୍ୱରୂପ ଅଛି।

୫. ଏହା ସ୍ମରଣ ରଖିବା ଉଚିତ ଯେ—ନିର୍ଗୁଣ-ନିରାକାର ଓ ସଗୁଣ-ସାକାର ଭଗବାନ ବାସ୍ତବରେ ଏକ ହିଁ ଅଟନ୍ତି ।

୬. ଭଗବାନଙ୍କ ପରମଭାବକୁ ବୁଝି କୌଣସି ପ୍ରକାରରେ ତାଙ୍କର ଧ୍ୟାନ କରାଗଲେ ବି ଶେଷରେ ପ୍ରାପ୍ତି ସେହି ଏକ ଭଗବାନଙ୍କର ହେବ, ଯେ କି ସର୍ବଥା ଅଚିନ୍ତ୍ୟଶକ୍ତି, ଅଚିନ୍ତ୍ୟାନନ୍ତ-ଗୁଣସମ୍ପନ୍ନ, ଅନନ୍ତ ଦୟାମୟ, ଅନନ୍ତମହିମ, ସର୍ବବ୍ୟାପୀ, ସୃଷ୍ଟିକର୍ତ୍ତା, ସର୍ବସ୍ୱରୂପ, ସ୍ୱୟଂପ୍ରକାଶ, ସର୍ବାତ୍ମା, ସର୍ବଦ୍ରଷ୍ଟା, ସର୍ବୋପରି, ସର୍ବେଶ୍ୱର, ସର୍ବଜ୍ଞ, ସର୍ବସୁହୃଦ୍, ଅଜ, ଅବିନାଶୀ, ଅକର୍ତ୍ତା, ଦେଶକାଳାତୀତ, ସର୍ବାତୀତ, ଗୁଣାତୀତ, ରୂପାତୀତ, ଅଚିନ୍ତ୍ୟସ୍ୱରୂପ ଓ ନିତ୍ୟ ସ୍ୱମହିମାରେ ହିଁ ପ୍ରତିଷ୍ଠିତ, ସଦସଦ୍‌ବିଲକ୍ଷଣ ଏକମାତ୍ର ପରମ ଓ ଚରମ ସତ୍ୟ ଅଟନ୍ତି ।

୭. ପ୍ରତିଦିନ ନିୟମପୂର୍ବକ ଏକାନ୍ତରେ ବସି ମନରୁ ସଂପୂର୍ଣ୍ଣଭାବେ ସଂସାରକୁ ଭୁଲି ଯାଅ । ଏ ପ୍ରକାର ସଂସାରକୁ ଭୁଲିଗଲେ କେବଳ ଏକ ଚୈତନ୍ୟ ଆତ୍ମା ରହିଯିବ । ସେହି ଚୈତନ୍ୟସ୍ୱରୂପକୁ ଧ୍ୟାନ କର । ଧ୍ୟାନ କରିବାଦ୍ୱାରା ସମାଧି ହୋଇଯାଏ ଓ ମୁକ୍ତି ମିଳେ ।

୮. ଏକତ୍ୱ ଭାବର ଉପାସକ ପାଇଁ ଗୀତାର ୧୩ଶ ଅଧ୍ୟାୟର ୧୫ଶ ଶ୍ଳୋକକୁ ନିରନ୍ତର ସ୍ମରଣ ରଖିବା ଅତ୍ୟନ୍ତ ଲାଭପ୍ରଦ ଅଟେ ।

୯. ଭଗବାନଙ୍କ ଧ୍ୟାନ ବିନା ଗୋଟିଏ ମୁହୂର୍ତ୍ତ ବି ରହି ନ ହେବା ତଥା ତାଙ୍କ ବ୍ୟତୀତ ଆଉ କିଛି କଥା ଭଲ ନ ଲାଗିବାର ଅଭ୍ୟାସ କରି ନିଅନ୍ତୁ । ଆଖି ଏବଂ କାନ ଭଗବାନଙ୍କ କଥା ଦେଖନ୍ତୁ-ଶୁଣନ୍ତୁ, ମନ ଭଗବାନଙ୍କ ଭଜନ, ଧ୍ୟାନ ଓ ସତ୍‌ସଙ୍ଗରେ ହିଁ ବୁଡ଼ି ରହୁ ତଥା ସଂସାରର ଅନ୍ୟ ସମସ୍ତ କାର୍ଯ୍ୟ ପ୍ରତି ବିରକ୍ତି ଆସି ଯାଉ । ଏପରି ଅଭ୍ୟାସ ପାଇଁ ସର୍ବଦା ଚେଷ୍ଟା କରିବା ଉଚିତ ।

୧୦. 'ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଧ୍ୟାନ ନିରନ୍ତର ହେଉ', ଏପ୍ରକାରର କାମନା ରହିଲେ କୌଣସି କ୍ଷତି ନାହିଁ । ଏଭଳି ଇଚ୍ଛା ସାଧନ ବଢ଼ାଇବାର ହେତୁ ଅଟେ ।

୧୧. ପ୍ରେମ ସହିତ ଭଗବାନଙ୍କ ଧ୍ୟାନର ତୀବ୍ର ଲାଳସାର ନାମ ହିଁ ଉତ୍କଣ୍ଠା ।

୧୨. ଭଗବାନଙ୍କ ଠାରେ ପ୍ରେମ ଓ ସଂସାରରୁ ତୀବ୍ର ବୈରାଗ୍ୟ ହେବା

ପରେ ତ ବିନା ଚେଷ୍ଟାରେ ହିଁ ଭଗବାନଙ୍କ ଧ୍ୟାନରେ ନିରନ୍ତର ସ୍ଥିତି ରହେ, କିନ୍ତୁ ପ୍ରେମ ଓ ବୈରାଗ୍ୟ ପାଇଁ ସତ୍‌ସଙ୍ଗ ଓ ଭଜନର ତୀବ୍ର ଚେଷ୍ଟା ହିଁ ଉପାୟ ଅଟେ।

୧୩. ଭଗବାନଙ୍କ ସଗୁଣ ମୂର୍ତ୍ତିର ଧ୍ୟାନ ଯେଭଳି ଧ୍ରୁବ କରିଥିଲେ, ସେଇଭଳି ହିଁ କରିବା ଉଚିତ।

୧୪. ସାଂସାରିକ କାମ ନଦୀର ପ୍ରବାହ ଭଳି ଅଟେ। ଯେ ଭଗବତ୍‌-ଚରଣରୂପୀ ନୌକା ଉପରେ ନାମରୂପୀ ରଜ୍ଜୁକୁ ଧରି ଧ୍ୟାନଦ୍ୱାରା ଆରୂଢ଼ ହୋଇଯାଏ, ସେ ହିଁ ରକ୍ଷା ପାଇପାରେ। ଯିଏ ନଦୀର ପ୍ରବାହରେ ଭାସିଯାଏ, ତାର ବଡ଼ ଖରାପ ଅବସ୍ଥା ହୁଏ।

୧୫. ଆନନ୍ଦ ପାଇବା ପାଇଁ ଧ୍ୟାନ କରାଯାଏ ନାହିଁ। ଭଜନ ଓ ଧ୍ୟାନ ତ ଭଗବାନଙ୍କ ପାଇଁ କରାଯାଏ।

୧୬. ସଗୁଣ ଭଗବାନଙ୍କର ଧ୍ୟାନ ଏପରି ପ୍ରେମରେ କରିବା ଉଚିତ, ଯାହାଦ୍ୱାରା ନିଜ ଶରୀର ମଧ୍ୟ ସ୍ମରଣ ରହିବ ନାହିଁ।

୧୭. ସଂସାରର କୌଣସି ପଦାର୍ଥର ଇଚ୍ଛା କେବେ ବି କରିବା ଉଚିତ ନୁହେଁ। ପ୍ରତ୍ୟେକ ସମୟରେ ଭଗବାନଙ୍କ ଧ୍ୟାନଜନିତ ଆନନ୍ଦରେ ମଗ୍ନ ହୋଇ ରହିବା ଉଚିତ।

୧୮. ସ୍ତ୍ରୀ, ପୁତ୍ର, ଧନର କଥା କ'ଣ କହିବା, ଶରୀର ମଧ୍ୟ ନିଜ ସହିତ ଯିବାର ବସ୍ତୁ ନୁହେଁ। ଏପ୍ରକାର ବିଚାର କରି ଯେଉଁ ମନୁଷ୍ୟ ଏହା ସହ ପ୍ରେମ କରେ ନାହିଁ, ସେ ହିଁ ସୁଖୀ ହୁଏ। ମନୁଷ୍ୟ ଯେତେବେଳେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଧ୍ୟାନରେ ମୁଗ୍ଧ ହୋଇଯାଏ, ସେତେବେଳେ ତାକୁ ତ୍ରିଲୋକର ରାଜ୍ୟ ତୁଚ୍ଛ ପ୍ରତୀତ ହୁଏ।

୧୯. ସଂସାରକୁ ନାଶବାନ୍ ଓ କ୍ଷଣଭଙ୍ଗୁର ଭାବି ଏକ ନିତ୍ୟ ସତ୍ୟ ଚେତନ ଆନନ୍ଦଘନର ଚିନ୍ତନ କରିବା ଉଚିତ। ଆଉ ଅନ୍ୟ ସବୁକୁ ଭୁଲିଯିବା ଉଚିତ।

୨୦. ସତ୍-ଚିତ୍-ଆନନ୍ଦଘନ ଠାରେ ଏକୀଭାବରେ ସ୍ଥିତ ସଂପୂର୍ଣ୍ଣ ସଂସାରର ଦ୍ରଷ୍ଟା ହୋଇ ଏହି ଦୃଶ୍ୟକୁ ଭୁଲିଯିବା ଉଚିତ। ତେବେ ଶେଷରେ ଏକମାତ୍ର ପରମାତ୍ମା ରହିଯାଆନ୍ତି।

୨୧. ଶ୍ରୀନାରାୟଣଙ୍କ ସ୍ୱରୂପର ଧ୍ୟାନ ଆପଣଙ୍କୁ ଯେପରି ପ୍ରିୟ ଲାଗିବ, ସେହିପରି ନାମ-ଜପ ସହିତ କରି ଆନନ୍ଦରେ ମଗ୍ନ ରହିବା ଉଚିତ। ଆନନ୍ଦ ନ ହେଲେ ବି ଆନନ୍ଦର ଭାବନା କରିବା ଉଚିତ। ଦିନେ ପ୍ରକୃତ ଆନନ୍ଦ ନିଶ୍ଚିତଭାବେ ପ୍ରାପ୍ତ ହୋଇପାରେ।

୨୨. ଯେଉଁ-ଯେଉଁ ସ୍ଥାନକୁ ମନ ଯାଏ, ସେହି-ସେହି ସ୍ଥାନରେ ପରମାତ୍ମାଙ୍କ ସ୍ୱରୂପକୁ ଦେଖିବା ଉଚିତ।

୨୩. ଯେଉଁ-ଯେଉଁ ସ୍ଥାନକୁ ମନ ଯାଏ, ସେହି-ସେହି ସ୍ଥାନରୁ ତାକୁ ଟାଣି ଆଣି ଶ୍ରୀଭଗବାନଙ୍କ ଧ୍ୟାନରେ ଲଗାଇବା ଉଚିତ।

୨୪. ଯେଉଁ ପୂର୍ଣ୍ଣ ଆନନ୍ଦର ଲହରୀ ହୃଦୟରେ ଉଚ୍ଛ୍ୱସିତ ହେଉଥାଏ, ତାହାକୁ ସବୁବେଳେ ଧ୍ୟାନ କରିବାଦ୍ୱାରା ଧ୍ୟାତା ନିଜେ ମଧ୍ୟ ଆନନ୍ଦସ୍ୱରୂପ ହୋଇଯାଏ।

୨୫. ଭଗବାନଙ୍କର ସାକାର ଅଥବା ନିରାକାର ସ୍ୱରୂପରେ ଚିତ୍ତର ଏକାଗ୍ରତାର ନାମ ଧ୍ୟାନ ଅଟେ, ଧ୍ୟାନକାରୀକୁ ଭଗବାନଙ୍କ ବ୍ୟତୀତ ନିଜର ଜ୍ଞାନ ମଧ୍ୟ ନ ରହିବାର ନାମ ସମାଧି ଅଟେ।

୨୬. ଲୋକେ ଧ୍ୟାନର ଆଦର କରନ୍ତି ନାହିଁ। ଯେଉଁମାନେ ଆଦର କରନ୍ତି, ତାଙ୍କୁ ପ୍ରାପ୍ତ ହୁଏ। ଅନନ୍ୟ ଧ୍ୟାନଦ୍ୱାରା ଭଗବାନଙ୍କ ପ୍ରାପ୍ତି ହେବାରେ ବା ସନ୍ଦେହ କ'ଣ ଅଛି? କେବଳ ମୁଖ୍ୟ ଧ୍ୟାନଦ୍ୱାରା ମଧ୍ୟ ମନୁଷ୍ୟ ଜୀବନ୍ମୁକ୍ତ ହୋଇଯାଏ।

୨୭. ଜପ କରୁ କରୁ ହିଁ ଧ୍ୟାନ କରିବାର ଚେଷ୍ଟା କରିବା ଉଚିତ। ଜପ ଚାଲିଥିଲେ ମନରେ ଅନ୍ୟ ସ୍ଫୁରଣ କମ୍ ହେବ। ତଥାପି ଯଦି ମନ ଅନ୍ୟସ୍ଥାନକୁ ଯାଏ ତେବେ ବାରମ୍ବାର ସେଠାରୁ ଦୂରେଇ ଭଗବାନଙ୍କ ଠାରେ ଲଗାଇବାର ଅଭ୍ୟାସ କରିବା ଉଚିତ।

୨୮. ବହୁ ସଙ୍କଟ ପଡ଼ିଲେ ମଧ୍ୟ ଭଜନ-ଧ୍ୟାନ ଛାଡ଼ିବା ଉଚିତ ନୁହେଁ। ଏହା ହିଁ ପରୀକ୍ଷାର ସମୟ। ଯଦି ଏଥିରେ ଫେଲ୍ ହୋଇଗଲେ ତେବେ କି ଲାଭ?

୨୯. ଚାଲିବା, ଉଠିବା, ବସିବା—ସବୁବେଳେ ସର୍ବବ୍ୟାପକ ପରମାତ୍ମାଙ୍କ ଠାରେ ସ୍ଥିତ ରହି ସଂସାରକୁ ଅସତ୍ ବୁଝି ଓ ଶରୀରରୁ ପୃଥକ୍ ହୋଇ ଦ୍ରଷ୍ଟା-

ସାକ୍ଷୀରୂପେ ସଚ୍ଚିଦାନନ୍ଦ ପରମାତ୍ମାଙ୍କ ସ୍ୱରୂପରେ ହିଁ ଏକୀଭାବରେ ସ୍ଥିତ ରହି ନିର୍ଗୁଣଙ୍କ ଧ୍ୟାନ ପାଇଁ ପ୍ରଯତ୍ନ କରିବା ଉଚିତ।

୩୦. ଧ୍ୟାନ ଏପରି ହେବା ଉଚିତ ଯେପରି ଶରୀରର ଜ୍ଞାନ ନ ରହେ।

୩୧. ଆନନ୍ଦମୟଙ୍କ ଧ୍ୟାନରେ କିଛି କଷ୍ଟ ନାହିଁ। ଧ୍ୟାନ ତ ଖୁବ୍ ପ୍ରସନ୍ନତାର ସହ ଅନାୟାସରେ ହୋଇଥାଏ।

୩୨. ଭେଦ ଓ ଅଭେଦ ଉଭୟ ନିଷ୍ଠାରେ ହିଁ ଧ୍ୟାନ ସବୁଠୁଁ ଆବଶ୍ୟକ ଓ ମହତ୍ତ୍ୱପୂର୍ଣ୍ଣ ସାଧନ ଅଟେ।

୩୩. ନିଜ ଘରେ ରହିଲେ ମଧ୍ୟ ପ୍ରତ୍ୟେକ ଭାଇ ଏକାନ୍ତସେବନ କରିବା ଉଚିତ। ଏକାନ୍ତରେ ଭଗବାନଙ୍କ ଧ୍ୟାନ କର।

୩୪. ସାଧକ ଏଣେ ତେଣେ ମନ ବୃଥାରେ ନ ଘୂରାଇ ନିଜର ଇଷ୍ଟ ରୂପରେ ମହାନ୍ ଆଦରବୁଦ୍ଧି ରଖି ପରମଭାବରେ ତାହାରି ଧ୍ୟାନ ଅଭ୍ୟାସ କରିବା ଉଚିତ।

୩୫. ଧ୍ୟାନ ସମୟରେ ଶରୀର, ମସ୍ତକ ଓ ବେକ ସିଧା ଓ ମେରୁଦଣ୍ଡ ହାଡ଼ ମଧ୍ୟ ସଳଖ ରହିବା ଉଚିତ। ଧ୍ୟାନ ପାଇଁ ସମୟ ଓ ସ୍ଥାନ ସୁନିଶ୍ଚିତ ହେବା ଉଚିତ।

୩୬. ଗୀତା ୨।୭ ଶ୍ଲୋକ ଅନୁସାରେ ଶରଣାପନ୍ନ ହୋଇ କ୍ରନ୍ଦନ କର। ତା'ପରେ ଧ୍ୟାନ କର। ଧ୍ୟାନ ପାଇଁ ଅଲଗା କୋଠରି ରଖ, ଆସନ ମଧ୍ୟ ଅଲଗା ହେବା ଉଚିତ।

୩୭. ଯଦି ଇନ୍ଦ୍ରିୟ ଓ ମନ ବଶରେ ଅଛନ୍ତି, ତେବେ ଭଗବାନଙ୍କ ଧ୍ୟାନ ହିଁ ସବୁଠୁଁ ବଳି କଲ୍ୟାଣର ସାଧନ ଅଟେ।

୩୮. ପରମେଶ୍ୱରଙ୍କ ଧ୍ୟାନର ଗାଢ଼ ସ୍ଥିତି ପ୍ରାପ୍ତ ହେବାରେ କର୍ମସମୂହର ସଂଯୋଗ-ବିୟୋଗ ବାଧକ ବା ସାଧକ ନୁହେଁ। ପ୍ରୀତି ଓ ପ୍ରକୃତ ଶ୍ରଦ୍ଧା ହିଁ ଏଥିରେ ପ୍ରଧାନ କାରଣ ଅଟେ।

୩୯. ସାଧକ ବିଶେଷ କରି ଯେବେ ଧ୍ୟାନ ନିମିତ୍ତ ବସେ, ସେହି ସମୟରେ ସେ ଗୌଣରୂପେ ମଧ୍ୟ ନିଜ ଅନ୍ତଃକରଣରେ ସାଂସାରିକ ସଂକଳ୍ପଗୁଡ଼ିକୁ ମୁଣ୍ଡ ଟେକିବାକୁ ଦେବା ଉଚିତ ନୁହେଁ ତଥା ଏକାନ୍ତ ଓ ଶୁଦ୍ଧ ସ୍ଥାନରେ ବସି ଧ୍ୟାନର ସାଧନ ଆରମ୍ଭ କରିଦେବା ଉଚିତ।

୪୦. ଯେପର୍ଯ୍ୟନ୍ତ ନିଜ ଶରୀରର ଓ ସଂସାରର ଜ୍ଞାନ ରହେ, ସେପର୍ଯ୍ୟନ୍ତ ଧ୍ୟାନ ସହ ନାମ-ଜପ ଅଭ୍ୟାସ ଅବଶ୍ୟ କରିବା ଉଚିତ।

୪୧. ନାମ-ରୂପର ଭାବନା ସାଧକ ନିଜ ଇଚ୍ଛାନୁସାରେ କରି ପାରନ୍ତି, ଯଦି କୌଣସି ଗୋଟିଏ ସ୍ତମ୍ଭକୁ ହିଁ ପରମାତ୍ମା ମାନି ତାହାର ଧ୍ୟାନ କରାଯାଏ, ତେବେ ତାହା ମଧ୍ୟ ପରମାତ୍ମାଙ୍କ ଧ୍ୟାନ ହିଁ ହୁଏ। ଅବଶ୍ୟ ଲକ୍ଷ୍ୟରେ ଈଶ୍ୱରଙ୍କ ପୂର୍ଣ୍ଣଭାବ ଥିବା ଉଚିତ।

୪୨. ଯେଉଁ ଲୋକ ଭଗବାନଙ୍କୁ ନିଜ ମନରେ ଯେପରି ଭାବି ସାଧନ କରନ୍ତି, ସେଥିରେ ପରିବର୍ତ୍ତନର କୌଣସି ଆବଶ୍ୟକତା ନାହିଁ।

୪୩. ନାମୀକୁ ମନେ ପକାଇ ଦେବାର ପ୍ରଧାନ ଆଧାର ନାମ ହିଁ ଅଟେ। ନାମ ନାମୀର ରୂପକୁ କେବେ ଭୁଲିବାକୁ ଦିଏ ନାହିଁ। ନାମଦ୍ୱାରା ଧ୍ୟାନରେ ପୂର୍ଣ୍ଣ ସହାୟତା ମିଳେ; ଅତଏବ ଧ୍ୟାନ କରିବା ସମୟରେ ଯେପର୍ଯ୍ୟନ୍ତ ଧ୍ୟେୟରେ ସଂପୂର୍ଣ୍ଣରୂପେ ତଲ୍ଲୀନତା ନ ହୋଇଯାଏ, ସେପର୍ଯ୍ୟନ୍ତ ନାମ-ଜପ କେବେ ଛାଡ଼ିବା ଉଚିତ ନୁହେଁ।

୪୪. ତତ୍ତ୍ୱ ବୁଝି ନ ଥିବା ମନୁଷ୍ୟକୁ ହିଁ ଭଜନ-ଧ୍ୟାନରୂପୀ ସାଧନ ଭାର ପରି ପ୍ରତୀତ ହୁଏ। ଯାହାକୁ ସାଧନାର ତତ୍ତ୍ୱର ଜ୍ଞାନ ହେବାକୁ ଲାଗେ, ସେ ଉତ୍ତରୋତ୍ତର ଆନନ୍ଦର ଉପଲବ୍ଧି କରି ପୂର୍ଣ୍ଣାନନ୍ଦର ପ୍ରାପ୍ତି ପାଇଁ ଭଜନ-ଧ୍ୟାନ ବଢ଼ାଇବାକୁ ଚେଷ୍ଟା କରେ।

୪୫. ଭଜନ-ଧ୍ୟାନରେ ଅନ୍ତଃକରଣରୂପୀ ଦର୍ପଣ ଯେତେ ଯେତେ ସ୍ୱଚ୍ଛ ହୁଏ, ସେତେ ସେତେ ସାଧକର ଆଶା ଓ ତା'ର ଉତ୍ସାହ ବଢ଼ିଥାଏ।

୪୬. ଏକାନ୍ତ ସ୍ଥାନରୁ ଉଠିବାପରେ ବ୍ୟବହାର କାଳରେ ମଧ୍ୟ ଚାଲିବା, ବୁଲିବା, ଉଠିବା, ବସିବା, ସବୁ ସମୟରେ ନିଜ ଇଷ୍ଟଦେବଙ୍କ ନାମ-ଜପ ଓ ସ୍ୱରୂପର ଚିନ୍ତନ ସେହି ପ୍ରକାର କରିବାକୁ ଚେଷ୍ଟା କରିବା ଉଚିତ।

୪୭. ଅନେକ ବିଘ୍ନ ଉପସ୍ଥିତ ହେଲେ ମଧ୍ୟ ଧ୍ରୁବ ପରି ଭଗବାନଙ୍କ ଧ୍ୟାନରେ ଅଚଳ ରହିବାଦ୍ୱାରା ଭଗବାନ ପ୍ରତ୍ୟକ୍ଷ ଦର୍ଶନ ଦେଇ ପାରନ୍ତି।



# ସଦ୍‌ଗୁଣ-ସଦାଗ୍ହର

୧. ଯେଉଁ ଆଚରଣ ନିଜ ପାଇଁ ଓ ସାରା ସଂସାର ପାଇଁ ହିତକର ଅଟେ ଅର୍ଥାତ୍ ମନ, ବାଣୀ ଓ ଶରୀର ଦ୍ୱାରା ଯେଉଁ ସବୁ ଉତ୍ତମ କ୍ରିୟା କରାଯାଏ, ତାହା ହିଁ ସଦାଗ୍ହର। ଅନ୍ତଃକରଣରେ ଯେଉଁସବୁ ପବିତ୍ର ଭାବ ଥାଏ, ସେଗୁଡ଼ିକର ନାମ ସଦ୍‌ଗୁଣ।

୨. ବୀଜ ଓ ବୃକ୍ଷ ପରି ସଦ୍‌ଗୁଣଦ୍ୱାରା ସଦାଗ୍ହର ଏବଂ ସଦାଗ୍ହରଦ୍ୱାରା ସଦ୍‌ଗୁଣସମୂହର ବୃଦ୍ଧି ହୁଏ।

୩. ଶାସ୍ତ୍ରାନୁକୂଳ ସମସ୍ତ ବିହିତ କର୍ମଗୁଡ଼ିକର ନାମ ସଦାଗ୍ହର ଅଟେ—

**ସର୍ବାଗମାନାମାଗ୍ହରଃ ପ୍ରଥମଂ ପରିକଳ୍ପତେ।**
**ଆଗ୍ହରପ୍ରଭବୋ ଧର୍ମୋ ଧର୍ମସ୍ୟ ପ୍ରଭୁରଚ୍ୟୁତଃ॥**

"ସମସ୍ତ ଶାସ୍ତ୍ରମାନଙ୍କରେ ସର୍ବପ୍ରଥମେ ଆଗ୍ହରର କଳ୍ପନା କରାଯାଇଛି, ଆଗ୍ହର ଦ୍ୱାରା ହିଁ ଧର୍ମ ଉତ୍ପନ୍ନ ହୁଏ ଓ ଧର୍ମର ପ୍ରଭୁ ଶ୍ରୀଅଚ୍ୟୁତ ଭଗବାନ ଅଟନ୍ତି।"

୪. ପ୍ରାତଃକାଳରେ ଶଯ୍ୟାରୁ ଉଠିବା କ୍ଷଣି ସର୍ବପ୍ରଥମେ ଭଗବାନଙ୍କ ନାମ ସ୍ମରଣ କରିବା ଉଚିତ।

୫. ଯଥା ସମୟରେ (ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ପୂର୍ବରୁ) ସନ୍ଧ୍ୟା ଏବଂ ଗାୟତ୍ରୀ-ମନ୍ତ୍ର ଅତି କମ୍‌ରେ ୧୦୮ ଥର ଜପ କରିବା ଉଚିତ। ଗୀତାର ଗୋଟିଏ ଅଧ୍ୟାୟ ଅର୍ଥ ସହିତ ପାଠ ତଥା ଷୋଡ଼ଶ ମନ୍ତ୍ରର ୧୪ ମାଳା ଅଥବା ନିଜର ଇଷ୍ଟଦେବଙ୍କ ନାମର ୨୨,୦୦୦ ଜପ ପ୍ରତିଦିନ ଅବଶ୍ୟ କରିବା ଉଚିତ ଏବଂ ପରମାତ୍ମାଙ୍କ ଗୁଣ, ପ୍ରଭାବ ସହିତ ନିଜର ଇଷ୍ଟସ୍ୱରୂପର ଧ୍ୟାନ ତଥା ମାନସିକ ପୂଜା କରିବା ବିଧେୟ।

୬. ଆଗ୍ହରର ଦୁଇଟି ମୁଖ୍ୟ ଭେଦ—ଶୌଗ୍ହଗ୍ହର ଓ ସଦାଗ୍ହର। ଜଳ ଓ ମୃତ୍ତିକା ଆଦିଦ୍ୱାରା ଶରୀରକୁ ତଥା ଭୋଜନ, ବସ୍ତ୍ର, ଘର ଓ ବାସନକୁସନ ଆଦିକୁ ଶାସ୍ତ୍ରାନୁକୂଳରୀତିରେ ପରିଷ୍କାର ରଖିବା ଶୌଗ୍ହଗ୍ହର ଅଟେ। ସମସ୍ତଙ୍କ ସହ ଯଥାଯୋଗ୍ୟ ବ୍ୟବହାର ଏବଂ ଶାସ୍ତ୍ରୋକ୍ତ ଉତ୍ତମ କର୍ମସମୂହର ଆଚରଣ କରିବା ସଦାଗ୍ହର ଅଟେ। ଏହାଦ୍ୱାରା ଦୁର୍ଗୁଣ ଓ ଦୁରାଗ୍ହରସମୂହର ବିନାଶ

ହୋଇ ବାହାର ଓ ଭିତରର ପବିତ୍ରତା ହୁଏ ତଥା ସଦ୍‌ଗୁଣସମୂହର ଆବିର୍ଭାବ ହୋଇଥାଏ।

୭. ସତ୍ୟତାପୂର୍ବକ ଶୁଦ୍ଧ ବ୍ୟବହାରରେ ଦ୍ରବ୍ୟର ଓ ତହିଁରୁ ଉପାର୍ଜିତ ଅନ୍ନରେ ଆହାରର ତଥା ଯଥାଯୋଗ୍ୟ ବ୍ୟବହାରଦ୍ୱାରା ଆଚରଣସମୂହର ଏବଂ ଜଳ-ମୃତ୍ତିକାଦି ଦ୍ୱାରା ଶରୀରର ଶୁଦ୍ଧିକୁ ବାହାରର ଶୁଦ୍ଧି କହନ୍ତି ତଥା ରାଗ, ଦ୍ୱେଷ ଓ କପଟ ଆଦି ବିକାରଗୁଡ଼ିକର ବିନାଶ ହୋଇ ଅନ୍ତଃକରଣ ସ୍ୱଚ୍ଛ ହୋଇଯିବାକୁ ଭିତରର ଶୁଦ୍ଧି କୁହାଯାଏ।

୮. ମଳତ୍ୟାଗ କରି ତିନିବାର ମୃତ୍ତିକା ସହିତ ଜଳଦ୍ୱାରା ମଳଦ୍ୱାର ଧୋଇବ। ପୁଣି ଯେପର୍ଯ୍ୟନ୍ତ ଦୁର୍ଗନ୍ଧ ଏବଂ ଚିକ୍କଣତା ଥିବ ସେପର୍ଯ୍ୟନ୍ତ କେବଳ ଜଳରେ ଧୋଇବ। ମଳ ବା ମୂତ୍ର ତ୍ୟାଗ କରିବା ପରେ ଲିଙ୍ଗକୁ ଜଳରେ ଧୋଇବ। ମଳତ୍ୟାଗ ପରେ ମୃତ୍ତିକା ନେଇ ବାମ ହାତକୁ ଦଶ ଥର ଓ ଦୁଇହାତକୁ ମିଶାଇ ସାତ ଥର ଧୋଇବା ଉଚିତ। ମୃତ୍ତିକା ସହିତ ଜଳଦ୍ୱାରା ଦୁଇପାଦକୁ ଥରେ ତଥା ପାତ୍ରକୁ ତିନି ଥର ଧୋଇବା ଉଚିତ। ହାତ ଓ ପାଦ ଧୋଇବା ପରେ ମୁଖର ସମସ୍ତ ଛିଦ୍ରକୁ ଧୋଇ ଦାନ୍ତ ଘଷି ଅତି କମ୍‌ରେ ବାର ଥର କୁଳି କରିବା ଆବଶ୍ୟକ।

୯. ରୋଷେଇ ପବିତ୍ରତା ସହ କରିବା ଉଚିତ। ବାଳକ ଆଦି ରୋଷେଇ ଘରକୁ ଯିବା ଉଚିତ ନୁହେଁ। ରୋଷେଇ କରିବା ସମୟରେ ଧୁଆ ଲୁଗା ଅବଶ୍ୟ ପିନ୍ଧିବା ଉଚିତ। ଆହାର ଶୁଦ୍ଧ ହେଲେ ମନ ମଧ୍ୟ ଶୁଦ୍ଧ ହୁଏ। **"ଜୈସା ଖାୱେ ଅନ୍ନ ୱୈସା ବନେ ମନ।"** ମୁଖ୍ୟରୂପେ ଅନ୍ନ ତିନି ପ୍ରକାରରେ ପବିତ୍ର ହୁଏ—ସାତ୍ତ୍ୱିକ ରୋଜଗାରଦ୍ୱାରା, ପବିତ୍ରତାପୂର୍ବକ ପ୍ରସ୍ତୁତ କରିବାଦ୍ୱାରା ତଥା ସାତ୍ତ୍ୱିକ ଭୋଜନ ହେବାଦ୍ୱାରା।

୧୦. ଡାକ୍ତରୀ ଔଷଧ ସେବନ କରିବା ଉଚିତ ନୁହେଁ। ଡାକ୍ତରୀ ଔଷଧଦ୍ୱାରା ବହୁତ ଅଧିକ ହାନି ହୁଏ। ବଜାରର ମିଠାଇ, ପୁରି, ଦୁଧ, ଦହି, ଘିଅ ଆଦି ଖାଇବା ଅନୁଚିତ। ଭାଙ୍ଗ ଆଦି ମାଦକ ଦ୍ରବ୍ୟଗୁଡ଼ିକୁ ମଧ୍ୟ ତ୍ୟାଗ କରିଦେବା ଉଚିତ।

୧୧. ସ୍ମୃତିକାର ମନୁ କାୟିକ ପାପ ତିନିପ୍ରକାର ବୋଲି କହିଛନ୍ତି— ଦିଆଯାଇ ନ ଥିବା ଧନ ନେବା, ହିଂସା ଓ ପରସ୍ତ୍ରୀଗମନ। ବାଚିକ ପାପ

ଗ୍ରିଗୋଟି—କଠୋର ବଚନ, ମିଛ କହିବା, ଚୁଗୁଲି କରିବା ଓ ଭିତ୍ତିହୀନ ବ୍ୟର୍ଥ କଥା କହିବା। ମାନସିକ ପାପ ତିନିଗୋଟି—ଅନ୍ୟର ସମ୍ପତ୍ତି ମାରି ନେବାର କୌଶଳ ଚିନ୍ତା କରିବା, ମନରେ ଅନ୍ୟର ଅନିଷ୍ଟ ଚିନ୍ତନ କରିବା ଓ 'ମୁଁ ଶରୀର ଅଟେ', ଏପ୍ରକାରର ମିଥ୍ୟା ଅଭିମାନ କରିବା। ଏହି ତ୍ରିବିଧ ପାପ ବିନାଶ ପାଇଁ ଭଗବାନ ଶ୍ରୀକୃଷ୍ଣ ଗୀତାରେ ତିନିପ୍ରକାର ତପ ନିର୍ଦ୍ଦେଶ କରିଛନ୍ତି—ଶାରୀରିକ ତପ, ବାଙ୍‌ମୟ ତପ ଓ ମାନସ ତପ (ଅଧ୍ୟାୟ ୧୭ ଶ୍ଳୋକ ୧୪ରୁ ୧୬ ପର୍ଯ୍ୟନ୍ତ)।

୧୨. ଯେପରି ସୁନାକୁ ଅଗ୍ନିରେ ତତାଇଲେ ସମସ୍ତ ବିକାର ଜଳିଯାଏ ଓ ତାହାର ଶୁଦ୍ଧ ନିର୍ମଳ ରୂପ ସମ୍ମୁଖକୁ ଆସିଯାଏ, ସେହିପରି ତପଦ୍ୱାରା ମନୁଷ୍ୟର ଅନ୍ତଃକରଣ ତଥା ଇନ୍ଦ୍ରିୟଙ୍କର ମଳି ନଷ୍ଟ ହୋଇ ସେସବୁ ପବିତ୍ର ହୋଇଯାନ୍ତି।

୧୩. କେବଳ ତପଦ୍ୱାରା ହିଁ ମନୁଷ୍ୟ ସମସ୍ତ ପାପସମୂହରୁ ମୁକ୍ତ ହୋଇ ପରମାତ୍ମାଙ୍କୁ ପ୍ରାପ୍ତ ହୋଇପାରେ।

୧୪. **ଅହିଂସାସତ୍ୟାସ୍ତେୟବ୍ରହ୍ମଚର୍ଯ୍ୟାପରିଗ୍ରହା ଯମାଃ ॥** (ଯୋଗ. ୨।୩୦)

"ଅହିଂସା, ସତ୍ୟଭାଷଣ, ଗ୍ରେରି ନ କରିବା, ବ୍ରହ୍ମଚର୍ଯ୍ୟପାଳନ ଓ ଭୋଗ୍ୟ ସାମଗ୍ରୀଗୁଡ଼ିକର ସଂଗ୍ରହ ନ କରିବା—ଏଗୁଡ଼ିକ ପାଞ୍ଚପ୍ରକାରର ଯମ ବା ସଂଯମ ଅଟନ୍ତି।"

୧୫. **ଶୌଚସନ୍ତୋଷତପଃସ୍ୱାଧ୍ୟାୟେଶ୍ୱରପ୍ରଣିଧାନାନି ନିୟମାଃ।** (ଯୋଗ. ୨।୩୨)

"ବାହାର-ଭିତରର ପବିତ୍ରତା, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ସର୍ବସ୍ୱ ଈଶ୍ୱରଙ୍କୁ ଅର୍ପଣ କରିବା—ଏଗୁଡ଼ିକ ପାଞ୍ଚ ପ୍ରକାର ନିୟମ ଅଟନ୍ତି।"

୧୬. ଯେଉଁ ପଦାର୍ଥର, ଭାବର ବା କ୍ରିୟାର ସ୍ୱାର୍ଥସହିତ ସମ୍ବନ୍ଧ ନ ଥିବ ଓ ଯେଉଁଥିରେ ଆସକ୍ତି ଏବଂ ମମତା ନ ଥିବ ତଥା ଯାହାର ଫଳ ଭଗବତ୍‌ପ୍ରାପ୍ତି ହୋଇଥିବ, ତାହାକୁ ସାତ୍ତ୍ୱିକ ଜାଣିବା ଉଚିତ। ଯେଉଁ ପଦାର୍ଥର, ଭାବର ବା କ୍ରିୟାର ଲୋଭ, ସ୍ୱାର୍ଥ ଏବଂ ଆସକ୍ତି ସହ ସମ୍ବନ୍ଧ ଥିବ ତଥା ଯାହାର ଫଳ କ୍ଷଣିକ ସୁଖର ପ୍ରାପ୍ତି ଏବଂ ଅନ୍ତିମ ପରିଣାମ ଦୁଃଖ ହୋଇଥିବ, ତାହାକୁ ରାଜସ ବୁଝିବା ଉଚିତ। ଯେଉଁ ପଦାର୍ଥ, ଭାବ ବା କ୍ରିୟାରେ ହିଂସା, ମୋହ

ଏବଂ ପ୍ରମାଦ ଥିବ ତଥା ଯାହାର ଫଳ ଦୁଃଖ ଏବଂ ଅଜ୍ଞାନ ହୋଇଥିବ, ତାହାକୁ ତାମସ ବୁଝିବା ଉଚିତ।

୧୭. ଦୈବୀ ସମ୍ପଦ ହିଁ ସତ୍ତ୍ୱଗୁଣ ଅଟେ, ଏହା ଈଶ୍ୱରଙ୍କ ସମ୍ପତ୍ତି ଅଟେ। ଏହି ସମ୍ପତ୍ତି ଯେତିକି ବଢ଼େ, ସାଧକ ସେତିକି ଉପରକୁ ଉଠେ ଅର୍ଥାତ୍ ପରମାତ୍ମାଙ୍କ ନିକଟରେ ପହଞ୍ଚେ।

୧୮. ହାଲୁକା ଜିନିଷ ପାଣି ଉପରେ ଭାସେ, ଓଜନିଆ ଜିନିଷ ବୁଡ଼ିଯାଏ। ଆସୁରୀ ସମ୍ପଦ ତମୋଗୁଣର ସ୍ୱରୂପ ଅଟେ। ଏଣୁ ତାହା ତଳକୁ ନେଇଯାଏ। ସତ୍ତ୍ୱଗୁଣ ହାଲୁକା ହୋଇଥିବାରୁ ଉପରକୁ ଉଠାଏ।

୧୯. ଦୈବୀ ସଂପତ୍ତି ହିଁ ପ୍ରକୃତ ଧନ ଅଟେ। ଲୌକିକ ଧନ ତ ମରିବା ପରେ ଏଇଠି ରହିଯାଏ, କିନ୍ତୁ ଏ ଧନ ଏପରି ଯେ ଶରୀର ନାଶ ହେବା ପରେ ମଧ୍ୟ ନାଶ ହୁଏ ନାହିଁ। ଏହାକୁ ମାନବ ଧର୍ମ ମଧ୍ୟ କହନ୍ତି। ଏହାରି ଦ୍ୱାରା ପ୍ରକୃତ ସୁଖ ପ୍ରାପ୍ତି ହୋଇଥାଏ।

୨୦. ଦୈବୀ ସଂପତ୍ତିର ଅର୍ଜନ ଭଗବଦ୍‌ଭକ୍ତିଦ୍ୱାରା ସୁଲଭ ହୋଇଯାଏ।

୨୧. ଭଗବାନ ଶ୍ରୀରାମ ନିଜ ଭାଇମାନଙ୍କୁ ତଥା ପ୍ରଜାଙ୍କୁ ଯେଉଁ ପରମ ସୁନ୍ଦର ଉପଦେଶମାନ ଦେଇଛନ୍ତି, ସେଗୁଡ଼ିକୁ ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ଚେଷ୍ଟା କରିବା ଉଚିତ।

୨୨. ଶ୍ରୀରାମଚନ୍ଦ୍ରଙ୍କର ସମସ୍ତ ଗୁଣ ଓ ଆଚରଣ ଆଦର୍ଶ ଅଟେ। ସେଗୁଡ଼ିକରେ ଏପରି ଗୋଟିଏ କଥା ମଧ୍ୟ ନାହିଁ, ଯାହା ପରମ ଆଦର୍ଶ ଓ ଅନୁକରଣୀୟ ନୁହେଁ।

୨୩. ଯଦି ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମଙ୍କର ଭ୍ରାତୃପ୍ରେମର ଆଦର୍ଶ ଜଗତ୍ ମାନି ନିଅନ୍ତା, ତେବେ ସମସ୍ତ କଳହ ନଷ୍ଟ ହୋଇ ସବୁ ଭାଇମାନଙ୍କ ମଧ୍ୟରେ ଶାନ୍ତି ପ୍ରତିଷ୍ଠା ହୋଇ ଯାଆନ୍ତା।

୨୪. ସର୍ବଗୁଣସମ୍ପନ୍ନ ମହାରାଜ ଯୁଧିଷ୍ଠିରଙ୍କ ଜୀବନକୁ ଯଦି ଆମେ ଆଦର୍ଶ ମାନି ଚଳନ୍ତେ, ତେବେ ଆମ କଲ୍ୟାଣରେ ଟିକିଏ ମଧ୍ୟ ସନ୍ଦେହ ରହନ୍ତା ନାହିଁ।

୨୫. ଭାରତବାସୀଙ୍କ ପାଇଁ ଯୁଧିଷ୍ଠିରଙ୍କ ଜୀବନ ସତ୍‌ମାର୍ଗକୁ ନେଇ ଯାଉଥିବା ଏକ ଅଲୌକିକ ପଥପ୍ରଦର୍ଶକ ଅଟେ। ସେ ସଦ୍‌ଗୁଣ ଓ ସଦାଗ୍ଧରର ଭଣ୍ଡାର ଥିଲେ।

୨୬. ଦୁରାଚାରିତାର ମୂଳ କାରଣ ରାଗ-ଦ୍ୱେଷାଦି ଅବଗୁଣ। କାହାରି ଅନିଷ୍ଟ କରିବା, କାହାରି ସହିତ ଶତ୍ରୁତା କରିବା ବା କାହାରିକୁ ଦ୍ୱେଷ ବା ଘୃଣା କରିବା, ନିଜେ ନିଜର ପତନକୁ ଡାକି ଆଣିବା ସଙ୍ଗେ ସମାନ।

୨୭. ଅଜ୍ଞାନ ହିଁ ଅଧଃପତନର କାରଣ ଓ ଜ୍ଞାନ ହିଁ ଉତ୍ଥାନର କାରଣ।

୨୮. ପ୍ରତ୍ୟେକ ମନୁଷ୍ୟ ସହିତ ଯେଉଁ ବ୍ୟବହାର କରାଯାଏ, ସେଥିରେ ସ୍ୱାର୍ଥଦୃଷ୍ଟିକୁ ତ୍ୟାଗ କରିଦେବା ଉଚିତ। ସ୍ୱାର୍ଥ ଯୋଗୁଁ ହିଁ ବ୍ୟବହାର ଖରାପ ହୁଏ। କିନ୍ତୁ ସ୍ୱାର୍ଥକୁ ତ୍ୟାଗ କରିଦେଲେ ବ୍ୟବହାର ସୁଧୁରିଯାଏ।

୨୯. ଶାସ୍ତ୍ରସମୂହର ଏହା ଆଦେଶ ଯେ ଅନ୍ୟମାନଙ୍କ ପ୍ରତି ଆମେ ସେପରି ବ୍ୟବହାର କେବେ ହେଲେ କରିବା ଉଚିତ ନୁହେଁ, ଯାହା ଆମେ ନିଜ ପାଇଁ ପସନ୍ଦ କରୁ ନାହୁଁ—**"ଆତ୍ମନଃ ପ୍ରତିକୂଳାନି ପରେଷାଂ ନ ସମାଚରେତ୍ ।"**

୩୦. ଯଦି କୌଣସି ଜିନିଷ ବାଣ୍ଟି କରି ଖାଇବାର ଅଛି ତ ସେଥିରେ ନିଜ ପାଇଁ ଅଧିକ ରଖିବାର ପ୍ରବୃତ୍ତି ନ ରହିବା ଉଚିତ।

୩୧. ଗୃହସ୍ଥାଶ୍ରମରେ ମଧ୍ୟ ନିଜର ସୁଖଦୃଷ୍ଟିରୁ କୌଣସି ବସ୍ତୁ ସେବନ କରିବା ଉଚିତ ନୁହେଁ।

୩୨. ଭଜନ ଓ ଧ୍ୟାନ କରିବା ଉଚିତ। ସାତ୍ତ୍ୱିକ ପଦାର୍ଥ ଖାଇବା ଉଚିତ। ସଂଯମର ସହ ରହିବା ଉଚିତ।

୩୩. ଶ୍ରୀଭଗବାନଙ୍କ ଭକ୍ତ ହିଁ ପ୍ରକୃତ ବୈଦ୍ୟ ଅଟେ। ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ତଥା ସଂସାରର ବିଷୟ ଭୋଗସମୂହର ତ୍ୟାଗ ଆଉ ଯାହା କିଛି ଉତ୍ତମ ଆଚରଣ ଅଛି, ସେଗୁଡ଼ିକ ପଥ୍ୟ ଅଟେ।

୩୪. ସଂଯମ, ସେବା, ସଦାଚାର ଓ ସାଧନ—ଏହି ଚାରୋଟି 'ସ'କାର ଧାରଣ କଲେ ମୁକ୍ତିରେ କିଛି ସଂଦେହ ନାହିଁ। ଖୁବ୍ ଶୀଘ୍ର କଲ୍ୟାଣ ହୋଇପାରେ। ଇନ୍ଦ୍ରିୟ ଓ ମନକୁ ବିଷୟସମୂହରୁ ରୋକିବାକୁ ସଂଯମ; ଦୁଃଖୀ ଜୀବମାନଙ୍କୁ ପ୍ରତ୍ୟେକ ପ୍ରକାରରେ ସାହାଯ୍ୟ କରିବାକୁ ସେବା; ସତ୍‌ପୁରୁଷଙ୍କ ଦ୍ୱାରା ଆଚରିତ ଓ କଥିତ ମାର୍ଗକୁ ସଦାଚାର ଏବଂ ଭଜନ, ଧ୍ୟାନ, ସତ୍‌ସଙ୍ଗ, ଶାସ୍ତ୍ରର ଅଭ୍ୟାସ ଆଦିକୁ ସାଧନ ବୁଝିବା ଉଚିତ।

୩୫. ଦୁଇଟି କଥା ତ୍ୟାଗ କଲେ ବହୁତ ଲାଭ ମିଳେ। ଯଥା—ସ୍ତ୍ରୀମାନଙ୍କ ସଙ୍ଗ ଓ ବ୍ରାହ୍ମଣଙ୍କ ଠାରେ ଦ୍ୱେଷଭାବ।

୩୬. ଦୁଇଟି କଥା କରିବାର ଯୋଗ୍ୟ—ସଦାଗ୍ଭର ଓ ବିଦ୍ୟା ଅଭ୍ୟାସ।

୩୭. ନିଜର ବଡ଼ିମାକୁ ଭୟ କରିବା ଉଚିତ। ନିଜର ବଡ଼ିମା ପ୍ରଦର୍ଶନ କରିବାଦ୍ୱାରା ହିଁ ମହାରାଜ ତ୍ରିଶଙ୍କୁଙ୍କୁ ସ୍ୱର୍ଗରୁ ପତିତ ହେବାକୁ ପଡ଼ିଥିଲା।

୩୮. ବ୍ୟବହାର ବା ଆଚରଣ ବହୁତ ଉତ୍ତମ ହେବା ଉଚିତ, ଯେପରି ପାଣ୍ଡବମାନଙ୍କର ଓ ଶ୍ରୀରାମଚନ୍ଦ୍ରଙ୍କର। ଶ୍ରୀରାମଚନ୍ଦ୍ରଙ୍କ ସହ ଶ୍ରୀଭରତଙ୍କ ମିଳନ ଦେଖି ସୁଗ୍ରୀବ ଓ ବିଭୀଷଣଙ୍କୁ ଅନୁତାପ କରିବାକୁ ପଡ଼ିଥିଲା।

୩୯. ତୁମର ମନ୍ଦ ମନାସୁ ଥିବା ଲୋକର ମଙ୍ଗଳ କର—ଏହାଠାରୁ ବଳି ସଂସାରରେ ଆଉ ଉଚ୍ଚ ଶ୍ରେଣୀ ବା ସ୍ତର ନାହିଁ। ଏପରି ମନୁଷ୍ୟ, ମନୁଷ୍ୟରୂପରେ ନାରାୟଣ ଅଟେ, ନାରୀ ହୋଇଥିଲ ନାରୀ ରୂପରେ ଲକ୍ଷ୍ମୀ ଅଟେ।

୪୦. ମନ୍ଦ ମନାସୁ ଥିବା ଲୋକର ଯିଏ ମନ୍ଦ କରେ ନାହିଁ ତଥା ମଙ୍ଗଳ ମଧ୍ୟ କରେ ନାହିଁ, ସେ ଦୁଇ ନମ୍ବରରେ (ଦ୍ୱିତୀୟ ସ୍ତରର)। ମନ୍ଦ ସହିତ ମନ୍ଦ ଓ ଭଲ ସହିତ ଭଲ କରିବା, ଏହା ତିନି ନମ୍ବରର ନୀତି ଅଟେ, କିନ୍ତୁ ସାଧୁଦୃଷ୍ଟିରେ ନୀଚ ଶ୍ରେଣୀର ଅଟେ। ଏ କଥା ତ ପଶୁମାନଙ୍କ ଠାରେ ମଧ୍ୟ ଦେଖାଯାଏ। ନିଜର ଭଲ ବା ମଙ୍ଗଳ କରୁଥିବା ଲୋକର ମଙ୍ଗଳକୁ ଭୁଲିଯିବା କୃତଘ୍ନତା ଅଟେ। ମଙ୍ଗଳ କରୁଥିବା ଲୋକ ସହ ମନ୍ଦ ଆଚରଣ କରୁଥିବା ଲୋକର ନୀଚତାକୁ କୁହାଯାଇ ନ ପାରେ। ଶାସ୍ତ୍ରରେ ସେମାନଙ୍କର ସଂଜ୍ଞା ନାହିଁ—**"ତେ କେ ନ ଜାନୀମହେ।"**

୪୧. ଦୁଇଟି କଥା ସବୁବେଳେ ମନେରଖ—(୧) ତୁମର ଯଦି କେହି ମଙ୍ଗଳ କରିଛି, ତାକୁ ଭୁଲ ନାହିଁ। (୨) ତୁମଦ୍ୱାରା ଯଦି କାହାରି କୌଣସି ପ୍ରକାରର ଅପରାଧ ହୋଇଗଲା, ତାକୁ ମନେରଖ।

୪୨. ଦୁଇଟି କଥା ଶୀଘ୍ର ଭୁଲି ଯାଅ—(୧) ତୁମର କେହି ଯଦି ମନ୍ଦ କରିଛି, ତାକୁ ଭୁଲିଯାଅ। (୨) ତୁମଦ୍ୱାରା ଯଦି କାହାରି ଉପକାର ହୋଇଛି, ତାକୁ ମଧ୍ୟ ଭୁଲିଯାଅ।

୪୩. ସେବା ଅଭ୍ୟାସ କରିବା ଉଚିତ। ନିଜ ଘରକୁ ଆସିଥିବା ଅତିଥିକୁ ଖୁବ୍ ସତ୍କାର କରିବା ଉଚିତ।

୪୪. ଯଦି କୌଣସି କଠିନ କାର୍ଯ୍ୟ ଆସି ପହଞ୍ଚିଲା, ତାହାକୁ ନିଜେ କରିବାକୁ ପ୍ରସ୍ତୁତ ହୋଇଯାଅ।

୪୫. ଯିଏ ଭଲ କଥାକୁ ବୁଝି ମଧ୍ୟ ତାହା ପାଳନ ନ କରେ ଓ ମନ୍ଦ କଥାକୁ ବୁଝି ମଧ୍ୟ ତାକୁ ତ୍ୟାଗ ନ କରେ, ତାହାର ପତନ ଅବଶ୍ୟମ୍ଭାବୀ।

୪୬. ନିଜର ହିତ ଚାହୁଁଥିବା ମନୁଷ୍ୟ ନିଜର ସମସ୍ତ ଦୋଷକୁ ମୃତ୍ୟୁସମାନ ଭାବି ସର୍ବଥା ତ୍ୟାଗ କରିଦେବା ଉଚିତ।

୪୭. ମନୁଷ୍ୟକୁ ନିଜ ଦୋଷ ଶୀଘ୍ର ଦେଖାଯାଏ ନାହିଁ, କିନ୍ତୁ କାହାରି ଦ୍ୱାରା ନିଜ ଦୋଷଗୁଡ଼ିକପାଇଁ ଚେତାବନୀ ଦିଆଗଲେ କଲ୍ୟାଣକାମୀ ପୁରୁଷ ସେଗୁଡ଼ିକୁ ଦୂର କରିବାର ଚେଷ୍ଟା କରେ।

୪୮. ଛଅ ଘଣ୍ଟାରୁ ଅଧିକ ଶୋଇବା ଏବଂ ଭଜନ, ଧ୍ୟାନ ସତ୍‌ସଙ୍ଗ ଆଦି ଶୁଭ କାର୍ଯ୍ୟଗୁଡ଼ିକରେ ଢୋଳାଇବା ଆଳସ୍ୟ ଅଟେ।

୪୯. କରିବା ଯୋଗ୍ୟ କାର୍ଯ୍ୟର ଅବହେଳନା କରିବା ଏବଂ ଇନ୍ଦ୍ରିୟ, ମନ, ବୁଦ୍ଧି ଓ ଶରୀରଦ୍ୱାରା ବ୍ୟର୍ଥଚେଷ୍ଟା କରିବା ପ୍ରମାଦ ଅଟେ।

୫୦. ସଉକ, ସ୍ୱାଦ ଓ ଆରାମ-ବୁଦ୍ଧିରେ ଇନ୍ଦ୍ରିୟଭୋଗ୍ୟ ବିଷୟସମୂହର ସେବନ କରିବା ଭୋଗ ଅଟେ।

୫୧. ମିଥ୍ୟା, କପଟ, ହିଂସା, ଚୋରୀ, ଜାରୀ (ପରସ୍ତ୍ରୀଗମନ) ଆଦି ଶାସ୍ତ୍ରବିପରୀତ ଆଚରଣର ନାମ ଦୁରାଚାର (ପାପ) ଅଟେ।

୫୨. ସଦ୍‌ଗୁଣ ଏବଂ ସଦାଚାରର ସେବନ ତଥା ଦୁର୍ଗୁଣ ଏବଂ ଦୁରାଚାରର ତ୍ୟାଗ ହିଁ ଶୁଦ୍ଧ ସାତ୍ତ୍ୱିକ ଜୀବନର ସ୍ୱରୂପ।

୫୩. ନିଜଠାରୁ ଅଧିକ ଗୁଣବାନ୍‌କୁ ଦେଖି ସୁଖୀ ହେବା ଏବଂ କମ୍ ଗୁଣବାନ୍‌କୁ ଦେଖି ତା'ଉପରେ ଦୟା କରିବା ଓ ସମକକ୍ଷ ଲୋକ ସହିତ ମିତ୍ରତା ରଖିବା ଉଚିତ। ଏ ପ୍ରକାର କରିବା ଦ୍ୱାରା ମନୁଷ୍ୟକୁ ପୀଡ଼ା ଓ ତାପ ହୁଏ ନାହିଁ।

୫୪. ନିଜ ଗୁଣଗୁଡ଼ିକୁ ଲୁଚାଇ ରଖ ତଥା କାହାରି ନିନ୍ଦା ବା ସ୍ତୁତି କର ନାହିଁ। କରିବାକୁ ହେଲେ କାହାରି ସ୍ତୁତି କରିପାର। ନିନ୍ଦା ନିଜର କରାଯାଇପାରେ, ସ୍ତୁତି କରିବାର ଯୋଗ୍ୟ କେବଳ ପରମାତ୍ମା ହିଁ ଅଟନ୍ତି।

୫୫. କାହାରି ନିନ୍ଦା କରିବାଦ୍ୱାରା ପାପ ହୋଇଥାଏ। କିନ୍ତୁ ଜ୍ଞାନୀ, ଶାସ୍ତ୍ର ଓ ଈଶ୍ୱରଙ୍କ ନିନ୍ଦାର ପାପ ଅଧିକ ଅଟେ।

୫୬. ଡରୁଥିବା ଲୋକକୁ, ଭକ୍ତକୁ, ''ମୋର କେହି ନାହାନ୍ତି'' ଏପରି କହୁଥିବା ଶରଣାଗତକୁ, ନିର୍ବଳକୁ ତଥା ପ୍ରାଣରକ୍ଷା ଚାହୁଁଥିବା ଲୋକକୁ ନିଜର ପ୍ରାଣ ଚାଲିଗଲେ ମଧ୍ୟ ତ୍ୟାଗ କରିବାକୁ କେବେ ଚେଷ୍ଟା କର ନାହିଁ।

୫୭. ଶରଣାଗତକୁ ଭୟ ଦେଖାଇବା, ସ୍ତ୍ରୀ ବଧ କରିବା, ବ୍ରାହ୍ମଣ ଧନ ହରଣ କରି ନେବା ଓ ମିତ୍ରଙ୍କ ସହ ଦ୍ରୋହ କରିବା—ଏହି ଚାରୋଟି କର୍ମଦ୍ୱାରା ଯେତିକି ପାପ ହୁଏ, କେବଳ ଜଣେ ଭକ୍ତକୁ ତ୍ୟାଗ କଲେ ସେତିକି ପାପ ହୁଏ।

୫୮. ମାନ-ବଡ଼ିମା ଅଥବା ପ୍ରତିଷ୍ଠାର ଇଚ୍ଛା କରିବା ମୃତ୍ୟୁ ଇଚ୍ଛା କରିବା ସହ ସମାନ ଅଟେ।

୫୯. କୁତର୍କକାରୀଙ୍କ ସହ ବିଶେଷ କଥାବାର୍ତ୍ତା କରିବା ଉଚିତ ନୁହେଁ।

୬୦. କାମ, କ୍ରୋଧ ଓ ଲୋଭ—ଏହି ତିନୋଟି ପ୍ରବଳ ଶତ୍ରୁ ଅଟନ୍ତି, ଏମାନେ ସାକ୍ଷାତ୍ ନରକକୁ ନେଇ ଯାଆନ୍ତି। ଏଣୁ ଏଗୁଡ଼ିକ ଠାରୁ ବିଶେଷଭାବରେ ସାବଧାନ ରହିବା ଉଚିତ।

୬୧. ଅନ୍ତଃକରଣ ସଂଯମର ନାମ ଶମ ଓ ଇନ୍ଦ୍ରିୟଙ୍କର ସଂଯମର ନାମ ଦମ ଅଟେ। ଏଗୁଡ଼ିକୁ ସ୍ମୃତିକାରଗଣ ଧର୍ମର ଅଙ୍ଗ ମାନିଛନ୍ତି।

୬୨. ବଶୀଭୂତ କରାଯାଇଥିବା ମନ-ଇନ୍ଦ୍ରିୟ ମିତ୍ର ସମାନ ଓ ବଶୀଭୂତ କରାଯାଇ ନ ଥିଲେ ଶତ୍ରୁ ସମାନ ଅଟନ୍ତି।

୬୩. ବାଣୀର ସଂଯମ ଉପରେ ଖୁବ୍ ଧ୍ୟାନ ରଖିବା ଉଚିତ। ସବୁବେଳେ ବିଚାର କରି କଥା କୁହ। ବାଣୀରୂପକ ତପର ବହୁତ ମହତ୍ତ୍ୱ ଅଛି।

୬୪. ନେତ୍ରଯୁଗଳର ସଂଯମର ମଧ୍ୟ ବଡ଼ ଆବଶ୍ୟକତା ଅଛି। ସାଂସାରିକ ପଦାର୍ଥଗୁଡ଼ିକ ଆଡ଼କୁ ନେତ୍ରଦ୍ୱୟକୁ ଯିବାକୁ ଦିଅ ନାହିଁ, ଯଦି ଏପରି ସମ୍ଭବ ନ ହୁଏ, ତେବେ ଅନ୍ତତଃ ସ୍ତ୍ରୀମାନଙ୍କ ଆଡ଼କୁ ସେଗୁଡ଼ିକର ପ୍ରବୃତ୍ତି ହେବାକୁ ଆଦୌ ଦିଅ ନାହିଁ। ଯଦି ପ୍ରବୃତ୍ତି ଚାଲିଯାଏ, ତେବେ ଉପବାସ କର।

୬୫. ମନ, ବୁଦ୍ଧି ଓ ଇନ୍ଦ୍ରିୟଗୁଡ଼ିକର ସଂଯମର ବହୁତ ଆବଶ୍ୟକତା ଅଛି, କାରଣ ବିନା ସଂଯମରେ ଏଗୁଡ଼ିକ ମନୁଷ୍ୟର ପତନ କରି ଦିଅନ୍ତି।

୬୬. ମନୁଷ୍ୟକୁ ରକ୍ଷା କରିବା ପାଇଁ ସଂଯମ ଏକ ସୁଦୃଢ଼ ଦୁର୍ଗ ଅଟେ। ତାକୁ ପ୍ରତ୍ୟେକ ଶତ୍ରୁ ଭାଙ୍ଗି ପାରେ ନାହିଁ। ମନ, ବୁଦ୍ଧି ଓ ଇନ୍ଦ୍ରିୟଙ୍କୁ ବିଷୟସମୂହରୁ

ରୋକିବା ହିଁ ସଂଯମ ଅଟେ। ସାଂସାରିକ ଭୋଗ ପଦାର୍ଥଗୁଡ଼ିକରୁ ଇନ୍ଦ୍ରିୟ ଓ ମନର ବୃତ୍ତିସମୂହକୁ ବୈରାଗ୍ୟ, ବିବେକ ବା ଭୟ ଦେଖାଇ ତଥା ଜିଦ୍ ଦ୍ୱାରା ମଧ୍ୟ ରୋକିବା ଉଚିତ। ଏହାଦ୍ୱାରା ରକ୍ଷା ହୁଏ।

୬୭. ମହାରାଜ ଯୁଧିଷ୍ଠିର ଯକ୍ଷକୁ କହିଲେ—

ବେଦକୁ ଅଭ୍ୟାସ କଲେ ମନୁଷ୍ୟ ଶ୍ରୋତ୍ରିୟ ହୁଏ। ତପସ୍ୟାଦ୍ୱାରା ମହତ୍ତ୍ୱ ପ୍ରାପ୍ତ କରେ। ଧୈର୍ଯ୍ୟ ରଖିବା ଦ୍ୱାରା ଅନ୍ୟମାନେ ସହାୟକ ହୋଇଯାଆନ୍ତି। ବୃଦ୍ଧଙ୍କର ସେବା କଲେ ମନୁଷ୍ୟ ବୁଦ୍ଧିମାନ୍ ହୁଏ। ତିନି ବେଦ ଅନୁସାରେ କରାଯାଇଥିବା କର୍ମ ନିତ୍ୟ ଫଳ ଦିଏ। ମନକୁ ବଶରେ ରଖିଲେ ମନୁଷ୍ୟକୁ କେବେ ଶୋକର ଶିକାର ହେବାକୁ ପଡ଼େ ନାହିଁ। ସତ୍‌ପୁରୁଷଙ୍କ ସହ କରାଯାଇଥିବା ମିତ୍ରତା ଶୀର୍ଣ୍ଣ ହୁଏ ନାହିଁ। ମାନର ତ୍ୟାଗଦ୍ୱାରା ମନୁଷ୍ୟ ସମସ୍ତଙ୍କର ପ୍ରିୟ ହୁଏ। କ୍ରୋଧ ତ୍ୟାଗ କଲେ ଶୋକରହିତ ହୁଏ। କାମନା ତ୍ୟାଗଦ୍ୱାରା ଅର୍ଥ ସିଦ୍ଧି ହୁଏ। ଲୋଭ ତ୍ୟାଗରେ ସେ ସୁଖୀ ହୁଏ। ସ୍ୱଧର୍ମପାଳନର ନାମ ତପ, ମନକୁ ବଶରେ ରଖିବା ଦମ, ସହନ କରିବାର ନାମ କ୍ଷମା, ଅକର୍ତ୍ତବ୍ୟରୁ ବିମୁଖ ହୋଇଯିବା ଲଜ୍ଜା, ତତ୍ତ୍ୱକୁ ଯଥାର୍ଥରୂପେ ଜାଣିବା ଜ୍ଞାନ, ଚିତ୍ତର ଶାନ୍ତଭାବର ନାମ ଶମ, ସମସ୍ତଙ୍କୁ ସୁଖୀ ଦେଖିବାର ଇଚ୍ଛାର ନାମ ଆର୍ଜବ ଅଟେ। କ୍ରୋଧ ମନୁଷ୍ୟର ଶତ୍ରୁ। ଲୋଭ ଅସୀମ ବ୍ୟାଧି ଅଟେ। ଯିଏ ସମସ୍ତ ପ୍ରାଣୀଙ୍କର ହିତରେ ରତ ରହେ, ସେ ସାଧୁ; ଏବଂ ଯିଏ ନିର୍ଦ୍ଦୟୀ, ସେ ଅସାଧୁ ଅଟେ। ଧର୍ମପାଳନରେ ମୂଢ଼ତା ହିଁ ମୋହ, ଅଭିମାନ ହିଁ ମାନ, ଧର୍ମରେ ଅକର୍ମଣ୍ୟତା ହିଁ ଆଳସ୍ୟ, ଶୋକ କରିବା ମୂର୍ଖତା, ସ୍ୱଧର୍ମରେ ଅଟଳ ରହିବା ହିଁ ସ୍ଥିରତା ଅଟେ। ଇନ୍ଦ୍ରିୟନିଗ୍ରହ ଧୈର୍ଯ୍ୟ ଓ ମନର ମଳିକୁ ତ୍ୟାଗ କରିବା ସ୍ନାନ ଅଟେ। ପ୍ରାଣୀଙ୍କୁ ରକ୍ଷା କରିବା ଦାନ ଅଟେ। ଧର୍ମକୁ ଜାଣିଥିବା ଲୋକ ପଣ୍ଡିତ ତଥା ନାସ୍ତିକ ହିଁ ମୂର୍ଖ ଅଟେ। ଜନ୍ମ-ମରଣରୂପୀ ସଂସାରକୁ ପ୍ରାପ୍ତ କରାଉଥିବା ବାସନାର ନାମ କାମ ଅଟେ। ଅନ୍ୟର ଉନ୍ନତିକୁ ଦେଖି ମନରେ ଯେଉଁ ସନ୍ତାପ ହୁଏ, ତାର ନାମ ମତ୍ସରତା ଅଟେ। ଅହଂକାର ହିଁ ମହା ଅଜ୍ଞାନ ଅଟେ। ମିଥ୍ୟା ଧର୍ମାଚରଣ ଦେଖାଇବାର ନାମ ଦମ୍ଭ ଅଟେ। ଅନ୍ୟର ଦୋଷକୁ ଦେଖିବା ପିଶୁନତା ଅଟେ। ଯେଉଁ ପୁରୁଷ ବେଦ, ଧର୍ମଶାସ୍ତ୍ର, ବ୍ରାହ୍ମଣ, ଦେବତା, ଶ୍ରାଦ୍ଧ ଓ ପିତୃଗଣ ଆଦିରେ ମିଥ୍ୟା ବୁଦ୍ଧି ରଖେ, ସେ ଅକ୍ଷୟ ନରକକୁ ଯାଏ। ପ୍ରିୟ

କଥା କହୁଥିବା ବ୍ୟକ୍ତି ଲୋକଙ୍କର ପ୍ରିୟ ହୁଏ । ବିଗ୍ଚର କରି କାର୍ଯ୍ୟ କରିବାଲୋକ ପ୍ରାୟ ବିଜୟ ଲାଭ କରେ । ମିତ୍ରଙ୍କ ସଂଖ୍ୟା ବଢ଼ାଉଥିବା ଲୋକ ସୁଖପୂର୍ବକ ରହେ । ଧର୍ମରେ ରତ ପୁରୁଷ ସଦ୍‌ଗୁଣ ଆଦିକୁ ପ୍ରାପ୍ତ କରେ । ପ୍ରତିଦିନ ପ୍ରାଣୀ ଯମଲୋକକୁ ଯାତ୍ରା କରନ୍ତି; ଏହା ଦେଖି ମଧ୍ୟ ବଳକା ଲୋକେ ସଦା ସ୍ଥିର ରହିବାକୁ ଚ୍ହାନ୍ତି—ଏହାଠାରୁ ବଳି ଆଉ ଆଶ୍ଚର୍ଯ୍ୟ କ'ଣ ଅଛି? ଯାହାପାଇଁ ପ୍ରିୟ-ଅପ୍ରିୟ, ସୁଖ-ଦୁଃଖ, ଭୂତ-ଭବିଷ୍ୟ ଆଦି ସବୁ ସମାନ, ସେ ନିଃସନ୍ଦେହରେ ସବୁଠାରୁ ବଡ଼ ଧନୀ ଅଟେ ।

୬୮. ସତ୍‌ଶାସ୍ତ୍ର, ମହାପୁରୁଷଙ୍କ ବଚନ, ହୃଦୟର ସାତ୍ତ୍ୱିକ ସ୍ଫୁରଣ—ଏ ତିନିଗୋଟି ଭଗବାନଙ୍କ ଆଜ୍ଞା ଅଟନ୍ତି । ଏହି ତିନି ମଧ୍ୟରେ ମତଭେଦ ପ୍ରତୀତ ହେଲେ ଯେଉଁଠି ଦୁଇଟିର ଏକତା ଥିବ, ତାହାକୁ ହିଁ ଭଗବାନଙ୍କ ଆଜ୍ଞା ଭାବି କାମରେ ଲଗାଇବା ଉଚିତ ।

୬୯. ଶ୍ରୁତି, ସ୍ମୃତି, ଇତିହାସ, ପୁରାଣାଦି ଯେଉଁ ଆର୍ଷ ଗ୍ରନ୍ଥ ଅଛି, ସେ ସମସ୍ତ ଶାସ୍ତ୍ର ଅଟେ । କିନ୍ତୁ ଏଗୁଡ଼ିକରେ ମତଭେଦ ପ୍ରତୀତ ହେଲେ ଶ୍ରୁତିକୁ ବଳବାନ୍ ବୁଝିବା ଉଚିତ, କାରଣ ସ୍ମୃତି, ଇତିହାସ, ପୁରାଣାଦିର ଆଧାର ଶ୍ରୁତି ହିଁ ଅଟେ ।



# ନିତ୍ୟକର୍ମ ଓ ଉପାସନା

୧. ସକାଳ ଓ ସନ୍ଧ୍ୟା ଉଭୟ ସମୟରେ ନିୟମିତ ରୂପେ ନିଜ ନିଜ ଅଧିକାର ଅନୁସାରେ ଈଶ୍ୱରଙ୍କୁ ଉପାସନା ନିଶ୍ଚିତଭାବେ କରିବା ଉଚିତ ।

୨. ପ୍ରତ୍ୟେକ ମନୁଷ୍ୟକୁ ଅଧିକାରାନୁସାରେ ସ୍ୱାଧ୍ୟାୟ କରିବା ଉଚିତ । ଗୀତା, ରାମାୟଣ, ମହାଭାରତ, ବେଦ, ଉପନିଷଦ୍ ଆଦିର ସ୍ୱାଧ୍ୟାୟ କରିବା ସବୁଠୁଁ ଉତ୍ତମ । ଗୀତା, ରାମାୟଣ ଓ ମହାପୁରୁଷଙ୍କ ବଚନରେ ସମସ୍ତଙ୍କର ଅଧିକାର ଅଛି ଓ ସେଗୁଡ଼ିକ ସମସ୍ତଙ୍କ ପାଇଁ ଲାଭପ୍ରଦ ଅଟନ୍ତି । ଏଣୁ ପ୍ରତିଦିନ ନିୟମତଃ ଏବଂ ପ୍ରେମପୂର୍ବକ ସେଗୁଡ଼ିକର ସ୍ୱାଧ୍ୟାୟ କରିବା ଉଚିତ ।

୩. ସକାଳେ ଓ ସନ୍ଧ୍ୟାରେ ଆମେ ଯେଉଁ ନିତ୍ୟକର୍ମ କରୁଛୁ, ତାହା ହିଁ ଆମ ଜୀବନର ଏକ ମୁଖ୍ୟ ଲାଭର କଥା । ସେ ଆଡ଼କୁ ଆମେ ଅଧିକରୁ ଅଧିକ ଧ୍ୟାନ ଦେବା ଉଚିତ ।

୪. ପ୍ରାୟ ଲୋକେ ନିତ୍ୟକର୍ମକୁ ବାଧ୍ୟ ହୋଇ କରିବା ପରି କରନ୍ତି ଓ ସେଥିରେ ଚିତ୍ତ ଲଗାନ୍ତି ନାହିଁ। ଏଣୁ ତାହାଦ୍ୱାରା ଯେଉଁ ଲାଭ ହେବା କଥା, ତାହା ହୁଏ ନାହିଁ।

୫. ଚବିଶ ଘଣ୍ଟା ଭିତରେ ଯେତେ ସମୟ ନିତ୍ୟ-କର୍ମରେ ଲାଗେ, ତାହା ହିଁ ପରମ ଉତ୍ତମ ଓ ପରମ ପୁଣ୍ୟକାଳ ଅଟେ।

୬. ପ୍ରାଣାୟାମ, ଧ୍ୟାନ, ଜପ, ଗୀତାପାଠ, ସ୍ତୋତ୍ରପାଠ, ସ୍ତୁତି ଆଦି ସବୁ କିଛି ଉପାସନା। ଏହି ଉପାସନା ହିଁ ଈଶ୍ୱରଙ୍କ ପୂଜା ଅଟେ।

୭. ନିତ୍ୟକର୍ମକୁ ଯଦି ଆଦର ଓ ପ୍ରେମ ସହିତ କରାଯାଏ, ତା'ହେଲେ ଖୁବ୍ ଶୀଘ୍ର ଲାଭପ୍ରଦ ହେବ।

୮. ଉପାସନାରେ ପ୍ରେମ ଓ ଆଦର ହିଁ ମୁଖ୍ୟ ଅଟେ। ପ୍ରେମରେ ମୁଗ୍ଧ ହୋଇ ଯାହା କିଛି ବି କରାଯାଏ, ତାହାର ପ୍ରଭାବ ଅଟଳ ରହେ ଏବଂ ସ୍ଥାୟୀ ହୁଏ ଓ ଖୁବ୍ ଶୀଘ୍ର ଲାଭଦାୟକ ହୋଇଥାଏ।

୯. ଆଦର ଓ ପ୍ରେମ ବିନା ବର୍ଷ ବର୍ଷ ଧରି କରାଯାଉଥିବା ଉପାସନାର ବିଶେଷ ଲାଭ ଦେଖାଯାଏ ନାହିଁ। କିନ୍ତୁ ଗୋଟିଏ ଦିନ, ଗୋଟିଏ ବେଳା ହିଁ ପ୍ରେମ ଓ ଆଦରପୂର୍ଣ୍ଣ ତଥା ହୃଦୟର ସହ ଯେଉଁ ଉପାସନା ହୁଏ, ତାହାର ପରମ ମହାନ୍ ଫଳ ବହୁତ ଶୀଘ୍ର ଦେଖାଯାଏ ଓ ହୃଦୟକୁ ଏକ ଅପୂର୍ବ ଆନନ୍ଦ ଓ ଶାନ୍ତି ମିଳେ।

୧୦. ଉପାସନାରେ ହୃଦୟର ପୂର୍ଣ୍ଣ ସହଯୋଗ ରହିବା ଉଚିତ। ଧ୍ୟାନ, ଜପ, ପ୍ରାଣାୟାମରେ ସମ୍ପୂର୍ଣ୍ଣ ମନୋଯୋଗ ରହୁ—ଏହା ଉପରେ ଖୁବ୍ ଧ୍ୟାନ ଦେବା ଉଚିତ।

୧୧. ଯିଏ ଯେତିକି ତତ୍ପରତା, ଏକନିଷ୍ଠତା, ପ୍ରେମ ଏବଂ ଆଦର-ବୁଦ୍ଧିଦ୍ୱାରା ପୂଜା କରନ୍ତି, ତାଙ୍କ ପୂଜା ସେତିକି ଅଧିକ ମହତ୍ତର ଓ ମୂଲ୍ୟବାନ୍ ହୁଏ ଓ ପୂଜା ଗ୍ରହଣକାରୀକୁ ତା'ଦ୍ୱାରା ସେତିକି ପ୍ରସନ୍ନତା ପ୍ରାପ୍ତ ହୁଏ।

୧୨. ରାତି ଓ ଦିନର ସନ୍ଧିକ୍ଷଣରେ ଆମେ ଦୁଇଥର ଯେଉଁ ସନ୍ଧ୍ୟୋପାସନ କରୁଁ, ତାହା ହିଁ ଈଶ୍ୱରୋପାସନା ଅଟେ।

୧୩. ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କୁ ଯଜ୍ଞୋପବୀତ ନିଶ୍ଚିତ ନେବା ଉଚିତ।

୧୪. ସୂର୍ଯ୍ୟୋଦୟର ପୂର୍ବରୁ ପ୍ରାତଃ ସନ୍ଧ୍ୟା ଓ ସୂର୍ଯ୍ୟାସ୍ତ ପୂର୍ବରୁ ସାୟଂ ସନ୍ଧ୍ୟା ନିୟମାନୁସାରେ ଆଦର ଓ ପ୍ରେମପୂର୍ବକ କରିବା ଉଚିତ। ସନ୍ଧ୍ୟା ଦ୍ୱାରା ଲାଭ ଜଣା ନ ଯିବାରେ ଆମ ଶ୍ରଦ୍ଧା ଓ ପ୍ରେମର ନ୍ୟୂନତା ହିଁ କାରଣ ଅଟେ।

୧୫. ପ୍ରତ୍ୟେକ ଦ୍ୱିଜ ବୋଲାଉଥିବା ଲୋକ ନିତ୍ୟ ନିୟମପୂର୍ବକ ଉଭୟ ସମୟ (ପ୍ରାତଃକାଳ ଓ ସାୟଂକାଳ) ବୈଦିକ ବିଧିରେ ଅର୍ଥାତ୍ ବେଦୋକ୍ତ ମନ୍ତ୍ରଗୁଡ଼ିକଦ୍ୱାରା ଉପାସନା କରିବା ବିଧେୟ।

୧୬. ଯେତେ ଦୂର ସମ୍ଭବ, ତିନି କାଳର ସନ୍ଧ୍ୟା ଠିକ୍ ସମୟରେ କରାଯାଉ ଅର୍ଥାତ୍ ପ୍ରାତଃ-ସନ୍ଧ୍ୟା ସୂର୍ଯ୍ୟୋଦୟର ପୂର୍ବରୁ, ସାୟଂ-ସନ୍ଧ୍ୟା ସୂର୍ଯ୍ୟାସ୍ତ ପୂର୍ବରୁ କରାଯାଉ ଓ ମଧ୍ୟାହ୍ନ ସନ୍ଧ୍ୟା ଦ୍ୱିପ୍ରହର ସମୟରେ କରାଯାଉ। ସମୟର ବନ୍ଧନ ରଖିବାଦ୍ୱାରା ନିୟମର ବନ୍ଧନ ଆପେ ଆପେ ହୋଇଯିବ।

୧୭. ସନ୍ଧ୍ୟା ସମ୍ବନ୍ଧରେ ପ୍ରଥମ କଥା ହେଲା, ତାହା ପ୍ରତିଦିନ ନିୟମପୂର୍ବକ କରାଯାଉ। ଯଦି କାଳ ଲୋପ ହୋଇଯାଏ କୌଣସି ଅସୁବିଧା ନାହିଁ, କିନ୍ତୁ କର୍ମ ଲୋପ ନ ହେଉ।

୧୮. ସନ୍ଧ୍ୟା ଅତ୍ୟନ୍ତ ପ୍ରେମପୂର୍ବକ କରିବା ଉଚିତ। ଅର୍ଥ ଉପରେ ଧ୍ୟାନ ରଖି ଗାୟତ୍ରୀମନ୍ତ୍ରକୁ ଜପ କରିବା ଉଚିତ।

୧୯. ସନ୍ଧ୍ୟାର ପ୍ରଧାନ ଅଙ୍ଗ ଗାୟତ୍ରୀ-ଜପ। ଗାୟତ୍ରୀକୁ ଆମ ଶାସ୍ତ୍ରମାନଙ୍କରେ ବେଦମାତା କୁହାଯାଇଛି। ଗାୟତ୍ରୀର ମହିମା ଚାରିବେଦ ଗାଇଛନ୍ତି।

୨୦. ଯେଉଁ ଫଳ ଚାରିବେଦ ଅଧ୍ୟୟନରେ ହୁଏ, ତାହା ଏକମାତ୍ର ବ୍ୟାହୃତିପୂର୍ବକ ଗାୟତ୍ରୀ ମନ୍ତ୍ର ଜପଦ୍ୱାରା ହୋଇପାରେ।

୨୧. ସ୍ୱାଧ୍ୟାୟଦ୍ୱାରା ଋଷିମାନଙ୍କର, ଯଜ୍ଞ ବା ହୋମଦ୍ୱାରା ଦେବତାମାନଙ୍କର, ତର୍ପଣ ଓ ଶ୍ରାଦ୍ଧଦ୍ୱାରା ପିତୃମାନଙ୍କର, ଅନ୍ନଦ୍ୱାରା ମନୁଷ୍ୟଙ୍କର ଓ ବଳିବୈଶ୍ୱଦେବ-ଦ୍ୱାରା ସମସ୍ତ ପ୍ରାଣୀଙ୍କର ଯଥାଯୋଗ୍ୟ ସତ୍କାର କରିବା ଉଚିତ।

୨୨. ପଞ୍ଚମହାଯଜ୍ଞଦ୍ୱାରା ଆମର ଦୈନନ୍ଦିନ ପାପସମୂହର ପ୍ରାୟଶ୍ଚିତ୍ତ ହୋଇଥାଏ। ଯଦି ସ୍ୱାର୍ଥତ୍ୟାଗପୂର୍ବକ ନିଷ୍କାମଭାବେ କେବଳ ଭଗବତ୍ ପ୍ରୀତ୍ୟର୍ଥ ଏଗୁଡ଼ିକ କରାଯାଏ, ତେବେ ଏଗୁଡ଼ିକ ଦ୍ୱାରା ଭଗବତ୍‌ପ୍ରାପ୍ତି ମଧ୍ୟ ହୋଇଯାଏ।

୨୩. ବ୍ରହ୍ମଯଜ୍ଞ (ଋଷିଯଜ୍ଞ), ପିତୃଯଜ୍ଞ, ଦେବଯଜ୍ଞ, ଭୂତଯଜ୍ଞ (ବଳି-ବୈଶ୍ୱଦେବ) ଓ ମନୁଷ୍ୟଯଜ୍ଞ—ଏ ପାଞ୍ଚଟି ମହାଯଜ୍ଞ ରୂପେ କଥିତ।

**ଅଧ୍ୟାପନଂ ବ୍ରହ୍ମଯଜ୍ଞଃ ପିତୃଯଜ୍ଞସ୍ତୁ ତର୍ପଣମ୍ ।**
**ହୋମୋ ଦୈବୋ ବଳିର୍ଭୌତୋ ନୃଯଜ୍ଞୋଽତିଥିପୂଜନମ୍ ॥**
(ମନୁ. ୩ । ୭୦)

ବେଦଶାସ୍ତ୍ରର ପଠନ-ପାଠନ ଏବଂ ସନ୍ଧ୍ୟୋପାସନ, ଗାୟତ୍ରୀ ଜପ ଆଦି ବ୍ରହ୍ମଯଜ୍ଞ (ଋଷିଯଜ୍ଞ) ଅଟେ । ନିତ୍ୟ ଶ୍ରାଦ୍ଧତର୍ପଣ ପିତୃଯଜ୍ଞ ଅଟେ । ହୋମ ଦେବଯଜ୍ଞ ଅଟେ । ବଳିବୈଶ୍ୱଦେବ ଭୂତଯଜ୍ଞ ଅଟେ ଓ ଅତିଥି-ସତ୍କାର ମନୁଷ୍ୟଯଜ୍ଞ ଅଟେ ।

୨୪. ଅତିଥିସେବା ଏବଂ ଦେବତା, ପିତୃଗଣ ଓ ଋଷିମାନଙ୍କ ସେବା—ଏପରି କି ସମସ୍ତ ଭୂତପ୍ରାଣୀଙ୍କ ସେବା ଗୃହସ୍ଥ ପାଇଁ ଅନିବାର୍ଯ୍ୟ ବୋଲି ସ୍ୱୀକାର କରାଯାଇଅଛି ।

୨୫. ସମସ୍ତଙ୍କୁ ଭୋଜନ ଦେବା ପରେ ବଳକା ଥିବା ଅନ୍ନ ଯଜ୍ଞଶିଷ୍ଟ ହେବା କାରଣରୁ ଅମୃତତୁଲ୍ୟ ଅଟେ ।

୨୬. ଯେଉଁ ମନୁଷ୍ୟ ଅନ୍ୟମାନଙ୍କୁ ଭୋଜନ ନ ଦେଇ କେବଳ ନିଜର ଉଦର-ପୋଷଣ ପାଇଁ ଭୋଜନ ପ୍ରସ୍ତୁତ କରେ, ସେ ପାପାୟୁ ମନୁଷ୍ୟ ପାପକୁ ହିଁ ଖାଏ—

**ଅଘଂ ସ କେବଳଂ ଭୁଙ୍କ୍ତେ ଯଃ ପଚତ୍ୟାତ୍ମକାରଣାତ୍ ।** (ମନୁ. ୩ । ୧୧୮)



## ସତ୍ୟ

୧. ବାଣୀରେ ସତ୍ୟ କୁହ, ବ୍ୟବହାର ସତ୍ୟ କର, ସତ୍ୟର ଆଚରଣ କର । ଏହାଦ୍ୱାରା କଲ୍ୟାଣ ହୁଏ ।

୨. ମହାଭାରତରେ କୁହାଯାଇଛି ଯେ—ଥରେ ସହସ୍ର ଅଶ୍ୱମେଧଯଜ୍ଞର ଫଳ କେବଳ ସତ୍ୟର ମହାଫଳ ସହ ତଉଲା ଗଲା । କିନ୍ତୁ ସେଗୁଡ଼ିକ ଅପେକ୍ଷା ସତ୍ୟର ଫଳ ହିଁ ଅଧିକ ଓଜନିଆ ପ୍ରମାଣିତ ହେଲା ।

୩. ସତ୍ୟପାଳନର ମହିମା କାରଣରୁ ମହାରାଜ ଯୁଧିଷ୍ଠିରଙ୍କ ରଥ ଭୂମିରୁ ଚାରିଆଙ୍ଗୁଳି ଉପରକୁ ଉଠି ଚାଲୁଥିଲା । ସତ୍ୟ-ପାଳନର ଏହା ମାହାତ୍ମ୍ୟ ଅଟେ ।

୪. ରାଜ୍ୟ, ପୁତ୍ର, କୀର୍ତ୍ତି, ଧନ—ଏ ସମସ୍ତ ଏକାସଙ୍ଗେ ମିଶିଲେ ମଧ୍ୟ ସତ୍ୟର ଏକ ଷୋଡ଼ଶାଂଶ ସଙ୍ଗେ ସମାନ ନୁହେଁ । ସତ୍ୟପାଳନରୂପୀ ଧର୍ମ ଅମରତା ଓ ପ୍ରାଣଠାରୁ ବି ଶ୍ରେଷ୍ଠତର ।

୫. ପ୍ରାଣ ହୁଏତ ଯାଉ, କିନ୍ତୁ ସତ୍ୟ କେବେ ନ ଯାଉ—ଏହା ବ୍ରତ କରି ନେବା ଉଚିତ । ଯଦି କେହି ମିଥ୍ୟା-କପଟ, ପରର ଅଧିକାର ମାରି ନେବାର ଚେଷ୍ଟା ତଥା ଲୋଭ ତ୍ୟାଗ କରେ, ତା'ହେଲେ ତାହାର ଖୁବ୍ ଶୀଘ୍ର ସୁଧାର ହୋଇପାରେ ।

୬. ସତ୍ୟବାଦୀର ମୁଖରୁ ବାହାରୁ ଥିବା ପ୍ରତ୍ୟେକ ଶବ୍ଦ ସତ୍ୟ ହୋଇଥାଏ ।



## ଅକ୍ରୋଧ (କ୍ଷମା)

୧. କ୍ରୋଧକୁ ଏପରି ଜୟ କର ଯେ ବିପକ୍ଷୀ ଲୋକ ଯେତେ ଉତ୍ତେଜିତ ହେଲେ ବି ତୁମେ ଯେପରି ଶାନ୍ତ ରହିବ ।

୨. ଯିଏ କ୍ରୋଧପାତ୍ରକୁ କ୍ଷମା କରିଦିଏ, ସେ ସନାତନ ଲୋକକୁ ପ୍ରାପ୍ତ ହୁଏ ।

୩. କ୍ରୋଧକୁ ପରାକ୍ରମ ମାନିବା ମୂର୍ଖତା ଅଟେ । ବାସ୍ତବରେ ଯାହାଠାରେ ପରାକ୍ରମ ଅଛି, ତାଠାରେ କ୍ରୋଧ ରହିପାରେ ନାହିଁ ।

୪. ଯେଉଁ ମନୁଷ୍ୟ କ୍ରୋଧପାତ୍ରକୁ କ୍ଷମା କରି ଦିଏ, ସେ ନିଜକୁ ଓ ତାକୁ ଉଭୟଙ୍କୁ ହିଁ ମହାନ୍ ସଙ୍କଟରୁ ରକ୍ଷା କରିଥାଏ ।

୫. କ୍ଷମା ହିଁ ଧର୍ମ ଅଟେ, କ୍ଷମା ହିଁ ଯଜ୍ଞ ଅଟେ, କ୍ଷମା ହିଁ ବେଦ ଅଟେ ଓ କ୍ଷମା ହିଁ ଶାସ୍ତ୍ର ଅଟେ । ଏ ପ୍ରକାର କ୍ଷମାର ରୂପକୁ ଜାଣିଥିବା ଲୋକ ସମସ୍ତଙ୍କୁ କ୍ଷମା କରେ । କ୍ଷମା ହିଁ ବ୍ରହ୍ମ । କ୍ଷମା ହିଁ ଭୂତ, ଭବିଷ୍ୟ, ତପ, ଶୌଚ, ସତ୍ୟ ସବୁକିଛି ଅଟେ । ଏହି ଚରାଚର ଜଗତ୍‌କୁ ମଧ୍ୟ କ୍ଷମା ଧାରଣ କରି ରଖିଛି । ତେଜସ୍ୱୀମାନଙ୍କର ତେଜ, ତପସ୍ୱୀମାନଙ୍କର ବ୍ରହ୍ମ, ସତ୍ୟବାଦୀଙ୍କର ସତ୍ୟ, ଯାଜ୍ଞିକଙ୍କ ଯଜ୍ଞ ତଥା ମନକୁ ବଶୀଭୂତ କରିଥିବା ଲୋକଙ୍କର ଶାନ୍ତି ମଧ୍ୟ କ୍ଷମା ଅଟେ । କ୍ଷମାର ଆଧାରରେ ସତ୍ୟ, ବ୍ରହ୍ମ, ଯଜ୍ଞ ଓ ପବିତ୍ର ଲୋକ ତିଷ୍ଠି ରହିଛି ।

୬. ଯେଉଁ ବ୍ୟକ୍ତି କ୍ରୋଧ କରେ ନାହିଁ ଅଥବା କ୍ରୋଧ ଆସିଲେ ମଧ୍ୟ ଯିଏ ନିଜ ବିବେକଦ୍ୱାରା ତାକୁ ଶାନ୍ତ କରିଦିଏ, ତାକୁ ହିଁ ତେଜସ୍ୱୀ କହନ୍ତି । କିନ୍ତୁ କ୍ରୋଧୀକୁ ତେଜସ୍ୱୀ କୁହାଯାଏ ନାହିଁ ।

୭. କ୍ରୋଧୀ ପୁରୁଷକୁ ନିଜର କର୍ତ୍ତବ୍ୟାକର୍ତ୍ତବ୍ୟର ଜ୍ଞାନ ଆଦୌ ରହେ

ନାହିଁ । ସେ ଯାହା ଚାହେଁ, ସେହି ଅନର୍ଥ କଥାକଥାକେ କରି ପକାଏ । ତାକୁ ବାଚ୍ୟ ଓ ଅବାଚ୍ୟର ଧ୍ୟାନ ରହେ ନାହିଁ ।

୮. କୌଣସି ପ୍ରାଣୀକୁ ଶାରୀରିକ କଷ୍ଟ ଦେବା କଥା କ'ଣ କହିବା, ମନ ତଥା ବାଣୀ ଦ୍ୱାରା କାହାକୁ କଷ୍ଟ ଦେବା ମଧ୍ୟ ହିଂସାର ଅନ୍ତର୍ଗତ ବୋଲି ସ୍ୱୀକାର କରାଯାଇଛି ।

୯. ସଂସାରକୁ ସତ୍ ନ ଭାବିଲେ ଓ ତା'ପ୍ରତି ପ୍ରେମ ନ ରହିଲେ କ୍ରୋଧର ସମୂଳ ନାଶ ହୋଇଯାଏ । କିନ୍ତୁ ପ୍ରତ୍ୟେକ ସମୟରେ ମୃତ୍ୟୁକୁ ମନେ ରଖିଲେ, ଯାହା କିଛି ଆଭାସ ମିଳୁଛି, ତାହା ସବୁ ମୃତ୍ୟୁ ମୁଖରେ ଅଛି ବୋଲି ବୁଝିଲେ, କାଳାନ୍ତରରେ ଅଭାବ ହୋଇଯିବ ବୋଲି ବୁଝିଲେ, ଭଗବାନଙ୍କ ଲୀଳାମାତ୍ର ଜାଣିଲେ ଏବଂ ପରମେଶ୍ୱରଙ୍କୁ ସ୍ମରଣ କଲେ ମଧ୍ୟ କ୍ରୋଧ ହୋଇପାରେ ନାହିଁ ।

୧୦. କ୍ରୋଧ କରିବ ତ ନିଜ ଅବଗୁଣଗୁଡ଼ିକ ଉପରେ କର, ଅନ୍ୟର ଅବଗୁଣଗୁଡ଼ିକ ଉପରେ ଧ୍ୟାନ ଦେବା ଉଚିତ ନୁହେଁ ।

୧୧. ସମସ୍ତଙ୍କ ଠାରେ ଭଗବାନ ଥିବାର ଭାବ ଜାତ ହେଲେ କାହାରି ଉପରେ କ୍ରୋଧ ହୁଏ ନାହିଁ । ଯଦି କ୍ରୋଧ ହୁଏ, ତେବେ ବୁଝିବା ଉଚିତ ଯେ ଏବେ ସେ ଭାବ ଜାତ ହୋଇ ନାହିଁ ।

୧୨. ଚିତ୍ତରେ କେବେ ଉଦ୍‌ବେଗ ନ ହେବା ଉଚିତ । ଯାହା କିଛି ବି ହେଉ, ସେଥିରେ ଆନନ୍ଦ ଅନୁଭବ କରିବା ଉଚିତ, କାରଣ ସବୁ କିଛି ପ୍ରଭୁଙ୍କ ଆଜ୍ଞାରେ ଓ ତାଙ୍କ ମନର ଅନୁକୂଳରେ ହୁଏ ।

୧୩. ଇଚ୍ଛା ହିଁ କ୍ରୋଧର ମୂଳ ଅଟେ ।

୧୪. ଭଗବତ୍‌କୃପାଦ୍ୱାରା ଆପେ ଆପେ ହିଁ ଭଗବାନଙ୍କ ଠାରେ ପ୍ରେମ ହୋଇପାରେ । ଭଗବଦ୍‌ଭାବ ହେଲେ କାହାରି ଉପରେ କ୍ରୋଧ ଆସେ ନାହିଁ, କାରଣ ଭଗବାନଙ୍କ ଉପରେ କାହାରି କ୍ରୋଧ ହୁଏ ନାହିଁ ।

୧୫. ଚିତ୍ତରେ କେବେ କାହା ଉପରେ ଉଦ୍‌ବେଗ ନ ହେବା ଉଚିତ । ଯେକୌଣସି ପରିସ୍ଥିତି ହେଉ, ସେଥିରେ ଆନନ୍ଦ ଅନୁଭବ କରିବା ଉଚିତ, କାରଣ ଯାହା କିଛି ବି ହେଉଛି, ମାଲିକର ଆଜ୍ଞାରେ ଓ ମାଲିକର ଅନୁକୂଳ ହିଁ ହେଉଛି । ଯଦି ସବୁ କିଛି ମାଲିକର ଅନୁକୂଳ ହିଁ ହେଉଛି, ତା'ହେଲେ ନିଜକୁ ମାଲିକର ଅନୁକୂଳ କରି ନେବା ଉଚିତ ।

୧୬. ନିଜର କ୍ଷତି କରୁଥିବା ବ୍ୟକ୍ତି ଉପରେ କ୍ରୋଧ କରିବା ଉଚିତ

ନୁହେଁ। ମନକୁ ବୁଝାଇବା ଉଚିତ ଯେ ଆମର ମନ୍ଦ ବା ହାନି ଅନ୍ୟର କରିବା ଦ୍ୱାରା ହୁଏ ନାହିଁ। ଏହା ତ ପ୍ରାରବ୍‌ଧ ଦ୍ୱାରା ହୋଇଥାଏ, ପୁଣି କାହାର କି ଦୋଷ ଅଛି? ସବୁ ଭଗବାନଙ୍କ ସ୍ୱରୂପ ଅଟେ, ପୁଣି ମୁଁ କ୍ରୋଧ କାହା ଉପରେ କରିବି।

୧୭. ଭଗବାନ ଶ୍ରୀକୃଷ୍ଣଙ୍କ ସହ ଦୁର୍ବାସାମୁନିଙ୍କ ବ୍ୟବହାର ବା ଆଚରଣ*, ପାଣ୍ଡବଙ୍କ ପୁତ୍ରଙ୍କୁ ଅନ୍ୟାୟରେ ମାରିଥିଲେ ମଧ୍ୟ ଅଶ୍ୱତ୍‌ଥାମାକୁ କ୍ଷମା।ᵠ ବ୍ରାହ୍ମଣଙ୍କର ଏତେ କଟୁ ବ୍ୟବହାର ହୋଇଥିଲେ ସୁଦ୍ଧା ସେମାନଙ୍କ ସହ ନମ୍ରତା ବ୍ୟବହାର କରାଗଲା।

୧୮. ଆପଣଙ୍କ ପ୍ରତି ଯେ କେହି ଈର୍ଷ୍ୟା କରେ, ତାହା ସହ ଆପଣ ପ୍ରେମ କରିବା ଉଚିତ। ଯେ କେହି ଆପଣଙ୍କର ମନ୍ଦ କରେ, ତା'ର ଆପଣ ଉପକାର କରିବା ଉଚିତ ଓ ଶତ୍ରୁତା କରୁଥିବା ଲୋକର ମଙ୍ଗଳ କରିବାର ଚେଷ୍ଟା କରିବା ଉଚିତ। ସ୍ୱାର୍ଥ ଓ ମାନ-ବଡ଼ିମାକୁ ତ୍ୟାଗ କରି ନମ୍ର ଭାବରେ ସମସ୍ତଙ୍କୁ ପ୍ରେମ କରିବା କର୍ତ୍ତବ୍ୟ ଅଟେ।

୧୯. ମନୁଷ୍ୟଦ୍ୱାରା ଛୋଟ-ଛୋଟ ଜୀବଙ୍କ ପ୍ରତି ବହୁତ ହିଂସା ହୋଇଥାଏ। ତେଣୁ ଆମେ ଚ୍ଚଲିବା, ହାତ ଧୋଇବା, କୁଳି କରିବା ତଥା ମଳ-ମୂତ୍ର ତ୍ୟାଗ କରିବା ସମୟରେ ଏକଥା ପ୍ରତି ଧ୍ୟାନ ଦେବା ଉଚିତ।

୨୦. କୌଣସି ଜଙ୍ଗମ (ଚର) ପ୍ରାଣୀକୁ କଷ୍ଟ ଦେବା ତ ଦୋଷ, ଏପରିକି ଗଛ-ଲତା କାଟିବାକୁ ମଧ୍ୟ ଆମ ଶାସ୍ତ୍ରମାନେ ମନା କରିଛନ୍ତି।

୨୧. ଆମ ସଂସ୍କୃତିରେ ଗୋଟିଏ ପତ୍ରକୁ ଅଥବା ଖଣ୍ଡିଏ କୁଟା-କାଠିକୁ ମଧ୍ୟ ବୃଥାରେ ଭାଙ୍ଗିବାପାଇଁ ଆଜ୍ଞା ଦିଆଯାଇ ନାହିଁ, ଖଣ୍ଡିଏ ଦାନ୍ତକାଠି ଭାଙ୍ଗିବା ପାଇଁ ମଧ୍ୟ ଶାସ୍ତ୍ରମାନେ ବୃକ୍ଷକୁ ପ୍ରାର୍ଥନା କରିବାକୁ ନିର୍ଦ୍ଦେଶ ଦେଇଛନ୍ତି।

୨୨. ଶାସ୍ତ୍ରମାନେ ବୃକ୍ଷ-ଲତାମାନଙ୍କୁ ଜଳ ଦେବାର ବଡ଼ ମାହାତ୍ମ୍ୟ ବତାଇଛନ୍ତି।

୨୩. ଯଦି କେହି ଆମ ପ୍ରତି ଅତ୍ୟାଚ୍ଚର କରେ ଓ ତା'ଦ୍ୱାରା ଆମର ବା ଆଉ କାହାରି ହାନି ହେଉଥାଏ, ତା'ହେଲେ ସେ ସମୟରେ ରାଗ-ଦ୍ୱେଷରହିତ ହୋଇ ଆତ୍ମରକ୍ଷା ପାଇଁ ତା'ର ପ୍ରତିକାର କରିବା କୌଣସି ପାପ ନୁହେଁ।

---

* ମହାଭାରତ ଅନୁଶାସନ ପର୍ବ ଅଧ୍ୟାୟ ୧୫୯ ଦ୍ରଷ୍ଟବ୍ୟ।

ᵠ ଶ୍ରୀମଦ୍‌ଭାଗବତ ପୁରାଣ ସ୍କନ୍ଧ ୧ ଅଧ୍ୟାୟ ୭ ଦ୍ରଷ୍ଟବ୍ୟ।

୨୪. ଯଦି କେହି କାହା ଉପରେ ଅତ୍ୟାଗ୍ରହ କରେ, ତା'ହେଲେ ସେହି ଅତ୍ୟାଗ୍ରହ ହିଁ ସେହି ଅତ୍ୟାଗ୍ରହୀର ବିନାଶ କରିଦିଏ ।

୨୫. ଯଦି କେଉଁଠି କୌଣସି ସ୍ତ୍ରୀ, ବାଳକ, ଅନାଥ, ଦୀନ, ଦୁଃଖୀ ଓ ନିର୍ବଳ ପ୍ରାଣୀ ଉପରେ କେହି ବଳବାନ୍ କୌଣସି ପ୍ରକାରର ଅତ୍ୟାଗ୍ରହ କରୁଥିବ, ତା'ହେଲେ ସେହି ଅତ୍ୟାଗ୍ରହକୁ ନଷ୍ଟ କରିବା ପାଇଁ ସାମ ଓ ଦାନଦ୍ୱାରା କାମ ନ ହେଲେ ଅହଂକାର, ସ୍ୱାର୍ଥ ଓ ଆସକ୍ତିକୁ ତ୍ୟାଗ କରି ଦଣ୍ଡ ପ୍ରୟୋଗ କରିବା ଉଚିତ । ଏପରି ପରିସ୍ଥିତିରେ ଯଦି ପ୍ରାଣ ଚାଲିଯାଏ, ତା'ହେଲେ ମଧ୍ୟ ସେଥିରେ କଲ୍ୟାଣ ଅଛି ।

୨୬. ଅହଂକାର, ଆସକ୍ତି, ମମତା ଓ ସ୍ୱାର୍ଥକୁ ତ୍ୟାଗ କରି ଲୋକ-ହିତ ପାଇଁ କର୍ତ୍ତବ୍ୟ ବୁଦ୍ଧିରେ କାହାରିକୁ ଜୀବନରେ ମାରି ପକାଇବା ପ୍ରକୃତରେ ହିଂସା ନୁହେଁ ।

୨୭. ପୂର୍ବାପର ପରିଣାମକୁ ନ ଭାବି ନ ଚିନ୍ତି ଦ୍ୱେଷପୂର୍ଣ୍ଣ ବୁଦ୍ଧିରେ, କ୍ରୋଧର ଆବେଶରେ ଆସି ମନ, ବାଣୀ ଓ ଶରୀରଦ୍ୱାରା କାହାରି କୌଣସି ପ୍ରକାର ଅହିତ କରିବା ବୀରତା ନୁହେଁ । ତାହା ତ ଉଦ୍ଦଣ୍ଡତାପୂର୍ଣ୍ଣ ହିଂସା ଅଟେ ।



## ବ୍ରହ୍ମଚର୍ଯ୍ୟ

୧. ସମସ୍ତ ପ୍ରକାରର ମୈଥୁନ ତ୍ୟାଗର ନାମ ହିଁ ବ୍ରହ୍ମଚର୍ଯ୍ୟ ଅଟେ ।

୨. ବୀର୍ଯ୍ୟରକ୍ଷା ହିଁ ଜୀବନ ଓ ବୀର୍ଯ୍ୟର ନାଶ ହିଁ ମୃତ୍ୟୁ ଅଟେ ।

୩. ଶରୀରର ସାର ବୀର୍ଯ୍ୟ ଅଟେ । ଏହାରି ନାଶରେ ଆଜି ଆମ ଦେଶ ରସାତଳଗାମୀ ହୋଇଛି ।

୪. ବୀର୍ଯ୍ୟନାଶଦ୍ୱାରା ଶରୀର, ବଳ, ତେଜ, ବୁଦ୍ଧି, ଧନ, ମାନ, ଲୋକ, ପରଲୋକ–ସବୁର ହାନି ହୁଏ ।

୫. ରୋଗରୁ ମୁକ୍ତ ହେବା ପାଇଁ, ସ୍ୱାସ୍ଥ୍ୟଲାଭ ପାଇଁ, ବଳ-ବୁଦ୍ଧିର ବିକାଶ ପାଇଁ, ବିଦ୍ୟାଭ୍ୟାସ ପାଇଁ ତଥା ଯୋଗାଭ୍ୟାସ ପାଇଁ ବ୍ରହ୍ମଚର୍ଯ୍ୟର ବହୁତ ଅଧିକ ଆବଶ୍ୟକତା ରହିଛି ।

୬. ପରମାତ୍ମାଙ୍କ ପ୍ରାପ୍ତି ବୀର୍ଯ୍ୟ ରକ୍ଷା କରୁ ନ ଥିବା ଲୋକଙ୍କ ଠାରୁ କୋଶ-କୋଶ ଦୂରରେ ରହେ ।

୭. ବ୍ରହ୍ମଚର୍ଯ୍ୟ ବିନା କୌଣସି କାର୍ଯ୍ୟ ସିଦ୍ଧ ହୁଏ ନାହିଁ ।

୮. ସାଂଖ୍ୟଯୋଗ, ଜ୍ଞାନଯୋଗ, ଭକ୍ତିଯୋଗ, ରାଜଯୋଗ, ହଠଯୋଗ– ସମସ୍ତ ସାଧନରେ ବ୍ରହ୍ମଚର୍ଯ୍ୟର ଆବଶ୍ୟକତା ରହିଛି । ଅତଃ ଲୋକ-ପରଲୋକରେ ନିଜର ମଙ୍ଗଳ ଚାହୁଁଥିବା ଲୋକ ଖୁବ୍ ସାବଧାନତା ଏବଂ ତତ୍ପରତାର ସହ ବୀର୍ଯ୍ୟରକ୍ଷା ପାଇଁ ଚେଷ୍ଟା କରିବା ଉଚିତ ।

୯. ଉତ୍ତମ ସନ୍ତାନପ୍ରାପ୍ତି, ସ୍ୱର୍ଗ-ପ୍ରାପ୍ତି, ସିଦ୍ଧିସମୂହ-ପ୍ରାପ୍ତି, ଅନ୍ତଃକରଣର ଶୁଦ୍ଧି ତଥା ପରମାତ୍ମାଙ୍କ ପ୍ରାପ୍ତି—ବ୍ରହ୍ମଚର୍ଯ୍ୟ ଦ୍ୱାରା ସବୁ କିଛି ସମ୍ଭବ ଅଟେ ଓ ବ୍ରହ୍ମଚର୍ଯ୍ୟ ବିନା କିଛି ହୋଇପାରେ ନାହିଁ ।

୧୦. ପୂର୍ଣ୍ଣାଙ୍ଗ ବ୍ରହ୍ମଚର୍ଯ୍ୟ ପାଳନକାରୀ ସମସ୍ତ ପ୍ରକାରର ମାନସିକ ମୈଥୁନ ତ୍ୟାଗ କରିଦେଉ; ଯାହାଦ୍ୱାରା ମନରେ କାମୋଦ୍ଦୀପନ ହେବ, ସେପରି କୌଣସି ସଂକଳ୍ପ ନ କରୁ ଓ ଯଦି ହୋଇଯାଏ, ତେବେ ତାହାକୁ ବିବେକ ଏବଂ ବିଚାରଦ୍ୱାରା ତ୍ୟାଗ କରିଦେଉ ।

୧୧. ସ୍ତ୍ରୀ-ପୁରୁଷ ଉଭୟଙ୍କ ପାଇଁ ପରପୁରୁଷ ଅଥବା ପରସ୍ତ୍ରୀ ଆଡ଼କୁ ଚାହିଁବା ବ୍ରହ୍ମଚର୍ଯ୍ୟରେ କଳଙ୍କ ବୋଲି ଜାଣିବା ଉଚିତ ।

୧୨. ବ୍ରହ୍ମଚର୍ଯ୍ୟର ନାଶରେ ମନୁଷ୍ୟ ନାନାପ୍ରକାର ରୋଗର ଶିକାର ହୋଇଥାଏ । ଶରୀର ଫମ୍ପା ବା ସାରହୀନ ହୋଇଯାଏ । ସାମାନ୍ୟ ପରିଶ୍ରମ ବା କଷ୍ଟ ସହି ହୁଏ ନାହିଁ । ଶୀତ, ଉଷ୍ଣ ଆଦିର ପ୍ରଭାବ ଶରୀର ଉପରେ ବହୁତ ଶୀଘ୍ର ପଡ଼େ । ସ୍ମରଣଶକ୍ତି ଦୁର୍ବଳ ହୋଇଯାଏ, ସନ୍ତାନ ଉତ୍ପନ୍ନ କରିବା ଶକ୍ତି ନଷ୍ଟ ହୋଇଯାଏ । ସନ୍ତାନ ହୁଅନ୍ତି ତ ଦୁର୍ବଳ ଓ ଅଳ୍ପାୟୁ ହୁଅନ୍ତି । ମନ ଅତ୍ୟନ୍ତ ଦୁର୍ବଳ ହୋଇଯାଏ । ସଂକଳ୍ପଶକ୍ତି ଦୁର୍ବଳ ହୋଇଯାଏ । ସ୍ୱଭାବ ବିରକ୍ତିକର ହୋଇଯାଏ । ସାମାନ୍ୟ ପ୍ରତିକୂଳତା ସହି ହୁଏ ନାହିଁ । ଆତ୍ମବିଶ୍ୱାସ କମ୍ ହୋଇଯାଏ । କାମ କରିବାରେ ଉତ୍ସାହ ରହେ ନାହିଁ । ଶରୀରରେ ଆଳସ୍ୟ ଘୋଟି ରହେ । ଚିତ୍ତ ସବୁବେଳେ ଶଙ୍କିତ ରହେ । ମନରେ ବିଷାଦ ଘୋଟି ରହେ । କୌଣସି ନୂଆ କାମ ହାତକୁ ନେବାପାଇଁ ଭୟ ଜଣାଯାଏ । ସାମାନ୍ୟ ମାନସିକ ପରିଶ୍ରମରେ ମସ୍ତିଷ୍କରେ କ୍ଳାନ୍ତି ଆସିଯାଏ । ବୁଦ୍ଧି କ୍ଷୀଣ ହୋଇଯାଏ । ଅଧିକ ଚିନ୍ତା କରିବାର ଶକ୍ତି ରହେ ନାହିଁ । ଅସମୟରେ ହିଁ ବୃଦ୍ଧାବସ୍ଥା ଆସି ଘେରିନିଏ ଓ ଅଳ୍ପ ବୟସରେ ମନୁଷ୍ୟ କାଳର କବଳିତ ହୋଇଥାଏ । ତାର ଚିତ୍ତ ସ୍ଥିର ହୋଇପାରେ

ନାହିଁ । ମନ ଓ ଇନ୍ଦ୍ରିୟଗୁଡ଼ିକ ବଶୀଭୂତ ହୋଇ ପାରନ୍ତି ନାହିଁ ଓ ମନୁଷ୍ୟ ଭଗବତ୍‌ପ୍ରାପ୍ତି ମାର୍ଗରୁ କାହିଁ କେତେ ଦୂରକୁ ଘୁଞ୍ଚିଯାଏ । ସେ କେବଳ ଇହଲୋକରେ ହିଁ ଦୁଃଖୀ ହୁଏ ନାହିଁ, ବରଂ ପରଲୋକରେ ମଧ୍ୟ । ଏଣୁ ମନୁଷ୍ୟ ଖୁବ୍ ସାବଧାନତାର ସହ ବୀର୍ଯ୍ୟ ରକ୍ଷା କରିବା ଉଚିତ ।

୧୩. ବ୍ରହ୍ମଚର୍ଯ୍ୟ ରକ୍ଷାଦ୍ୱାରା ଶରୀରରେ ବଳ, ତେଜ, ଉତ୍ସାହ ଏବଂ ଓଜ ବୃଦ୍ଧି ହୁଏ । ଶୀତ, ଉଷ୍ଣ, ପୀଡ଼ା ଆଦିକୁ ସହ୍ୟ କରିବାର ଶକ୍ତି ଆସେ । ଅଧିକ ପରିଶ୍ରମ କଲେ ମଧ୍ୟ କ୍ଳାନ୍ତି କମ୍ ଆସେ । ପ୍ରାଣବାୟୁକୁ ରୋକିବାର ଶକ୍ତି ଆସେ । ଶରୀରରେ ଫୂର୍ତ୍ତି ଏବଂ ଚେତନତା ରହେ । ଆଳସ୍ୟ ତଥା ତନ୍ଦ୍ରା କମ୍ ହୁଏ । ରୋଗଗୁଡ଼ିକର ଆକ୍ରମଣକୁ ବାଧା ଦେବା ଶକ୍ତି ଆସେ । ମନ ପ୍ରସନ୍ନ ରହେ । କାର୍ଯ୍ୟ କରିବାର କ୍ଷମତା ପ୍ରଚୁର ମାତ୍ରାରେ ରହେ । ଅନ୍ୟର ମନ ଉପରେ ପ୍ରଭାବ ପକାଇବାର ଶକ୍ତି ଆସେ । ସନ୍ତାନ ଦୀର୍ଘାୟୁ, ବଳିଷ୍ଠ ଏବଂ ସୁସ୍ଥ ହୁଅନ୍ତି । ଇନ୍ଦ୍ରିୟଗୁଡ଼ିକ ସବଳ ରହନ୍ତି । ଶରୀରର ଅଙ୍ଗ-ପ୍ରତ୍ୟଙ୍ଗ ସୁଦୃଢ଼ ରହେ । ଆୟୁ ବଢ଼େ । ବୃଦ୍ଧାବସ୍ଥା ଶୀଘ୍ର ଆସେ ନାହିଁ । ଶରୀର ସୁସ୍ଥ ଓ ହାଲୁକା ରହେ । ସ୍ମରଣ ଶକ୍ତି ବୃଦ୍ଧି ପାଏ । ବୁଦ୍ଧି ପ୍ରଖର ହୁଏ, ମନ ବଳବାନ୍ ହୁଏ, କାପୁରୁଷତା ଆସେ ନାହିଁ । କର୍ତ୍ତବ୍ୟ କର୍ମ କରିବାରେ ଅନୁତ୍ସାହ ହୁଏ ନାହିଁ । ଯେତେ ବଡ଼ ବିପଦ ଆସିଲେ ମଧ୍ୟ ଧୈର୍ଯ୍ୟ ରହେ । କଷ୍ଟ, ସଂକଟ ଏବଂ ବିଘ୍ନ ବାଧାଗୁଡ଼ିକୁ ବୀରତାପୂର୍ବକ ପ୍ରତିରୋଧ କରିବାର ଶକ୍ତି ଆସେ । ଧର୍ମ ଉପରେ ଦୃଢ଼ ଆସ୍ଥା ହୁଏ । ଅନ୍ତଃକରଣ ଶୁଦ୍ଧ ରହେ, ଆତ୍ମସମ୍ମାନର ଭାବ ବଢ଼େ । ଦୁର୍ବଳକୁ କଷ୍ଟ ଦେବାର ପ୍ରବୃତ୍ତି ଜାଗ୍ରତ ହୁଏ ନାହିଁ । କ୍ରୋଧ, ଈର୍ଷ୍ୟା, ଦ୍ୱେଷ ଆଦି କମ୍ ହୁଏ । କ୍ଷମା ଭାବ ବଢ଼େ । ଅନ୍ୟମାନଙ୍କ ପ୍ରତି ସହିଷ୍ଣୁତା ତଥା ସହାନୁଭୂତି ବଢ଼େ । ଅନ୍ୟମାନଙ୍କର କଷ୍ଟ ଦୂର କରିବା ତଥା ଦୀନ-ଦୁଃଖୀଙ୍କର ସେବା କରିବାର ଭାବ ବଢ଼େ । ସତ୍ତ୍ୱଗୁଣର ବୃଦ୍ଧି ହୁଏ, ବୀର୍ଯ୍ୟରେ ଅମୋଘତା ଆସେ । ପରସ୍ତ୍ରୀ ପ୍ରତି ମାତୃଭାବ ଜାଗ୍ରତ ହୁଏ । ନାସ୍ତିକତା ତଥା ନିରାଶାର ଭାବ କମ୍ ହୁଏ । ଅସଫଳତାରେ ମଧ୍ୟ ବିଷାଦ ହୁଏ ନାହିଁ । ସମସ୍ତଙ୍କ ପ୍ରତି ପ୍ରେମ ଏବଂ ସଦ୍ଭାବ ରହେ । ସବୁଠୁଁ ଅଧିକ ଉପକାର ହେଲା ଭଗବତ୍‌ପ୍ରାପ୍ତିର ଯୋଗ୍ୟତା ଆସେ, ଯାହାକି ମନୁଷ୍ୟ ଜୀବନର ଚରମ ଫଳ ଅଟେ । ଏଇଥିପାଇଁ ହିଁ ଏହି ମନୁଷ୍ୟ ଦେହ ଆମକୁ ମିଳିଛି ।



# ବ୍ରହ୍ମଚର୍ଯ୍ୟ-ରକ୍ଷାର ଉପାୟ

ନିମ୍ନଲିଖିତ ଉପାୟ ବ୍ରହ୍ମଚର୍ଯ୍ୟ ରକ୍ଷାରେ ସହାୟକ ହୋଇ ପାରନ୍ତି—

୧. ଭୋଜନରେ ଉତ୍ତେଜକ ପଦାର୍ଥଗୁଡ଼ିକୁ ସର୍ବଥା ତ୍ୟାଗ କରି ଦେବା ଉଚିତ। ଲଙ୍କା, ସୋରିଷ, ଗରମ ମସଲା, ଆଚ୍ଚର, ଖଟା, ଅଧିକ ମିଠା ଓ ଅଧିକ ଗରମ ଜିନିଷ ନ ଖାଇବା ଉଚିତ। ଖାଦ୍ୟକୁ ଖୁବ୍ ଚ୍ଚୋବାଇ ଖାଇବା ଉଚିତ। ସବୁବେଳେ ସାଦା, ନିରାମିଷ, ତଟକା ଓ ନିୟମିତ ସମୟରେ ଭୋଜନ କରିବା ଉଚିତ। ମାଂସ, ରସୁଣ, ପିଆଜ ଆଦି ଅଭକ୍ଷ୍ୟ ପଦାର୍ଥ ଓ ମଦ, ଗଞ୍ଜେଇ, ଭାଙ୍ଗ ଆଦି ଅନ୍ୟ ମାଦକ ଦ୍ରବ୍ୟ ତଥା କେଶର, କସ୍ତୁରୀ ଏବଂ ମକରଧ୍ୱଜ ଆଦି ବାଜୀକରଣ ଔଷଧଗୁଡ଼ିକୁ ସେବନ କରିବା ଉଚିତ ନୁହେଁ।

୨. ଯଥାସମ୍ଭବ ପ୍ରତ୍ୟହ ଖୋଲା ପବନରେ ସକାଳ ଓ ସନ୍ଧ୍ୟାରେ ଚ୍ଚାଲିଚ୍ଚାଲି ବୁଲିବା ଉଚିତ।

୩. ରାତିରେ ଶୀଘ୍ର ଶୋଇ ସକାଳୁ ବ୍ରାହ୍ମମୁହୂର୍ତ୍ତରେ ଅର୍ଥାତ୍ ରାତ୍ରିର ଶେଷପ୍ରହରରେ ଅଥବା ସୂର୍ଯ୍ୟୋଦୟର ପ୍ରାୟ ଘଣ୍ଟାଏ ପୂର୍ବରୁ ଉଠିବା ଉଚିତ। ଶୋଇବା ପୂର୍ବରୁ ପରିସ୍ରା କରି, ହାତ-ପାଦ ଧୋଇ ତଥା କୁଳି କରି ଭଗବାନଙ୍କୁ ସ୍ମରଣ କରି ଶୋଇବା ଉଚିତ।

୪. ସର୍ବଥା କୁସଙ୍ଗ ତ୍ୟାଗ କରି ଯଥାସାଧ୍ୟ ସଦାଚ୍ଚାରୀ, ବୈରାଗ୍ୟବାନ୍ ଭଗବଭକ୍ତ, ସତ୍ପୁରୁଷଙ୍କ ସଙ୍ଗ କରିବା ଉଚିତ, ଯାହାଦ୍ୱାରା କୁତ୍ସିତ ବାସନା ସବୁ ନଷ୍ଟ ହୋଇ ହୃଦୟରେ ଉତ୍ତମ ଭାବସମୂହ ସଂଗ୍ରହ ହେବ।

୫. ପତି-ପତ୍ନୀଙ୍କୁ ଛାଡ଼ି ଅନ୍ୟ ସ୍ତ୍ରୀ-ପୁରୁଷ ଏକୁଟିଆ କେବେ ବସିବା ଓ ଏକାନ୍ତରେ କଥାବାର୍ତ୍ତା କରିବା ଉଚିତ ନୁହେଁ।

୬. ଭଗବଦ୍‌ଗୀତା, ରାମାୟଣ, ମହାଭାରତ, ଉପନିଷଦ୍, ଶ୍ରୀମଦ୍‌ଭାଗବତ ଆଦି ଉତ୍ତମ ଗ୍ରନ୍ଥ ସମୂହର ନିତ୍ୟ ନିୟମପୂର୍ବକ ସ୍ୱାଧ୍ୟାୟ କରିବା ଉଚିତ। ଏହାଦ୍ୱାରା ବୁଦ୍ଧି ଶୁଦ୍ଧ ହୁଏ ଓ ମନରେ ମନ୍ଦ ବିଚ୍ଚାର ଆସେ ନାହିଁ।

୭. ବିଳାସବ୍ୟସନ, ଆରାମ, ଭୋଗ, ଆଳସ୍ୟ, ପ୍ରମାଦ ଓ ପାପରେ ସମୟ ବିତାଇବା ଉଚିତ ନୁହେଁ। ମନକୁ ସବୁବେଳେ କୌଣସି ନା କୌଣସି ଭଲ କାମରେ ଲଗାଇ ରଖିବା ଉଚିତ।

୮. ମୂତ୍ରତ୍ୟାଗ ଓ ମଳତ୍ୟାଗ ପରେ ଇନ୍ଦ୍ରିୟକୁ ଥଣ୍ଡାପାଣିରେ ଧୋଇବା ଉଚିତ ଓ ମଳ-ମୂତ୍ରର ବେଗକୁ କେବେ ଅଟକାଇବା ଉଚିତ ନୁହେଁ ।

୯. ଯଥାସାଧ୍ୟ ଥଣ୍ଡା ପାଣିରେ ପ୍ରତିଦିନ ସ୍ନାନ କରିବା ଉଚିତ ।

୧୦. ପ୍ରତିଦିନ ନିୟମିତରୂପେ କୌଣସି ପ୍ରକାରର ବ୍ୟାୟାମ କରିବା ଉଚିତ । ଯଥାସମ୍ଭବ ପ୍ରତିଦିନ କିଛି ଆସନ ଏବଂ ପ୍ରାଣାୟାମ ମଧ୍ୟ ଅଭ୍ୟାସ କରିବା ଉଚିତ ।

୧୧. ଲେଙ୍ଗୁଟି ବା କୌପୀନ ପିନ୍ଧିବା ଉଚିତ ।

୧୨. ପ୍ରତିଦିନ ନିୟମିତରୂପେ କିଛି ସମୟ ପର୍ଯ୍ୟନ୍ତ ପରମାତ୍ମାଙ୍କ ଧ୍ୟାନ କରିବା ଉଚିତ ।

୧୩. ଯଥାଶକ୍ତି ଭଗବାନଙ୍କ କୌଣସି ନାମ ଶ୍ରଦ୍ଧା-ପ୍ରେମପୂର୍ବକ ଜପ ତଥା କୀର୍ତ୍ତନ କରିବା ଉଚିତ । କାମବାସନା ଜାଗ୍ରତ ହେଲେ ନାମ-ଜପର ଗତି ବଢ଼ାଇଦେବା ଉଚିତ ଅଥବା ଜୋରରେ କୀର୍ତ୍ତନ କରିବା ଉଚିତ । କାମବାସନା ନାମ-ଜପ ଓ କୀର୍ତ୍ତନ ଆଗରେ କେବେ ତିଷ୍ଠିପାରେ ନାହିଁ ।

୧୪. ଜଗତ୍ ପ୍ରତି ବୈରାଗ୍ୟ ଭାବନା କରିବା ଉଚିତ । ସଂସାରର ଅନିତ୍ୟତା ବାରମ୍ବାର ସ୍ମରଣ କରିବା ଉଚିତ । ମୃତ୍ୟୁକୁ ସଦା ମନେ ରଖିବା ଉଚିତ ।

୧୫. ପୁରୁଷଙ୍କୁ ସ୍ତ୍ରୀ ଶରୀରରେ ଓ ସ୍ତ୍ରୀମାନଙ୍କୁ ପୁରୁଷଙ୍କର ଶରୀରରେ ମଳିନତ୍ୱ ବୁଦ୍ଧି କରିବା ଉଚିତ । ଏପରି ବୁଝିବା ଉଚିତ ଯେ ଯେଉଁ ଆକୃତିକୁ ଆମେ ସୁନ୍ଦର ଭାବୁଛନ୍ତି, ତାହା ବାସ୍ତବରେ ଚମଡ଼ାରେ ଢଙ୍କା ଯାଇଥିବା ମାଂସ, ଅସ୍ଥି, ରୁଧିର, ମଜ୍ଜା, ମଳ, ମୂତ୍ର, କଫ ଆଦି ମଳିନ ଏବଂ ଅପବିତ୍ର ପଦାର୍ଥଗୁଡ଼ିକର ଏକ ଘୃଣିତ ପିଣ୍ଡମାତ୍ର ଅଟେ ।

୧୬. ମାସକରେ ଅତି କମ୍‌ରେ ଦୁଇଦିନ ଅର୍ଥାତ୍ ପ୍ରତ୍ୟେକ ଏକାଦଶୀକୁ ଉପବାସ କରିବା ଉଚିତ ଓ ଅମାବାସ୍ୟା ତଥା ପୂର୍ଣ୍ଣିମାକୁ କେବଳ ଗୋଟିଏ ଥର ଦିନରେ ଭୋଜନ କରିବା ଉଚିତ ।

୧୭. ଭଗବାନଙ୍କର ଲୀଳା ତଥା ମହାପୁରୁଷ ଏବଂ ବୀର ବ୍ରହ୍ମଚାରୀମାନଙ୍କର ଚରିତ୍ରଗୁଡ଼ିକୁ ମନେ ପକାଇବା ଉଚିତ ।

୧୮. ଯଥାସାଧ୍ୟ ସମସ୍ତଙ୍କ ଠାରେ ପରମାତ୍ମଭାବନା କରିବା ଉଚିତ ।

୧୯. ନିତ୍ୟ-ନିରନ୍ତର ଭଗବାନଙ୍କୁ ସ୍ମରଣ ରଖିବାର ଚେଷ୍ଟା କରିବା ଉଚିତ ।

୨୦. ନିତ୍ୟ-ନିରନ୍ତର ଅନ୍ତଃକରଣକୁ ଭଗବଦ୍ ଭାବରେ ପୂର୍ଣ୍ଣ କରିବାର ଚେଷ୍ଟା କରାଗଲେ ମନରେ କୁତ୍ସିତଭାବ କେବେ ଉତ୍ପନ୍ନ ହୋଇ ପାରେ ନାହିଁ ।

୨୧. ଯେଉଁ ହୃଦୟରେ ଭଗବାନ ନିଜର ଆସ୍ଥାନ ଜମାଇ ଦିଅନ୍ତି ଅର୍ଥାତ୍ ନିତ୍ୟ-ନିରନ୍ତର ଭଗବାନଙ୍କ ସ୍ମରଣ ହେଉଥାଏ, ସେଠାରେ କାମବାସନାର ଉଦୟ ହୋଇପାରେ ନାହିଁ ।

୨୨. ଭଗବତ୍‌ସ୍ମରଣର ପ୍ରଭାବରୁ ଅନ୍ତଃକରଣ ସର୍ବଥା ଶୁଦ୍ଧ ହୋଇ ଖୁବ୍ ଶୀଘ୍ର ଭଗବାନଙ୍କ ପ୍ରାପ୍ତି ହୋଇଯାଏ, ଯାହା ମନୁଷ୍ୟ-ଜୀବନର ଚରମ ଲକ୍ଷ୍ୟ ଓ ବ୍ରହ୍ମଚର୍ଯ୍ୟର ଅନ୍ତିମ ଫଳ ଅଟେ ।

୨୩. ଯିଏ ସମସ୍ତ ପ୍ରକାରର ମୈଥୁନ ତ୍ୟାଗ କରିଦେଇଛି, ସେ ହିଁ ବ୍ରହ୍ମଚାରୀ ନାମରେ ପ୍ରସିଦ୍ଧ ।

୨୪. ସମସ୍ତ ପ୍ରକାରେ ବୀର୍ଯ୍ୟର ରକ୍ଷା କରିବା ରୂପକ ବ୍ରହ୍ମଚର୍ଯ୍ୟ-ପାଳନ ବ୍ରହ୍ମ (ପରମାତ୍ମା)ଙ୍କ ପ୍ରାପ୍ତିରେ ମୁଖ୍ୟ ହେତୁ ଅଟେ ।

୨୫. **ସ୍ମରଣଂ କୀର୍ତ୍ତନଂ କେଳିଃ ପ୍ରେକ୍ଷଣଂ ଗୁହ୍ୟଭାଷଣମ୍ ।**
**ସଂକଳ୍ପୋଽଧ୍ୟବସାୟଶ୍ଚ କ୍ରିୟାନିଷ୍ପତ୍ତିରେବ ଚ ॥**

ସ୍ତ୍ରୀର ସ୍ମରଣ, ସ୍ତ୍ରୀ ସମ୍ବନ୍ଧୀ କଥାବାର୍ତ୍ତା, ସ୍ତ୍ରୀମାନଙ୍କ ସହିତ ଖେଳିବା, ସ୍ତ୍ରୀକୁ ଦେଖିବା, ସ୍ତ୍ରୀ ସହ ଗୁପ୍ତ ଭାଷଣ କରିବା, ସ୍ତ୍ରୀ ସହ ମିଶିବାର ସଂକଳ୍ପ କରିବା, ଚେଷ୍ଟା କରିବା ଓ ସ୍ତ୍ରୀସଙ୍ଗ କରିବା—ଏହି ଆଠ ପ୍ରକାର କ୍ରିୟାକୁ ମୈଥୁନ ସ୍ୱୀକାର କରାଯାଇଛି ।

୨୬. ସ୍ତ୍ରୀଙ୍କ ସଙ୍ଗଠାରୁ ବହୁତ ସାବଧାନ ରହିବା ଉଚିତ । ସ୍ତ୍ରୀମାନଙ୍କ ଦର୍ଶନ, ଭାଷଣ, ସ୍ପର୍ଶ ଓ ଚିନ୍ତନର କଥା କ'ଣ କହିବା, ସେମାନଙ୍କ ମୂର୍ତ୍ତି ଏବଂ ଚିତ୍ର ମଧ୍ୟ ବ୍ରହ୍ମଚାରୀ ଦେଖିବା ଉଚିତ ନୁହେଁ ।

୨୭. ଏକାନ୍ତରେ ତ ମାତା ଓ ଭଉଣୀ ସାଥିରେ ମଧ୍ୟ ନ ରହନ୍ତୁ, କାରଣ ସ୍ତ୍ରୀମାନଙ୍କ ସଂସର୍ଗ ପାଇ ବୁଦ୍ଧିମାନ୍ ପୁରୁଷର ମଧ୍ୟ ବୁଦ୍ଧି ଭ୍ରଷ୍ଟ ହୋଇ ଇନ୍ଦ୍ରିୟସମୂହ ବିଚଳିତ ହୋଇଯାଆନ୍ତି ।



# ପରୋପକାର

୧. ଲୋକସେବା ଅଧିକ କରିବା ଉଚିତ। କେତେକ ସେବା ଭଜନ ଦ୍ୱାରା ବଢ଼ିଯାଏ। ଯଥା ସମୟରେ କରାଯାଇଥିବା ସେବା ବିଶେଷ ଲାଭପ୍ରଦ ହୁଏ।

୨. ନିଷ୍କାମଭାବେ ଲୋକସେବା କରିବାଦ୍ୱାରା ପାପସମୂହ ନାଶ ହୋଇ ଭଗବାନଙ୍କ ଠାରେ ପ୍ରେମ ସୃଷ୍ଟି ହୁଏ।

୩. ନିଷ୍କାମଭାବେ ସବୁ ଭାଇଙ୍କର ସେବା କରିବାଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୋଇ ବହୁତ ଶୀଘ୍ର ଶ୍ରୀଭଗବାନଙ୍କ ପ୍ରାପ୍ତି ହୋଇପାରେ। ମନରେ ସମସ୍ତଙ୍କ ହିତ ଚାହିଁବା ହିଁ ସେବା ଓ ସମସ୍ତଙ୍କୁ ଭଗବାନଙ୍କ ଭକ୍ତିରେ ଲଗାଇବାକୁ ଚେଷ୍ଟା କରିବା ପରମ ସେବା ଅଟେ। ଏହା କଲେ ଭଗବାନ ବହୁତ ପ୍ରସନ୍ନ ହୁଅନ୍ତି।

୪. ସଂସାରର ପରମ ସେବାକାରୀଙ୍କ ଉଦ୍ଧାରରେ ସଂଶୟ ନାହିଁ। ସେବା ନ କରି କେବଳ ସେବାର ଭାବ ରଖୁଥିବା ଲୋକଙ୍କର ମଧ୍ୟ ଉଦ୍ଧାର ହୋଇପାରେ।

୫. ଗଙ୍ଗାକୂଳରେ ଯଦି 'ଜଳଛତ୍ର' ଖୋଲିଦେବା, ତା'ହେଲେ ଏହା ଠିକ୍ ହେବ ନାହିଁ। ଜଳଛତ୍ର ଖୋଲିବାର ଅଛି ତ ମରୁଭୂମିରେ ଖୋଲ। ଏହା ହିଁ ଏହାର ଉପଯୁକ୍ତ ସ୍ଥାନ।

୬. ବର୍ତ୍ତମାନ ସମୟରେ ଅକାଳ ଆଦି ବିପଦ ଆପଦ ଯେଉଁଠି ପଡ଼ିଛି, ସେଠାରେ ଅନ୍ନ ଆଦି ସହାୟତା ଦେବା ସାତ୍ତ୍ୱିକ ଦାନ ଅଟେ।

୭. ଯିଏ ନିଜର ଶରୀର, ମନ, ଧନ, ସର୍ବସ୍ୱ ସଂସାରର ମନୁଷ୍ୟଙ୍କୁ ଭଗବଭକ୍ତିରେ ଲଗାଇବା ପାଇଁ ହିଁ ଅର୍ପିତ ବୋଲି ବୁଝେ, ତାକୁ ଅର୍ପଣ କରିବାକୁ ପଡ଼େ ନାହିଁ, ତାହାପାଇଁ ସର୍ବସ୍ୱ ଭଗବାନଙ୍କର ଓ ତାହା ସେହି କାମରେ ଲାଗୁ ଅଛି। ଲୋକମାନଙ୍କୁ ଭଗବଭକ୍ତିରେ ଲଗାଇବା ପାଇଁ, ସେ ନିଜ ଶରୀରର ଚର୍ମ ଉତାରିଦେବାରେ ମଧ୍ୟ ସଂକୋଚ କରେ ନାହିଁ। ତାହାର ଜୀବନ ଲୋକଙ୍କ ଉଦ୍ଧାର ପାଇଁ ହିଁ ନିୟୋଜିତ ହୁଏ। ସେ ଭକ୍ତିର ପ୍ରଚାର ପାଇଁ ପ୍ରସନ୍ନତାପୂର୍ବକ ନିଜର ପ୍ରାଣକୁ ଆହୁତି ଦେଇଦିଏ।

୮. ପରମସେବା ବାସ୍ତବରେ ତାହାକୁ ହିଁ କହନ୍ତି, ଯେଉଁ ସେବା କରିବା

ପରେ କିଛି କାମ ବାକି ନ ରହେ, ଅର୍ଥାତ୍ ସଂସାରୀ ମନୁଷ୍ୟଙ୍କୁ ଭଗବତ୍ ପ୍ରେମରେ ଲଗାଇ ସେମାନଙ୍କୁ ଭଗବାନଙ୍କ ପରମଧାମରେ ପହଞ୍ଚାଇ ଦେବାର ନାମ ହିଁ ବାସ୍ତବରେ ପରମସେବା ଅଟେ ।

୯. ନିଜର ପେଟ ତ ପଶୁ ମଧ୍ୟ ପୂରାଉଛନ୍ତି; ଉତ୍ତମ ତାକୁ ହିଁ ବୁଝିବା ଉଚିତ ଯିଏ ଅନ୍ୟର ହିତ ପାଇଁ ନିଜର ପ୍ରାଣ ଦେବାପାଇଁ ପ୍ରସ୍ତୁତ ଅଛି ।

୧୦. ଅନ୍ୟମାନଙ୍କୁ ଯେ ଲାଭବାନ୍ କରେ, ସେ ନିଜକୁ ନିଜେ ମଧ୍ୟ ଲାଭବାନ୍ କରେ; ଯେପରି ନିଜ ହାତର ଆଙ୍ଗୁଳିଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏ ଆଙ୍ଗୁଳିର ଲାଭ ନିଜର ହିଁ ଲାଭ ଅଟେ । ବାସ୍ତବିକ ଦୃଷ୍ଟିରେ ତ ଏକ ଭଗବାନଙ୍କ ବ୍ୟତୀତ ଅନ୍ୟ କେହି ନାହିଁ । ପୁଣି କାହାର ଲାଭ କାହାର କ୍ଷତି । କାହାରି କ୍ଷତି ହେଉଛି ତ ଲାଭ ହେଉ । କିନ୍ତୁ ବ୍ୟାବହାରିକ ଦୃଷ୍ଟିରେ ଅନ୍ୟମାନଙ୍କର ଯେଉଁ ଲାଭ ହେଉଛି, ତାହା ନିଜର ହିଁ ହେଉଛି । ଏ କଥା ବୁଝା ନ ପଡ଼ିବା ପର୍ଯ୍ୟନ୍ତ ଏହି ପ୍ରକାର ବୁଝିବା ଉଚିତ ଯେ ନିଷ୍କାମଭାବରେ ଅନ୍ୟକୁ ଯେଉଁ ସୁବିଧା ଦିଆଯିବ, ତାହା ଆପଣଙ୍କୁ ଭଗବତ୍‌ପ୍ରାପ୍ତିର ନିକଟରେ ପହଞ୍ଚାଇବା ପାଇଁ ସହାୟକ ଅଟେ ।

୧୧. କାହାକୁ କେହି ରୋଜଗାରରେ ଲଗାଇ ଦେଲେ ମୋତେ ଏତେ ପ୍ରସନ୍ନତା ହୁଏ ଯେପରି ମୋ ନିଜ ଭାଇକୁ କାମରେ ଲଗାଇ ଦେଲା ।

୧୨. ଯେଉଁ ଆଚରଣଗୁଡ଼ିକ ଦ୍ୱାରା ଜୀବସମୂହଙ୍କୁ ପରମସୁଖ ମିଳେ, ତାହା ହିଁ ପରମ ସେବା ଅଟେ ।

୧୩. ଯାବତୀୟ ଜୀବମାତ୍ରଙ୍କ ସେବା କରିବା ଉଚିତ ଓ ସେମାନଙ୍କୁ ସୁଖ ଦେବା ଉଚିତ ।

୧୪. ରୋଗରୁ ବହୁତ ଶିକ୍ଷା ମିଳେ । ଅଗ୍ନିମାନ୍ଦ୍ୟ ରୋଗ ସାଧକ ପାଇଁ ବହୁତ ଉତ୍ତମ ଅଟେ, କାରଣ ଧୀରେ ଧୀରେ ସାରା ଶରୀରକୁ ଦୁର୍ବଳ କରି ସାବଧାନ କରି ଦେଉଥାଏ ତଥା ଅନ୍ତକାଳ ପର୍ଯ୍ୟନ୍ତ ମନେ ରହେ ।

୧୫. ବିଶ୍ୱର ସମସ୍ତ ଜୀବଙ୍କୁ ସୁଖ-ସୁବିଧା ଦେବା ଓ ସେମାନଙ୍କ ହିତର ବ୍ୟବସ୍ଥା କରିବା ହିଁ ମନୁଷ୍ୟର ମନୁଷ୍ୟତ୍ୱ ଅଟେ । ଏଇଥିରେ ହିଁ ତାର ଧାର୍ମିକତା ନିହିତ ।

୧୬. ସଂସାରର ସୁବ୍ୟବସ୍ଥା କିରବା ପାଇଁ, ସମସ୍ତଙ୍କୁ ସୁଖ ପ୍ରାପ୍ତି

କରାଇବାପାଇଁ ଓ ଏପରି କରି କରି ପରମାତ୍ମାଙ୍କୁ ପ୍ରାପ୍ତି କରିବା ପାଇଁ ହିଁ ମନୁଷ୍ୟକୁ ସୃଷ୍ଟି କରାଯାଇ ଅଛି ।

୧୭. ପରମାତ୍ମାଙ୍କ ସୃଷ୍ଟିରେ ଜଡ଼-ଚେତନ ସମସ୍ତେ ନିଜ ନିଜ ଶକ୍ତି ଅନୁସାରେ ପରସ୍ପର ସମସ୍ତଙ୍କର ଉପକାର ସାଧନ କରୁ ଅଛନ୍ତି । ଏଥିପାଇଁ ସମସ୍ତଙ୍କର ଯଥାଯୋଗ୍ୟ ଉନ୍ନତିରେ ହିଁ ନିଜର ଉନ୍ନତି ଓ ବିନାଶରେ ହିଁ ନିଜର ବିନାଶ ନିହିତ ଅଛି ।

୧୮. ଯେଉଁ ବ୍ୟକ୍ତି ପ୍ରତ୍ୟେକ ଜୀବକୁ ନିଜର ପ୍ରିୟ ଭାଇ ବୋଲି ମାନି ସମସ୍ତଙ୍କର ହିତ ଇଚ୍ଛା କରି ସମସ୍ତଙ୍କ ସହ ଯଥାଯୋଗ୍ୟ ସଦ୍‌ବ୍ୟବହାର କରେ, ପରମପିତା ପରମେଶ୍ୱର ସ୍ୱାଭାବିକ ଭାବରେ ତା'ଉପରେ ପ୍ରସନ୍ନ ହୁଅନ୍ତି ଓ ସମସ୍ତେ ତାକୁ ପ୍ରେମ କରନ୍ତି ।

୧୯. ଏ ସବୁ ଚରାଚର ପ୍ରାଣୀ କେବଳ ଆମର ଭାଇ ନୁହଁନ୍ତି, ବରଂ ଏମାନଙ୍କ ହୃଦୟରେ ଆମର ପରମ ପୂଜନୀୟ ଇଷ୍ଟଦେବ ପରମେଶ୍ୱର ମଧ୍ୟ ବିରାଜମାନ । ସେ ହିଁ ଏମାନଙ୍କ ରୂପରେ ପ୍ରକଟିତ ହୋଇଛନ୍ତି । ଏ ଦୃଷ୍ଟିରୁ ଏମାନଙ୍କୁ ସୁଖ ଦେବା ପରମେଶ୍ୱରଙ୍କୁ ସୁଖ ଦେବା ଏବଂ ଏମାନଙ୍କୁ ଦୁଃଖ ଦେବା ପରମେଶ୍ୱରଙ୍କୁ ଦୁଃଖ ଦେବା ଅଟେ ।

୨୦. ସମସ୍ତ ଜୀବଙ୍କ ଯଥାଯୋଗ୍ୟ ପାଳନ ଓ ସଂରକ୍ଷଣ ପାଇଁ ମନୁଷ୍ୟକୁ ସୃଷ୍ଟି କରାଯାଇଛି । ସେ ଯଦି ଏମାନଙ୍କୁ ମାରିବା ପାଇଁ ଉଦ୍ୟତ ହୁଏ, ତା'ହେଲେ ପୁଣି ଏମାନଙ୍କୁ କିଏ ପାଳିବ ଓ ଏମାନେ କିପରି ବଞ୍ଚି ପାରିବେ ।

୨୧. ପ୍ରତ୍ୟେକ ମନୁଷ୍ୟର ଏହା ପରମ କର୍ତ୍ତବ୍ୟ ଯେ ସେ ପ୍ରାଣପଣେ ଏପରି ଚେଷ୍ଟା କରୁ, ଯେଉଁଥିରେ ସମସ୍ତ ଚରାଚର ଜୀବଙ୍କର ପରମ ହିତ ସାଧିତ ହେବ ।

୨୨. କୌଣସି ଅବସ୍ଥାରେ କାହାରି କୌଣସି ପ୍ରକାରର ଅହିତ କରିବା ହିଁ ଈଶ୍ୱରଙ୍କ ନିୟମ ବିରୁଦ୍ଧ କାର୍ଯ୍ୟ କରିବା ଅଟେ ।

୨୩. ଅନ୍ୟମାନଙ୍କୁ କଷ୍ଟ ଦେବା ଅର୍ଥ ନିଜେ ହିଁ ନିଜ ଆତ୍ମାକୁ କଷ୍ଟ ଦେବା, କାରଣ ନିଜ ଆତ୍ମା ବ୍ୟତୀତ ଆଉ କିଛି ନାହିଁ ।

୨୪. ମନୁଷ୍ୟ ଯଦି କାହାରିକୁ ଦୁଃଖ ଦେଉ ଅଛି, ତା'ହେଲେ ସେ ବସ୍ତୁତଃ ପ୍ରକାରାନ୍ତରେ ନିଜକୁ ହିଁ ଦେଉଅଛି ଓ ଯଦି କାହାରିକୁ ସୁଖ ପ୍ରଦାନ କରୁଛି, ତା'ହେଲେ ସେ ନିଜକୁ ସୁଖ ଦେଉଛି ।

୨୫. ଯେଉଁ ଲୋକ ଅନ୍ୟମାନଙ୍କୁ ଘୃଣା, ଦ୍ୱେଷ ଓ ଶତ୍ରୁତା କରୁଛି ଅଥବା ତାଙ୍କର ଅନିଷ୍ଟ ଇଚ୍ଛା କରୁଛି, ସେ ମନୁଷ୍ୟତ୍ୱର ତଳକୁ ଖସି ଯାଇଛି। ସତ କହିଲେ ସେ ପଶୁମାନଙ୍କଠାରୁ ମଧ୍ୟ ହୀନ ହୋଇଯାଇଛି।

୨୬. ମନୁଷ୍ୟଶରୀର ଖାଦ୍ୟ-ପେୟ, ବିଳାସବ୍ୟସନ ଓ ଭୋଗ ଭୋଗିବା ପାଇଁ ମିଳି ନାହିଁ। ଏସବୁ ତ ଅନ୍ୟ ଯୋନିରେ ମଧ୍ୟ ମିଳି ପାରିବ। ମନୁଷ୍ୟର ଜନ୍ମ ପ୍ରାଣୀମାତ୍ରର ହିତ ଚେଷ୍ଟା କରିବା ପାଇଁ ମିଳିଛି। ଅତଏବ ସବୁ ଲୋକ ନିଜର ଶରୀର, ମନ ଓ ଧନଦ୍ୱାରା ନିଃସ୍ୱାର୍ଥଭାବେ ସବୁ ପ୍ରାଣୀଙ୍କର ସେବା ପାଇଁ ତତ୍ପରତା ସହ ଚେଷ୍ଟା କରିବା ଉଚିତ।

୨୭. ସାରା ସଂସାରର ପ୍ରାଣୀଙ୍କ ମଧ୍ୟରେ ମନୁଷ୍ୟ ଏପରି ଗୋଟିଏ ପ୍ରାଣୀ, ଯିଏ ପ୍ରତ୍ୟେକ ପ୍ରାଣୀର ସେବା କରିପାରେ।

୨୮. କାହାରି ସହିତ ଯେଉଁ ପ୍ରେମ କରାଯାଏ, ତାହା ଭଗବାନଙ୍କ ସହିତ ହିଁ ପ୍ରେମ କରିବା ଅଟେ। ଏପ୍ରକାରର ପ୍ରେମପୂର୍ଣ୍ଣ ବ୍ୟବହାର ପ୍ରଭାବରେ ଆମେ ଭଗବାନଙ୍କର ପରମ ପ୍ରିୟ ହୋଇଯିବା।

୨୯. ପ୍ରେମ କରିବା ଲୋକକୁ ପ୍ରେମ ଏବଂ ଦ୍ୱେଷ କରିବା ଲୋକକୁ ଦ୍ୱେଷ ମିଳେ।

୩୦. ସମସ୍ତଙ୍କ ସହ ପ୍ରେମ ବଢ଼ାନ୍ତୁ। ମୋ ଦ୍ୱାରା ଅନ୍ୟର ହିତ କିପରି ହେବ, ନିରନ୍ତର ଏହି କଥା ଚିନ୍ତା କରିବା ଉଚିତ।

୩୧. ଚରାଚର ବ୍ରହ୍ମାଣ୍ଡ ଈଶ୍ୱର ଅଟେ। ସମସ୍ତଙ୍କୁ ତା'ରି ସେବା କରିବା ଉଚିତ। ତାହାରି ସେବା ହିଁ ଈଶ୍ୱର ସେବା। ସଂସାରକୁ ସୁଖ ଦେବା ହିଁ ପରମେଶ୍ୱରଙ୍କୁ ସୁଖ ଦେବା ଅଟେ।

୩୨. ପରମାତ୍ମା ସମସ୍ତ ପ୍ରାଣୀଙ୍କ ଆତ୍ମା, ସର୍ବବ୍ୟାପୀ ଓ ସର୍ବାନ୍ତର୍ଯ୍ୟାମୀ ଅଟନ୍ତି। ଏଣୁ ସମସ୍ତଙ୍କ ସେବା ଭଗବାନଙ୍କର ସେବା ଅଟେ।

୩୩. ଏହି ନିୟମ କରି ନିଅ ଯେ ଶରୀରଦ୍ୱାରା ସେହି କାର୍ଯ୍ୟ ନିଷ୍କାମଭାବେ କରାଯିବ, ଯାହାଦ୍ୱାରା ଅନ୍ୟର ଉପକାର ହେବ। ଏହା ସମାନ କୌଣସି ଧର୍ମ ଆଉ ନାହିଁ। ଭଗବାନ ଶ୍ରୀରାମଚନ୍ଦ୍ର କହିଛନ୍ତି–

***ପରହିତ ସରିସ ଧରମ ନହିଁ ଭାଈ। ପର ପୀଡ଼ା ସମ ନହିଁ ଅଧମାଈ॥***

ଏହି ନିୟମକୁ ଧାରଣ କରି ନେଲେ ସଂସାରରୁ ମୁକ୍ତି ହୋଇଯାଏ।

୩୪. ଅନ୍ୟମାନଙ୍କର ଉପକାର କରିବା ଅଭ୍ୟାସ ହେବା ଉଚିତ। ଏହା ବଡ଼ ମହତ୍ତ୍ୱର କଥା ଯେ ନିଜ ଦ୍ୱାରା କାହାରି ଉପକାର ହେଲେ ସେହି ଉପକାର ଉଦାରତା ଓ ଦୟାବୁଦ୍ଧିଦ୍ୱାରା ହେବା ଉଚିତ।

୩୫. ସବୁଠୁଁ ଉତ୍ତମ କଥା କ'ଣ? ତୁମ ସହିତ ଯିଏ ମନ୍ଦ ଆଚରଣ କରେ, ତା'ସହିତ ମଧ୍ୟ ଭଲ ଆଚରଣ କର।

୩୬. ଧନ-ସମ୍ପତ୍ତି, ଶାରୀରିକ ସୁଖ ଓ ମାନ, ବଡ଼ିମା, ପ୍ରତିଷ୍ଠା ଆଦିକୁ ଇଚ୍ଛା ନ କରି ମମତା, ଆସକ୍ତି ଓ ଅହଂକାର ରହିତ ହୋଇ ମନ, ବାଣୀ, ଶରୀର ଓ ଧନଦ୍ୱାରା ସମସ୍ତ ପ୍ରାଣୀଙ୍କର ହିତରେ ରତ ହୋଇ ସେମାନଙ୍କୁ ସୁଖୀ ଦେବାନିମନ୍ତେ ଚେଷ୍ଟା କରିବା "ସେବା-ସାଧନ" ଭାବେ କଥିତ। ଏହି ସାଧନଦ୍ୱାରା ସାଧକର ଚିତ୍ତରେ ନିର୍ମଳତା ଓ ପ୍ରସନ୍ନତା ଜାତ ହୋଇ ତାକୁ ଭଗବତ୍‌ପ୍ରାପ୍ତି କରାଇ ଥାଏ।

୩୭. ତୃଷାର୍ତ୍ତକୁ ପାଣି, ବସ୍ତ୍ରହୀନକୁ ବସ୍ତ୍ର, ରୋଗୀକୁ ଔଷଧ ଓ ଆତୁରକୁ ଅଭୟଦାନ ଆଦି ସେବାର ସାଧନ ଅଟନ୍ତି।

୩୮. ସେବା-ସାଧନା ତିନି ପ୍ରକାର ଭାବଦ୍ୱାରା କରାଯାଇପାରେ। ଯଥା— ସମସ୍ତେ ଏକ ଈଶ୍ୱରଙ୍କ ସନ୍ତାନ ହେବା କାରଣରୁ ସମସ୍ତଙ୍କୁ ନିଜର 'ବନ୍ଧୁ' ମନେକରି, ଆତ୍ମଦୃଷ୍ଟିରେ ସମସ୍ତଙ୍କୁ ନିଜର 'ସ୍ୱରୂପ' ମନେ କରି ଏବଂ ପରମାତ୍ମା ହିଁ ସମସ୍ତ ପ୍ରାଣୀଙ୍କ ହୃଦୟରେ ସ୍ଥିତ ହୋଇଥିବାରୁ ସମସ୍ତଙ୍କୁ ସାକ୍ଷାତ୍ 'ପରମେଶ୍ୱର' ମନେକରି। ଏହି ତିନି ଭାବସମୂହରେ ଉତ୍ତରୋତ୍ତର ଶ୍ରେଷ୍ଠତା ଅଛି।

୩୯. ମମତା, ଆସକ୍ତି ଓ ଅହଂକାରରହିତ ହୋଇ ନିଃସ୍ୱାର୍ଥଭାବରେ କରାଯାଇଥିବା ସାମାନ୍ୟ ସେବା ଅଧିକ ମୂଲ୍ୟବାନ୍ ହୋଇଥାଏ।

୪୦. ଉତ୍ତମ ଦେଶ, କାଳ ଓ ପାତ୍ର ପ୍ରାପ୍ତ ହେଲେ ଯେଉଁ ନ୍ୟାୟାନୁକୂଳ ସେବା କରାଯାଏ, ସେହି ସେବା ମହତ୍ତ୍ୱପୂର୍ଣ୍ଣ ହୋଇଥାଏ।

୪୧. ସେବା-ସାଧନରେ କ୍ରିୟା ଅପେକ୍ଷା ଭାବର ପ୍ରଧାନତା ଥାଏ।

୪୨. ନିଜଠାରୁ ଯିଏ ବଡ଼, ପୂଜ୍ୟ, ଦୁଃଖୀ ଓ ଉପାୟହୀନ ଅଟନ୍ତି, ତାଙ୍କ ସେବାର ମହତ୍ତ୍ୱ ଆହୁରି ଅଧିକ।

୪୩. କେହି ବି ମିଳିଯାଉ, ତାକୁ ଦେଖି ପ୍ରସନ୍ନ ହେବା ଉଚିତ।

ସମସ୍ତଙ୍କୁ ମଧୁର କଥା କହିବା ଉଚିତ । ପ୍ରେମର ବ୍ୟବହାର କରିବା ଉଚିତ । ନିଜ ଦୃଷ୍ଟିରେ ସମସ୍ତଙ୍କୁ ଭଗବାନଙ୍କ ସ୍ୱରୂପ ବୁଝିବା ଉଚିତ । ସେବା ମଧ୍ୟ ଏହି ଭାବରେ କରିବା ଉଚିତ ।

୪୪. ସେବାର ଏତେ ଅଧିକ ପ୍ରଭାବ ଅଛି ଯେ ତା'ଦ୍ୱାରା ଭଗବାନ ଆପେ ଆପେ ମିଳି ପାରନ୍ତି । ଏଣୁ ଶରୀର-ମନ-ଧନଦ୍ୱାରା ଦୀନ-ଦୁଃଖୀଙ୍କର, ମାତା-ପିତା ଆଦି ସବୁ ଗୁରୁଜନଙ୍କର ସେବା କରିବା ଉଚିତ ।

୪୫. ଆମକୁ ଭଗବାନ ଟଙ୍କାପଇସା, ଭୋଗ୍ୟପଦାର୍ଥ, ଐଶ୍ୱର୍ଯ୍ୟ ଆଦି ଯାହା କିଛି ଦେଇଛନ୍ତି, ତାହା ଯଦି କୌଣସି ପ୍ରକାରେ ଅନ୍ୟମାନଙ୍କ ସେବାରେ ଲାଗେ, ତା'ହେଲେ ତାହାକୁ ନିଜର ସୌଭାଗ୍ୟ ମନେକରିବା ଉଚିତ ।

୪୬. କେଉଁଠାରେ ଯଦି ସେବାପାଇଁ ସୁଯୋଗ ମିଳିଯାଏ, ତା'ହେଲେ ବୁଝିବା ଉଚିତ ଯେ ଅମୂଲ୍ୟ ଧନ ମିଳିଗଲା ।

୪୭. ସେବା କରିବାରେ ଧନ ଓ ପ୍ରେମ—ଏ ଦୁଇଟିର ସ୍ଥାନ ମହତ୍ତ୍ୱପୂର୍ଣ୍ଣ । ଗୋଟିକରେ ଐଶ୍ୱର୍ଯ୍ୟ ତ୍ୟାଗ ଓ ଅନ୍ୟଟିରେ ଶାରୀରିକ ପରିଶ୍ରମ ହୁଏ ।

୪୮. ସେବା କାମ ମିଳିଗଲେ ଏପରି ପ୍ରସନ୍ନ ହେବା ଉଚିତ, ଯେପରି ରାମ ମିଳିଗଲେ ।

୪୯. ସେବାର ଅନେକ ସ୍ୱରୂପ ଅଛି । ଅନ୍ୟମାନଙ୍କୁ ମାନ-ବଡ଼ିମା ଦେବା ମଧ୍ୟ ସେବା ଅଟେ । ସେବା ରହଗଦା ଅଟେ, ତାକୁ ଲୁଟି ନେବାର ଜିନିଷ ଭାବି ଖୁବ୍ ଲୁଟିବା ଉଚିତ ।

୫୦. ଯେକୌଣସି ଛୋଟ କାମ ଯଥା—ପାଦ ଧୋଇଦେବା, ହାତ ଧୋଇଦେବା, ପତର ଉଠାଇବା ଆଦି ଯଦି ମିଳିଯାଏ, ତେବେ ଭଗବାନଙ୍କର ବିଶେଷ ଦୟା ଅଛି ବୋଲି ବୁଝିବା ଉଚିତ ।

୫୧. ଯଦି କୌଣସି ରୋଗୀର ମଳ-ମୂତ୍ର ଉଠାଇବାକୁ ମିଳିଯାଏ, ତେବେ ଭଗବାନଙ୍କର ପୂର୍ଣ୍ଣ ଦୟା ବୋଲି ବୁଝିବା ଉଚିତ ।

୫୨. ସେବା-କାର୍ଯ୍ୟରେ ଯେତେ ଉଚ୍ଚ ଭାବ ରଖା ଯାଇପାରେ, ତାହା ରଖିବା ଉଚିତ । ଯଦି ସେବା-କାର୍ଯ୍ୟକୁ ସାକ୍ଷାତ୍ ପରମାତ୍ମାଙ୍କ ସେବା ବୁଝାଯାଏ, ତେବେ ତ ସବୁଠୁ ଉତ୍ତମ । ତା'ଦ୍ୱାରା ପରମାତ୍ମା ବହୁତ ଶୀଘ୍ର ମିଳି ପାରନ୍ତି ।

୫୩. ସେବାକୁ ନାରାୟଣଙ୍କ ସେବା ରୂପ ଦେବା ସେବକର ହାତର କଥା ।

୫୪. କାହାରି ସେବା ବା ଉପକାର କରି ତାକୁ କହିବା ଉଚିତ ନୁହେଁ; କାରଣ ଉପକାରଗୁଡ଼ିକୁ ପ୍ରକଟ କରିବାଦ୍ୱାରା ଅଭିମାନ ବୃଦ୍ଧି ହୋଇଥାଏ ଓ ସେହି ଅଭିମାନକୁ କେହି ସହ୍ୟ କରି ପାରେ ନାହିଁ ।

୫୫. ସେବକ ହୋଇ ଯଦି ନିଜ ସେବାକାର୍ଯ୍ୟକୁ ଗଣାଇ ଦିଏ, ଅନୁଗ୍ରହ କରିଥିବାର ଭାବ ରଖେ, ତାହା ହେଲେ ସେହି ସେବାର ମୂଲ୍ୟ ସେଇଠି ହିଁ କମିଯାଏ—ନିଷ୍କାମ ଭାବରେ କଳଙ୍କ ଲାଗିଯାଏ ।

୫୬. ସାମାନ୍ୟ ଖଟା ପଡ଼ିଗଲେ ଯେପରି ଦୁଧ ଏକାଥରକେ ଫାଟିଯାଏ, ସେହିପରି ଉତ୍ତମ ସେବାରୂପକ ଦୁଧରେ ଅହଂକାରପୂର୍ଣ୍ଣ ବଚନରୂପକ ଖଟା ପଡ଼ିଗଲେ, ସେହି ସମସ୍ତ ସେବା ବ୍ୟର୍ଥ ହୋଇଯାଏ ।

୫୭. ନିଜର ଉତ୍ତମ କର୍ମଗୁଡ଼ିକୁ ଗଣି ଦେବାଦ୍ୱାରା ସେ ସମସ୍ତ କର୍ମ ବ୍ୟର୍ଥ ହୋଇଯାଏ ।

୫୮. ଭଜନ, ଧ୍ୟାନ, ସେବା, ପୂଜା ଓ ପରୋପକାରାଦି ଉତ୍ତମ କର୍ମ କର, କିନ୍ତୁ ତା'ର ବର୍ଣ୍ଣନା ନିଜ ମୁହଁରେ କେବେ କରିବା ଉଚିତ ନୁହେଁ ।

୫୯. କୁହାଯାଏ ଯେ—କୌଣସି ଦାନୀର ଦାନ ବିଷୟରେ ପ୍ରଶଂସା କରାଗଲାବେଳେ ସେ କାନ୍ଦିବାକୁ ଲାଗିଲା । ତାକୁ କାନ୍ଦିବାର କାରଣ ପଚରା ଗଲାବେଳେ ସେ କହିଲା, ଧନ ତାହାରି ଥିଲା, ଦେବାବାଲା ସିଏ, ମୁଁ କେବଳ ନିମିତ୍ତମାତ୍ର । ଲୋକେ ମୋତେ ଦାନୀ କହୁଛନ୍ତି, ଭଲା ମୁଁ ପ୍ରଭୁଙ୍କ ଆଗରେ କି ମୁହଁ ଦେଖାଇବି?

୬୦. ଯେଉଁମାନେ ପ୍ରକୃତ ଦାନୀ ଅଟନ୍ତି, ସେମାନଙ୍କ ଭିତରେ ଦାନ ଦେବାର କୌଣସି ଅଭିମାନ ହୁଏ ନାହିଁ ।



## ଧର୍ମ

୧. ଧର୍ମ ଶବ୍ଦ "ଧୃ" ଧାତୁରୁ ସୃଷ୍ଟ । ଏହାର ଅର୍ଥ ହେଲା—ଯାହା ସମସ୍ତ ବ୍ରହ୍ମାଣ୍ଡକୁ ଧାରଣ କରେ, ତାହା ଧର୍ମ ଅଟେ ।

**ଧାରଣାଦ୍ ଧର୍ମମିତ୍ୟାହୁର୍ଧର୍ମେଣ ବିଧୃତାଃ ପ୍ରଜାଃ ।**
**ଯଃ ସ୍ୟାଦ୍ ଧାରଣସଂଯୁକ୍ତଃ ସ ଧର୍ମ ଇତି ନିଶ୍ଚୟଃ ॥**

(ମହା. ଶାନ୍ତି. ୧୦୯ । ୧୧)

ମହର୍ଷି କଣାଦ ଧର୍ମର ଲକ୍ଷଣ ନିର୍ଣ୍ଣୟ କରି କହିଛନ୍ତି—

**ଯତୋଭ୍ୟୁଦୟନିଃଶ୍ରେୟସସିଦ୍ଧିଃ ସ ଧର୍ମଃ ।** (୧ । ୨)

"ଯାହାଦ୍ୱାରା ଏହି ଲୋକରେ ଅଭ୍ୟୁଦୟ ହୁଏ ଓ ପରମ କଲ୍ୟାଣରୂପୀ ମୋକ୍ଷର ପ୍ରାପ୍ତି ହୁଏ, ତାହା ହିଁ ଧର୍ମ ।"

୨. ବେଦ, ସ୍ମୃତି, ସଦାଚାର ଓ ନିଜର ରୁଚି ଅନୁସାରେ ପରିଣାମରେ ହିତକର—ଏହି ଚାରୋଟି ଧର୍ମର ସାକ୍ଷାତ୍ ଲକ୍ଷଣ ଅଟେ । ମନୁ ମଧ୍ୟ ଏହା ହିଁ କହିଛନ୍ତି—

**ବେଦଃ ସ୍ମୃତିଃ ସଦାଚାରଃ ସ୍ୱସ୍ୟ ଚ ପ୍ରିୟମାତ୍ମନଃ ।**
**ଏତଚ୍ଚତୁର୍ବିଧଂ ପ୍ରାହୁଃ ସାକ୍ଷାଦ୍ଧର୍ମସ୍ୟ ଲକ୍ଷଣମ୍ ॥**

(୨ । ୧୨)

"ଯାହା ଧାରଣ କରିବାର ଯୋଗ୍ୟତା ରଖେ, ତାହା ହିଁ ଧର୍ମ । ସମସ୍ତ ବିଶ୍ୱକୁ ସର୍ବଶକ୍ତିମାନ ପରମସମର୍ଥ ଭଗବାନଙ୍କ ନ୍ୟାୟ ବା ନିୟମ ଧାରଣ କରେ । ସେହି ନ୍ୟାୟ ବା ନିୟମକୁ ମାନି ତାହାରି ଅନୁସାରେ ଚଳିବା ହିଁ ଧର୍ମର ଆଚରଣ କରିବା ଅଟେ ।"

୩. ଈଶ୍ୱରଙ୍କ ନିୟମ ଅନୁସାରେ ଚାଲୁଥିବା ଲୋକ ସଂସାରରେ ସୁଖୀ ହୁଏ ଏବଂ ଶେଷରେ ମୁକ୍ତ ହୋଇଯାଏ । କିନ୍ତୁ ଯିଏ ଏହାର ବିରୋଧ କରେ, ସେ ଧକ୍କା ଖାଇ ପଡ଼ିଯାଏ, ଦୁଃଖୀ ହୁଏ ଏବଂ ଶେଷରେ ମନ୍ଦ ଗତିକୁ ପ୍ରାପ୍ତ ହୋଇଥାଏ ।

୪. ଯେପରି ଈଶ୍ୱର ଅନାଦି ଅଟନ୍ତି, ଠିକ୍ ସେହିପରି ଏହି ଈଶ୍ୱରୀୟ ନ୍ୟାୟ ମଧ୍ୟ ଅନାଦି ଅଟେ । ଏଣୁ ଏହାକୁ ସନାତନ କହନ୍ତି । ପ୍ରତ୍ୟେକ ପ୍ରାଣୀର ହିତ କରିବା ହିଁ ମନୁଷ୍ୟର କର୍ତ୍ତବ୍ୟ । ତା ପାଇଁ ଏହା ହିଁ ଈଶ୍ୱରୀୟ ନିୟମ ବା ଧର୍ମ ଅଟେ ।

୫. ପରମେଶ୍ୱର ଓ ପରମେଶ୍ୱରଙ୍କ ନିୟମର ପ୍ରଭାବକୁ ଜାଣିଥିବା କୌଣସି ପୁରୁଷ ତାଙ୍କ ବିରୁଦ୍ଧ ଆଚରଣ କେବେ କରି ନ ପାରେ । ତା'ର

ସମସ୍ତ କ୍ରିୟା ସ୍ୱାଭାବିକଭାବେ ପରମେଶ୍ୱରଙ୍କ ନିୟମର ଅନୁକୂଳ ହୋଇ ଥାଆନ୍ତି। ତା'ଦ୍ୱାରା କୌଣସି ଜଡ଼-ଚେତନ ଜୀବର କେବେହେଲେ କୌଣସି ପରିସ୍ଥିତିରେ କୌଣସି ପ୍ରକାରର ଅହିତ ହୋଇ ନ ପାରେ।

୬. ଧାରଣ କରିବା ଯୋଗ୍ୟ ଧର୍ମ କ'ଣ?

ମହାପୁରୁଷଙ୍କ ଦ୍ୱାରା ଦିଆଯାଇଥିବା ଇହଲୋକ ଓ ପରଲୋକରେ କଲ୍ୟାଣକାରୀ ଶିକ୍ଷା।

୭. ଧର୍ମ ତ ତାକୁ କହନ୍ତି—ଯାହା ଇହଲୋକ ଓ ପରଲୋକରେ କଲ୍ୟାଣକାରୀ ହୁଏ। ଯାହା ଲୋକ ଓ ପରଲୋକ ଉଭୟରେ ଅହିତକର, ତାହା କଲ୍ୟାଣ ନୁହେଁ, ଅକଲ୍ୟାଣ ଅଟେ। ପୁରସ୍କାର ନୁହେଁ, ଘୋର ବିପଦ ଅଟେ।

୮. ଧୈର୍ଯ୍ୟ, କ୍ଷମା, ମନର ନିଗ୍ରହ, ଚୋରି ନ କରିବା, ବାହାର-ଭିତରର ଶୁଦ୍ଧି, ଇନ୍ଦ୍ରିୟସମୂହର ସଂଯମ, ସାତ୍ତ୍ୱିକ ବୁଦ୍ଧି, ଅଧ୍ୟାତ୍ମବିଦ୍ୟା, ଯଥାର୍ଥ ଭାଷଣ ଓ କ୍ରୋଧ ନ କରିବା—ଏ ଦଶଗୋଟି ଧର୍ମର ଲକ୍ଷଣ ଅଟନ୍ତି।

୯. ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ, ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ, ଈଶ୍ୱର ଭକ୍ତି, ଜ୍ଞାନ, ବୈରାଗ୍ୟ, ମନର ନିଗ୍ରହ, ଇନ୍ଦ୍ରିୟଦମନ, ତିତିକ୍ଷା, ଶ୍ରଦ୍ଧା, କ୍ଷମା, ବୀରତା, ଦୟା, ତେଜ, ସରଳତା, ସ୍ୱାର୍ଥତ୍ୟାଗ, ଅମାନିତ୍ୱ, ଦମ୍ଭହୀନତା, ଅପୈଶୁନତା, ନିଷ୍କପଟତା, ବିନୟ, ଧୃତି, ସେବା, ସତ୍‌ସଙ୍ଗ, ଜପ, ଧ୍ୟାନ, ନିର୍ବୈରତା, ନିର୍ଭୟତା, ସମତା, ନିରହଂକାରତା, ମୈତ୍ରୀ, ଦାନ, କର୍ତ୍ତବ୍ୟପରାୟଣତା ଓ ଶାନ୍ତି—ଏହି ଚାଳିଶଟି ଗୁଣ ମଧ୍ୟରୁ ଯେଉଁ ମତରେ ଯେତେ ଅଧିକ ଗୁଣ ଥିବ, ସେହି ମତ ସବୁଠୁଁ ପ୍ରଧାନ ଓ ଶ୍ରେୟସ୍କର।

୧୦. ସଦ୍‌ଗୁଣ ଓ ସଦାଚାରର ନାମ ଧର୍ମ।

୧୧. ଯେଉଁ ଧର୍ମର ଲକ୍ଷ୍ୟ ମହାନ୍‌ରୁ ମହାନ୍, ନିତ୍ୟ ଓ ନିର୍ବାଧ ଆନନ୍ଦର ପ୍ରାପ୍ତି ଓ ଯେଉଁଥିରେ ସମସ୍ତଙ୍କର ଅଧିକାର ଥିବ, ତାହା ହିଁ ସବୁଠୁ ଉତ୍ତମ ସାର୍ବଭୌମ ଧର୍ମ ହୋଇପାରେ।

୧୨. ତାହା ହିଁ ସର୍ବୋତ୍ତମ ଧର୍ମ ଅଟେ, ଯାହା ପରମ କଲ୍ୟାଣ ପ୍ରାପ୍ତି କରାଇ ଦିଏ। ଏପରି ଧର୍ମ ମୋ ବୁଝିବାରେ ବୈଦିକ ସନାତନ ଧର୍ମ ହିଁ ଅଟେ।

୧୩. ହିନ୍ଦୁ-ସନାତନ ଧର୍ମରେ ଅତ୍ୟନ୍ତ ଛୋଟଠାରୁ ଆରମ୍ଭ କରି ବହୁତ ବଡ଼ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟଗୁଡ଼ିକର ଧର୍ମ ସହିତ ସମ୍ବନ୍ଧ ଥାଏ।

୧୪. ହିନ୍ଦୁ ଶବ୍ଦର ଅଭିପ୍ରାୟ ହେଲା—

ହିନ୍ଦୁସ୍ଥାନ (ଆର୍ଯ୍ୟାବର୍ତ୍ତ) ରେ ଜନ୍ମ ହେବା ଓ କୌଣସି ହିନ୍ଦୁସ୍ଥାନୀ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରଚଳିତ ମତକୁ ମାନିବା।

୧୫. ଯେ ନିଜକୁ ହିନ୍ଦୁ ମନେ କରେ ସେ ହିଁ ହିନ୍ଦୁ ଅଟେ।

୧୬. କେବଳ ହିନ୍ଦୁଧର୍ମ ହିଁ ସବୁ ପ୍ରକାରେ ପୂର୍ଣ୍ଣ ଧର୍ମ ଅଟେ; କାରଣ ତାହାର ଚରମ ଲକ୍ଷ୍ୟ ହେଲା ମନୁଷ୍ୟକୁ ସଂସାରର ତ୍ରିତାପାନଳରୁ ମୁକ୍ତ କରି ତାକୁ ଅନନ୍ତ ସୁଖର ଶେଷ ସୀମାରେ ପହଞ୍ଚାଇ ସବୁଦିନ ପାଇଁ ଆନନ୍ଦମୟ କରିଦେବା।

୧୭. ହିନ୍ଦୁ ଧର୍ମର ପବିତ୍ର ସନ୍ଦେଶ ପ୍ରାପ୍ତ କରି ସମୟେ ସମୟେ ଜଗତ୍‌ର ଦୁଃଖଦଗ୍ଧ ଅଶାନ୍ତ ପ୍ରାଣୀ ପରମଶାନ୍ତିକୁ ପ୍ରାପ୍ତ ହୋଇ ସାରିଛନ୍ତି ଓ ଆଜି ମଧ୍ୟ ଜଗତ୍‌ର ବଡ଼-ବଡ଼ ଭାବୁକ ପୁରୁଷ ଅତ୍ୟନ୍ତ ଉତ୍ସୁକତାର ସହ ଏହି ସନ୍ଦେଶ ପ୍ରାପ୍ତି ପାଇଁ ଲାଳାୟିତ ଅଛନ୍ତି। ଯେଉଁ ଧର୍ମର ଏତେ ଅପାର ମହିମା ଅଛି, ସେହି ଅନାଦି କାଳରୁ ପ୍ରଚଳିତ ପବିତ୍ର ଓ ଗମ୍ଭୀରଆଶୟ ଧର୍ମକୁ ମାନୁଥିବା ଜାତି ମୋହବଶତଃ ଜଗତ୍‌ର ଅନ୍ୟାନ୍ୟ ଅପୂର୍ଣ୍ଣ ମତଗୁଡ଼ିକର ଆଶ୍ରୟ ଗ୍ରହଣ କରି ଅଜ୍ଞାନସରିତାର ପ୍ରବାହରେ ଭାସିଯିବାକୁ ଚାହୁଁଛି, ଏହା ବଡ଼ ଦୁଃଖର କଥା।

୧୮. ଯେଉଁ ଲୋକ ଯେଉଁ ବର୍ଣ୍ଣରେ ଉତ୍ପନ୍ନ ହୋଇଛି, ତାର ସ୍ୱାଭାବିକ କର୍ମ ହିଁ ତାର ସ୍ୱଧର୍ମ ଅଟେ। ଭାରତବର୍ଷର ସୁବ୍ୟବସ୍ଥିତ ବର୍ଣ୍ଣବ୍ୟବସ୍ଥା ଏହାର ପରମ ଆଦର୍ଶ ଅଟେ। ଯେଉଁ ଲୋକେ ଏହି ବର୍ଣ୍ଣବ୍ୟବସ୍ଥାକୁ ଭାଙ୍ଗିବାର ପ୍ରଯତ୍ନ କରୁଛନ୍ତି, ସେମାନେ ବଡ଼ ଭୁଲ କରୁଛନ୍ତି। ଜଗତ୍‌ରେ ଭେଦ କେବେ ଲୀନ ହୋଇ ନ ପାରେ। ଏପରି ଚେଷ୍ଟା କରିବା ଦ୍ୱାରା ବ୍ୟବସ୍ଥାରେ ବିଶୃଙ୍ଖଳା ଅବଶ୍ୟ ହୋଇ ପାରେ, ଯାହା ଆହୁରି ଦୁଃଖର କଥା।

୧୯. ସମାଜ ବିରାଟରୂପ ଭଗବାନଙ୍କ ଶରୀର ଅଟେ। ବ୍ରାହ୍ମଣ ଉକ୍ତ ସମାଜରୂପୀ ଶରୀରର ମୁଖ ଅଥବା ମସ୍ତକ ସ୍ଥାନୀୟ, କ୍ଷତ୍ରିୟ ବାହୁ, ବୈଶ୍ୟ ଉରୁ (ଜଙ୍ଘ) ଓ ଶୂଦ୍ର ପାଦ ଅଟନ୍ତି।

୨୦. ମସ୍ତକର କାର୍ଯ୍ୟ ଅଟେ ବୁଦ୍ଧିଦ୍ୱାରା ଶରୀରର ସଞ୍ଚାଳନ କରିବା, ବାହୁମାନଙ୍କର କାର୍ଯ୍ୟ ଅଟେ ଭୌତିକ ଆପଦରୁ ତାକୁ ରକ୍ଷା କରିବା, ଜଙ୍ଘ ଦୁଇଟିର କାର୍ଯ୍ୟ ଅଟେ ତାକୁ ସ୍ଥିର ରଖିବା ତଥା ପାଦ ଦୁଇଟିର କାର୍ଯ୍ୟ ଅଟେ ତାକୁ ଗତି ପ୍ରଦାନ କରିବା ଏବଂ ତାର ସମସ୍ତ କାର୍ଯ୍ୟକୁ ଚଳାଇବା। ଶରୀର ପାଇଁ ଉପରୋକ୍ତ ଅଙ୍ଗଗୁଡ଼ିକର ଯେପରି ଉପଯୋଗିତା ରହିଛି, ସମାଜ ପାଇଁ ଚାରିବର୍ଣ୍ଣଙ୍କର ସେହିପରି ଉପଯୋଗିତା ରହିଛି।

୨୧. ବ୍ରାହ୍ମଣମାନଙ୍କର କାର୍ଯ୍ୟ ଅଟେ ସଂସାରକୁ ଜ୍ଞାନ ପ୍ରଦାନ କରିବା, ପଥପ୍ରଦର୍ଶନ କରିବା, ଲୋକହିତର ବ୍ୟବସ୍ଥା କରିବା ଓ ନିୟମ ପ୍ରସ୍ତୁତ କରିବା।

୨୨. କ୍ଷତ୍ରିୟମାନଙ୍କର କାର୍ଯ୍ୟ ଅଟେ ଅସ୍ତ୍ର-ଶସ୍ତ୍ର ଦ୍ୱାରା ରାଷ୍ଟ୍ରକୁ ବାହାର ଆକ୍ରମଣରୁ ତଥା ଚୋର-ଡାକୁମାନଙ୍କ ଠାରୁ ରକ୍ଷା କରିବା, ନ୍ୟାୟର ସମୁଚିତ ବ୍ୟବସ୍ଥା କରିବା, ଅତ୍ୟାଚାରୀମାନଙ୍କୁ ନିଗ୍ରହ କରିବା, ବ୍ରାହ୍ମଣଙ୍କ ଦ୍ୱାରା ନିର୍ଦ୍ଦେଶିତ ମାର୍ଗରେ ଲୋକଙ୍କୁ ପରିଚାଳିତ କରିବା।

୨୩. ବୈଶ୍ୟମାନଙ୍କର କାର୍ଯ୍ୟ ଅଟେ ଚାଷ, ବ୍ୟାପାର ଓ ଗୋରକ୍ଷା ଦ୍ୱାରା ସମାଜରେ ସୁଖ-ସମୃଦ୍ଧିର ବିସ୍ତାର କରିବା, ରାଷ୍ଟ୍ରର ସମ୍ପତ୍ତିକୁ ବଢ଼ାଇବା, ଧନ ଅର୍ଜନ କରି ତାକୁ ଲୋକୋପକାରୀ କାର୍ଯ୍ୟରେ ଲଗାଇବା ଓ ଏହି ପ୍ରକାରେ ସମାଜର ପୋଷଣ କରିବା।

୨୪. ଶୂଦ୍ରମାନଙ୍କର କାର୍ଯ୍ୟ ଅଟେ ଶିଳ୍ପ, କଳା ତଥା ଉଦ୍ୟୋଗ-ଧନ୍ଦା ଦ୍ୱାରା ସମାଜର ବିଭିନ୍ନ ଆବଶ୍ୟକତାଗୁଡ଼ିକୁ ପୂରଣ କରିବା ଏବଂ ସେବା କରିବା ତଥା ସମାଜକୁ ସୁଖୀ କରାଇବା।

୨୫. କାହାପାଇଁ, କେଉଁ ସମୟରେ, କି ପ୍ରକାର କର୍ମ, କିପରି କରିବା ଉଚିତ, ତାହା ବର୍ଣ୍ଣାଶ୍ରମ-ଧର୍ମ ଆମକୁ ଶିକ୍ଷା ଦିଏ। ଏହି କର୍ମ-କୌଶଳଦ୍ୱାରା ହିନ୍ଦୁ ନିଜର ଇହଲୌକିକ ଜୀବନକୁ ସୁଖରେ ବିତାଇ ନିଜର ସବୁକାମ ଭଗବାନଙ୍କୁ ଅର୍ପଣ କରି ଶେଷରେ ମନୁଷ୍ୟ ଜୀବନର ପରମ ଲକ୍ଷ୍ୟ ପରମାତ୍ମାଙ୍କୁ ପ୍ରାପ୍ତ କରିପାରେ।

୨୬. ବର୍ଣ୍ଣାଶ୍ରମ-ଧର୍ମର ଦୃଢ଼ତା ହିଁ ହିନ୍ଦୁଜାତିକୁ ବଞ୍ଚାଇ ରଖିଛି। ଯଦି ବର୍ଣ୍ଣାଶ୍ରମ ନ ଥା'ନ୍ତା ଓ ତା'ଉପରେ ହିନ୍ଦୁଜାତିର ଆସ୍ଥା ନ ଥା'ନ୍ତା, ତା'ହେଲେ

ବିଗତ ଶତାବ୍ଦୀମାନଙ୍କରେ ହୋଇଥିବା ଆକ୍ରମଣଦ୍ୱାରା ଓ ବିଜେତାମାନଙ୍କ ପ୍ରଭାବଦ୍ୱାରା ହିନ୍ଦୁଜାତି ଏତେବେଳକୁ ନଷ୍ଟ ହୋଇଯାଇ ଥାଆନ୍ତା।

୨୭. ଯେପର୍ଯ୍ୟନ୍ତ ଏହି ଦେଶରେ ବର୍ଣ୍ଣାଶ୍ରମ-ଧର୍ମର ସୁଚାରୁରୂପେ ପାଳନ ହେଉଥିଲା, ସେପର୍ଯ୍ୟନ୍ତ ଦେଶ ସ୍ୱାଧୀନ ଥିଲା ତଥା ଏଠାରେ ପ୍ରାୟ ସମସ୍ତ ପ୍ରକାରର ସୁଖ-ସମୃଦ୍ଧି ଥିଲା। ଯେବେଠାରୁ ବର୍ଣ୍ଣାଶ୍ରମ-ଧର୍ମ ପାଳନରେ ଅବହେଳା ହେବାକୁ ଲାଗିଲା, ସେହିଦିନରୁ ଆମର ଦଶା ଖରାପ ହେବାକୁ ଲାଗିଲା।

୨୮. ହିନ୍ଦୁର ଜୀବନ ଧର୍ମମୟ ଅଟେ। ତାହାର ଜନ୍ମ-ମରଣ, ଖାଦ୍ୟ-ପେୟ, ଶୋଇବା-ଜାଗିବା, ଦେବା-ନେବା, ଉପାର୍ଜନ କରିବା ଓ ତ୍ୟାଗ କରିବା—ସବୁ କିଛି ଧର୍ମସଙ୍ଗତ ହେବା ଉଚିତ।

୨୯. ପାଶ୍ଚାତ୍ୟ ସଭ୍ୟତା ଓ ତାହାର ଅନୁକରଣ ଆମ ପାଇଁ କୌଣସି ପ୍ରକାରେ ହିତକର ନୁହେଁ। ଏହାଦ୍ୱାରା ଆମର ଧର୍ମମୟ ଭାବସମୂହର ବିନାଶ ହେଉଛି ଓ ଆମକୁ କେବଳ ଭୌତିକ ଉନ୍ନତି ପଛରେ ଦୌଡ଼ି ପ୍ରକୃତ ଲାଭରୁ ବଞ୍ଚିତ ରହିବାକୁ ପଡୁଛି।

୩୦. ନିଜ ବେଶ, ଭାଷା, ଖାଦ୍ୟ-ପେୟ ଓ ଆଚାର ତ୍ୟାଗ କରିବାଦ୍ୱାରା ଜାତିର ବିନାଶ ହେଉଛି। ଯେଉଁ ଜାତି ଏହି ଚାରୋଟିର ରକ୍ଷା କରିବା ସହିତ ନିଜ ଆଦର୍ଶରୁ ସ୍ଖଳିତ ହୁଏ ନାହିଁ, ତା'ର ଅସ୍ତିତ୍ୱ ବିନାଶ ହେବା ବଡ଼ କଠିନ ହୋଇଥାଏ।

୩୧. ପର-ଦେଶୀୟ ଓ ପର-ଧର୍ମୀୟ ଲୋକଙ୍କ ସଭ୍ୟତା, ଭାଷା, ଆଚାର-ବ୍ୟବହାର, ଚାଲି-ଚଳଣି ଓ ବେଶ-ଭୂଷା ଆଦିର ଅନୁକରଣ ବର୍ଣ୍ଣାଶ୍ରମ ଧର୍ମର ଶିଥିଳତାରେ ବହୁତ ସହାୟକ ହୋଇଛି।

୩୨. ପ୍ରତ୍ୟେକ ଧର୍ମ-ପ୍ରେମୀ ପୁରୁଷର କର୍ତ୍ତବ୍ୟ ହେଉଛି ଯେ ସେ ସନାତନ ବୈଦିକ ବର୍ଣ୍ଣାଶ୍ରମ ଧର୍ମ ରକ୍ଷାର ହେତୁଭୂତ ବ୍ରାହ୍ମଣତ୍ୱର ଓ ପରମ ଧର୍ମରୂପ ସଂସ୍କୃତ ଗ୍ରନ୍ଥସମୂହର ଏବଂ ସଂସ୍କୃତ ଭାଷାର ରକ୍ଷା କରୁ।

୩୩. ଧର୍ମଗ୍ରନ୍ଥ ଓ ସଂସ୍କୃତ ଭାଷାର ରକ୍ଷା ହେଲେ ହିଁ ସନାତନ ଧର୍ମର ରକ୍ଷା ହେବ।

୩୪. ଏହା ମନେ ରଖିବା ଉଚିତ ଯେ, ସଂସ୍କୃତ ଅନାଦି ଭାଷା ଓ ସର୍ବାଙ୍ଗପୂର୍ଣ୍ଣ ଅଟେ। ସଂସ୍କୃତ ସମାନ ବସ୍ତୁତଃ ସୁସଂସ୍କୃତ ଭାଷା ଦୁନିଆରେ ଆଉ କେହି ନାହିଁ।

୩୫. ଆମକୁ ଆମ ପ୍ରାଚୀନ ଋଷି-ମୁନିମାନଙ୍କ ଦ୍ୱାରା ଆଚରିତ ଚ୍ଳି-ଚଳଣି, ବେଶଭୂଷା ଓ ସ୍ୱଭାବ-ସଭ୍ୟତାର ହିଁ ଅନୁକରଣ କରିବା ଉଚିତ। କୌଣସି ଅବସ୍ଥାରେ ସ୍ୱଧର୍ମ ତ୍ୟାଗ କରିବା ଉଚିତ ନୁହେଁ।

୩୬. ଧର୍ମର ଅନୁକୂଳ ଚ୍ଳିବାରେ ହିଁ ମନୁଷ୍ୟର ମନୁଷ୍ୟତ୍ୱ, ଉତ୍‌ଥାନ ଓ ପରମ ଲାଭ ନିହିତ; ପ୍ରତିକୂଳରେ ଚ୍ଳିଲେ ମନୁଷ୍ୟତ୍ୱରୁ ପତନ, ଅବନତି ଓ ମହାନ୍ ହାନି ହୁଏ।

୩୭. ପ୍ରାଣ ପଛେ ଚ୍ଳିଯାଉ, ତଥାପି ମନୁଷ୍ୟ ଧର୍ମତ୍ୟାଗ ନ କରିବା ଉଚିତ; କାରଣ ଧର୍ମପାଇଁ ମୃତ ବ୍ୟକ୍ତି ଉତ୍ତମ ଗତିକୁ ପ୍ରାପ୍ତ ହୋଇଥାଏ।

୩୮. ଗୁରୁଗୋବିନ୍ଦ ସିଂହଙ୍କ ପୁତ୍ରମାନେ ଧର୍ମପାଇଁ ପ୍ରାଣ ଦେଇ ଅମର କୀର୍ତ୍ତି ଓ ଉତ୍ତମ ଗତି ପ୍ରାପ୍ତ କଲେ।

୩୯. ଅନ୍ୟର ଗୁଣଯୁକ୍ତ ଉତ୍ତମ ଧର୍ମ ଅପେକ୍ଷା ନିଜ ଧର୍ମ ହିଁ ନିଜପାଇଁ ଶ୍ରେଷ୍ଠ ଓ ଆଚରଣ କରିବାଯୋଗ୍ୟ ଅଟେ। ସ୍ୱଧର୍ମ ପାଳନରେ ମନୁଷ୍ୟକୁ ପାପ ଲାଗେ ନାହିଁ। (ଗୀତା ୧୮।୪୭)

୪୦. ନିଜ କଲ୍ୟାଣ ପାଇଁ ମନୁଷ୍ୟମାତ୍ରକେ ନିତ୍ୟନିରନ୍ତର ଧର୍ମ ସଞ୍ଚୟ କରିବା ଉଚିତ।

୪୧. ଯେଉଁ ପୁରୁଷ ଧର୍ମପାଳନ କରେ, ଧର୍ମକୁ ବାଧ୍ୟ ହୋଇ ତା'ର ରକ୍ଷା ଅବଶ୍ୟମେବ କରିବାକୁ ପଡ଼େ।

୪୨. ଧର୍ମ କାହାରିକୁ ଛାଡ଼େ ନାହିଁ—ଲୋକେ ହିଁ ତାକୁ ଛାଡ଼ି ଦିଅନ୍ତି।

୪୩. "ଯେଉଁ ମନୁଷ୍ୟ ନିଜ ଧର୍ମକୁ ନାଶ କରି ଦିଏ ବା ତ୍ୟାଗ କରିଦିଏ, ଧର୍ମ ମଧ୍ୟ ତା'କୁ ନାଶ କରିଦିଏ।" ପରନ୍ତୁ ଯିଏ ଧର୍ମ ରକ୍ଷା କରେ, ତାକୁ ଧର୍ମ ରକ୍ଷା କରେ। **"ଧର୍ମ ଏବ ହତୋ ହନ୍ତି ଧର୍ମୋ ରକ୍ଷତି ରକ୍ଷିତଃ॥"**

୪୪. ଧର୍ମ ହିଁ ମନୁଷ୍ୟର ଜୀବନ, ପ୍ରାଣ ଏବଂ ଇହଲୋକ ଓ ପରଲୋକରେ କଲ୍ୟାଣକାରୀ ଅଟେ।

୪୫. ପରଲୋକକୁ କେବଳ ଏକା ଧର୍ମ ହିଁ ସାଙ୍ଗରେ ଯାଏ; ସ୍ତ୍ରୀ, ପୁତ୍ର ଓ ସମ୍ବନ୍ଧୀ ଆଦି କେହି ସେଠାରେ ସାହାଯ୍ୟ କରି ପାରନ୍ତି ନାହିଁ।

୪୬. ମନୁଷ୍ୟ ପକ୍ଷରେ ଘୋର ବିପତ୍ତି ପଡ଼ିଲେ ମଧ୍ୟ କାମ, ଲୋଭ, ଭୟ ଓ ମୋହର ବଶୀଭୂତ ହୋଇ କେବେ ହେଲେ ଧର୍ମ ତ୍ୟାଗ କରିବା ଉଚିତ ନୁହେଁ।

୪୭. ସମସ୍ତ ମନୁଷ୍ୟଙ୍କୁ ନିଜ-ନିଜ ପ୍ରକୃତି ଅନୁସାରେ କର୍ମ କରିବାକୁ ପଡ଼େ। କାମ ନ କରି କେହି ରହି ପାରେନା, ଏଥିପାଇଁ ଜିଦ୍ କରିବା ବ୍ୟର୍ଥ। ମନୁଷ୍ୟ ପକ୍ଷେ ଉଚିତ ଯେ ପ୍ରତ୍ୟେକ ଇନ୍ଦ୍ରିୟ ଭୋଗରେ ଯେଉଁ ରାଗ ଓ ଦ୍ୱେଷରୂପୀ ଶତ୍ରୁ ଲୁଚି ରହିଛନ୍ତି, ଯେଉଁଗୁଡ଼ିକ ପାପ କର୍ମରେ ପ୍ରବୃତ୍ତ କରାନ୍ତି, ସେଗୁଡ଼ିକର ବଶୀଭୂତ ନ ହେଉ ଓ ଧର୍ମ ପାଳନରେ ଅଟଳ ରହୁ।

୪୮. ଯଦି କୌଣସି ବିଧର୍ମୀଦ୍ୱାରା ଧର୍ମତ୍ୟାଗ ପାଇଁ ଗୁପ୍ତ ପ୍ରୟୋଗ କରାଯାଏ, ତା'ହେଲେ ସେହି ସ୍ଥାନରେ ଧର୍ମରକ୍ଷା ପାଇଁ ନିଜର ପ୍ରାଣ ହୁଏତ ତ୍ୟାଗ କରି ଦିଅ, କିନ୍ତୁ ଧର୍ମ ତ୍ୟାଗ ନ କର। ଏଥିରେ କଲ୍ୟାଣ ନିହିତ ଅଛି।

୪୯. ଧର୍ମପାଳନ ଦ୍ୱାରା ବଡ଼-ରୁ-ବଡ଼ ଆତ୍ମିକ ସ୍ୱରାଜ୍ୟ ମିଳିପାରେ, ତେବେ ଏହି ସାଧାରଣ ସ୍ୱରାଜ୍ୟର କଥା କେତେ ମାତ୍ର, ଏହା ତ ଅନାୟାସରେ ହିଁ ପ୍ରାପ୍ତ ହୋଇପାରେ।

୫୦. ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ, ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ, ଈଶ୍ୱରପ୍ରଣିଧାନ ଇତ୍ୟାଦି ଶ୍ରୁତି-ସ୍ମୃତି ପ୍ରତିପାଦିତ ବିଧିବାକ୍ୟ ଧର୍ମ ଅଟନ୍ତି। ଧର୍ମତ୍ୟାଗ କରି ଅନୀତିକାରୀ ଶେଷରେ ନଷ୍ଟ ହୋଇଯାଏ। କଂସ, ରାବଣାଦି ଅନୀତି କାରଣରୁ ଶେଷରେ ନଷ୍ଟ ହୋଇଗଲେ।

୫୧. ଧର୍ମର ଗତି ଅତ୍ୟନ୍ତ ଗହନ। ଏଥିପାଇଁ ଯେଉଁ ମାର୍ଗରେ କୌଣସି ମହାପୁରୁଷ ଯାଇଥିବେ, ତାହା ହିଁ ମାର୍ଗ ଅର୍ଥାତ୍ ଏପରି ମହାପୁରୁଷଙ୍କର ଅନୁକରଣ କରିବା ହିଁ ଧର୍ମ ଅଟେ।



# ପ୍ରତିକୂଳତାରେ ପ୍ରସନ୍ନତା

୧. ଈଶ୍ୱର ସର୍ବଜ୍ଞ, ସର୍ବସୁହୃଦ୍, ଦୟାସାଗର, ସମସ୍ତଙ୍କ ଆତ୍ମା ଏବଂ ସମସ୍ତଙ୍କ ହିତରେ ରତ। ଅତଏବ କୌଣସି ଜୀବର କୌଣସି ପ୍ରକାରରେ କେବେହେଲେ ବି ଅହିତ ବା ଅନିଷ୍ଟ କରିବାରେ ତାଙ୍କର ସମ୍ମତି ହୋଇ ନ ପାରେ। ଏଣୁ ଯେଉଁ କାର୍ଯ୍ୟଦ୍ୱାରା ଯଥାର୍ଥରୂପେ ଅନ୍ୟର ହିତ ହେଉଥାଏ, ତାହା ହିଁ ଈଶ୍ୱରଙ୍କ ଇଚ୍ଛାର ଅନୁକୂଳ କାର୍ଯ୍ୟ ଓ ଯାହାଦ୍ୱାରା ଜୀବର ଅନିଷ୍ଟ ହୁଏ, ତାହା ତାଙ୍କ ଇଚ୍ଛାର ପ୍ରତିକୂଳ କାର୍ଯ୍ୟ ଅଟେ।

୨. ଅନୁକୂଳ-ପ୍ରତିକୂଳ ପ୍ରାପ୍ତିରେ ଯାହାର ରାଗ-ଦ୍ୱେଷ, ହର୍ଷ-ଶୋକ ଯେତେ କମ୍, ସେ ସେତେ ଆଗକୁ ବଢ଼ିଛି। ଏହା ପ୍ରକୃତ ପରୀକ୍ଷା ଅଟେ।

୩. ପ୍ରଭୁଙ୍କ ପ୍ରେରଣା ବିନା ବୃକ୍ଷର ଗୋଟିଏ ପତ୍ର ବି ହଲି ପାରେ ନାହିଁ। ଅତଏବ ଆମର କିଏ କେତେ ଅନିଷ୍ଟ କରୁନା କାହିଁକି ଆମେ ତାହାକୁ ଭଗବାନଙ୍କ ପ୍ରେରଣା ଜାଣି ତା'ଠାରେ ପ୍ରେମ କରିବା ଉଚିତ, ତା'ପ୍ରତି ଆଦର-ବୁଦ୍ଧି ରଖିବା ଉଚିତ।

୪. ଆମ୍ଭେ ପ୍ରସନ୍ନତାପୂର୍ବକ ନିଜ ନିନ୍ଦା ଶୁଣିବାର ସ୍ୱଭାବ ରଖିବା ଉଚିତ। ଏପରି ସ୍ୱଭାବ କରିନେଲେ ଆମଦ୍ୱାରା ହେଉଥିବା ନିନ୍ଦନୀୟ କାର୍ଯ୍ୟସମୂହ ତଥା ନିନ୍ଦା-ଶ୍ରବଣ ଦ୍ୱାରା ଉତ୍ପନ୍ନ ହେଉଥିବା ଆମ ଅନ୍ତଃକରଣର ବିକାରସମୂହ ବିନାଶ ହୋଇଯିବ।

୫. ନିନ୍ଦା ଓ ଅପମାନ ଆମକୁ ଯେଉଁ ଦିନ ଭଲ ବୋଲି ଜଣାଯିବ, ସେହି ଦିନ ବୁଝିବା ଉଚିତ ଯେ ଆମେ ଭଗବାନଙ୍କ ନିକଟରେ ପହଞ୍ଚୁଛୁ।

୬. ଯେଉଁ ସମ୍ମାନ ଓ ସ୍ତୁତି ଆଜି ଆମକୁ ଅମୃତତୁଲ୍ୟ ମଧୁର ଲାଗୁଛି, ଭଗବତ୍‌ଶରଣାପନ୍ନ ହେଲେ ସେଗୁଡ଼ିକ ବିଷତୁଲ୍ୟ ଲାଗିବ।

୭. ବିପରୀତ ବିଧାନଗୁଡ଼ିକ ପ୍ରାପ୍ତ ହେଲେ ମଧ୍ୟ ଯିଏ ସାମାନ୍ୟ ଉଦ୍‌ବିଗ୍ନ ନ ହୋଇ ସେଗୁଡ଼ିକୁ ଭଗବାନଙ୍କ ପ୍ରେରିତ ପୁରସ୍କାର ଭାବି ସେଗୁଡ଼ିକରେ ସଦା ସନ୍ତୁଷ୍ଟ ରହନ୍ତି, ସେହିମାନେ ହିଁ ପ୍ରକୃତ ଭକ୍ତ ଅଟନ୍ତି।

୮. ଭଗବାନଙ୍କ ପ୍ରତ୍ୟେକ ବିଧାନରେ ପ୍ରସନ୍ନ ରହିବା ହିଁ ଭକ୍ତର ପରମ କର୍ତ୍ତବ୍ୟ ଅଟେ।

୯. ଯେବେ କୌଣସି କାର୍ଯ୍ୟ ଆମ ମନକୁ ପ୍ରତିକୂଳ ହେଉଥିବ, ତା'ହେଲେ ବୁଝିବା ଉଚିତ ଯେ, ଏଥିରେ ନିଶ୍ଚୟ ହିଁ ଭଗବାନଙ୍କ ହାତ ଅଛି। ଏହା ତାଙ୍କର ଆମ ଉପରେ ବଡ଼ ଦୟା।

୧୦. ମନର ପ୍ରତିକୂଳ ଯେଉଁ କାର୍ଯ୍ୟ ହୁଏ, ତାକୁ ଦୈବେଚ୍ଛା ଅର୍ଥାତ୍ ଭଗବଦିଚ୍ଛାରେ ହେଉଥିବାର ମାନିନେଲେ ତୁରନ୍ତ ସାରା ବିଘ୍ନ ନଷ୍ଟ ହୋଇ ପାରେ।

୧୧. ଯାହା କିଛି ବି ହୁଏ ଭଗବାନଙ୍କ ଇଚ୍ଛାରେ ହୁଏ। ଭଗବାନଙ୍କ ଇଚ୍ଛା ବିନା ଗଛର ଗୋଟିଏ ପତ୍ର ସୁଦ୍ଧା ହଲି ପାରେ ନାହିଁ। ଭଗବାନ ଆମକୁ

ପାପସମୂହରୁ ମୁକ୍ତ କରି ବିଶୁଦ୍ଧ କରିବା ପାଇଁ ତଥା ସହନଶୀଳ ଓ ଧୈର୍ଯ୍ୟବାନ୍ ହେବା ପାଇଁ ଆମ ମନର ପ୍ରତିକୂଳ ପଦାର୍ଥ ପ୍ରେରଣ କରି ଆମକୁ ଚେତାବନୀ ଦେଇ ଆସୁଛନ୍ତି।

୧୨. ସବୁକିଛି ଭଗବାନଙ୍କର ଅଟେ ଓ ଭଗବାନ ସର୍ବବ୍ୟାପୀ ଅଟନ୍ତି– ସେ ସବୁ ସ୍ଥାନରେ ଏବଂ ସବୁ କାଳରେ ଥାଆନ୍ତି। ତେବେ ଯେଉଁ ବସ୍ତୁ ଆମଠାରୁ ଛଡ଼ାଇ ନିଆଯାଉଛି ବା ଚାଲିଯାଉଛି, ତାହା ଭଗବାନଙ୍କ ରାଜ୍ୟକୁ ଛାଡ଼ି ଅନ୍ୟତ୍ର ଚାଲିଯାଉ ନାହିଁ। ଭଗବାନଙ୍କ ଭଣ୍ଡାରରେ ହିଁ ରହୁଛି।

୧୩. ସବୁକିଛି ଭଗବାନଙ୍କର ଓ ଭଗବାନ ହିଁ ଜଡ଼-ଚେତନ ସମସ୍ତଙ୍କ ମାଲିକ ଅଟନ୍ତି। ତେବେ ସେ ଯଦି ନିଜର କୌଣସି ବସ୍ତୁକୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇ ଯାଆନ୍ତି, ତା'ହେଲେ ଆମେ ସେଥିପାଇଁ କାହିଁକି ଦୁଃଖୀ ହେବା?

୧୪. ଯେଉଁ ମନୁଷ୍ୟ ଭଗବାନଙ୍କ ଜିନିଷକୁ ନିଜର ମନେକରି ଭଗବାନ ମାଗିଲା ପରେ ଦେବାରେ ଟାଳଟୁଳ ନୀତି ଧରେ ବା ମନରେ କୁଣ୍ଠା ଆଣେ, ସେ କୃତଘ୍ନ ଅଟେ, ଭକ୍ତ ନୁହେଁ।

୧୫. ଭକ୍ତକୁ ପ୍ରଭୁଙ୍କ ପ୍ରତ୍ୟେକ ବିଧାନରେ ସଦା ସନ୍ତୁଷ୍ଟ ରହିବା ଉଚିତ। ଭଗବାନଙ୍କର ପ୍ରତ୍ୟେକ କ୍ରିୟା ନିର୍ଭ୍ରାନ୍ତ ଏବଂ ହିତପୂର୍ଣ୍ଣ ଅଟେ ଓ ଯାହା କିଛି ହେଉଛି ଭଗବାନଙ୍କ ଆଜ୍ଞାରେ ହେଉଛି–ଏପରି ଭାବି ତାକୁ ପ୍ରତ୍ୟେକ ଘଟଣାରେ ପ୍ରସନ୍ନ ରହିବା ଉଚିତ।

୧୬. ଯାହା କିଛି ଅନିଷ୍ଟ ଆମକୁ ପ୍ରାପ୍ତ ହୁଏ, ପ୍ରଭୁଙ୍କ ଆଜ୍ଞାରେ ହିଁ ପ୍ରାପ୍ତ ହୁଏ। କୌଣସି ବସ୍ତୁ ଅଥବା ଘଟଣା ନିଜ ପାଇଁ ଯେତେ ପ୍ରତିକୂଳ ହେଉନା କାହିଁକି, ତାହା ମୋ ସ୍ୱାମୀଙ୍କ ଅନୁକୂଳ ଅଟେ—ଏପରି ଭାବି ଭକ୍ତ ସଦା ପ୍ରସନ୍ନ ରହିବା ଉଚିତ।

୧୭. ମୋ ପ୍ରଭୁଙ୍କ ଦ୍ୱାରା କେବେ ତ ଭୁଲ ହୁଏ ନାହିଁ, ସେ ଯାହା କିଛି କରନ୍ତି, ବୁଝିଶୁଝି ହିଁ କରନ୍ତି। ଏପରି ପରିସ୍ଥିତିରେ ଅନିଷ୍ଟରୂପେ ଯାହା କିଛି ମୋତେ ପ୍ରାପ୍ତ ହେଉଛି, ତାହା ତ ମୋ ପ୍ରଭୁ ପଠାଇଥିବା ପୁରସ୍କାର ଅଟେ। ଏପରି ବୁଝି ପ୍ରହ୍ଲାଦ ପରି ସେ ପ୍ରତିକ୍ଷଣ ମୁଗ୍ଧ ହୋଇ ରହିବା ଉଚିତ।

୧୮. ଯାହାକୁ ଆମେ ଅନିଷ୍ଟ ଭାବୁଛୁ, ଟିକିଏ ଭିତରେ ପ୍ରବେଶ କଲେ

ଆମକୁ ଜଣାଯିବ ଯେ ତାହା ତ ପ୍ରକୃତରେ ଆମ ପାଇଁ ପରମାନନ୍ଦର ବିଷୟ।

୧୯. କଷ୍ଟ ଦେଇ ଭଗବାନ ଆମର ପରୀକ୍ଷା ନିଅନ୍ତି ଓ ଆମକୁ ନିଜର ପ୍ରକୃତ ସ୍ଥିତି ସହ ପରିଚୟ କରାନ୍ତି ତଥା ଆମର ଅଭିମାନ ଭଙ୍ଗ କରନ୍ତି।

୨୦. ଆମ ଅପରାଧଗୁଡ଼ିକ ପାଇଁ ଦଣ୍ଡ ଦେଇ ଭଗବାନ ଆମକୁ ପାପମୁକ୍ତ କରନ୍ତି ଓ ଶୁଦ୍ଧ କରନ୍ତି।

୨୧. ସବୁଠୁଁ ବଡ଼ ଲାଭ ଏହା ଅଟେ ଯେ କଷ୍ଟ ସମୟରେ ଭଗବାନ ମନେ ପଡ଼ନ୍ତି। ଆମ୍ଭେମାନେ ସଂସାରର ତୁଚ୍ଛ, ନାଶବାନ୍ ଭୋଗସମୂହ ପଛରେ ପଡ଼ି ଭଗବାନଙ୍କୁ ଭୁଲି ଯାଇଥାଉ। ଏଥିପାଇଁ ମଝିରେ ମଝିରେ କଷ୍ଟ ଦେଇ ଭଗବାନ ଆମକୁ ଚେତାବନୀ ଦେଉ ଥାଆନ୍ତି କି ମୋତେ ଭୁଲିଯାଅ ନାହିଁ, ନ ହେଲେ ବଡ଼ ଦୁର୍ଦ୍ଦଶା ହେବ। ଏହି ମନୁଷ୍ୟଶରୀର ଭୋଗ ଉପଭୋଗ ପାଇଁ ମିଳି ନାହିଁ, ମୋତେ ପ୍ରାପ୍ତ କରିବା ପାଇଁ ହିଁ ମିଳିଛି। ଏଣୁ ଏହାକୁ ବ୍ୟର୍ଥ କାମରେ ନଷ୍ଟ କର ନାହିଁ।

୨୨. ନିଆଁରେ ତତାଇଲେ ବା ପୋଡ଼ିଲେ ଯେପରି ସୁନା ଚମକି ଉଠେ, ସେହିପରି କଷ୍ଟ ସହିଲେ ଆତ୍ମା ଶୁଦ୍ଧ ଓ ବଳିଷ୍ଠ ହୁଏ। ଏହା ସମସ୍ତଙ୍କ ଅନୁଭବ ଅଟେ।

୨୩. ପ୍ରଭୁ ଆମପାଇଁ ଯାହା କିଛି କରିଛନ୍ତି, ଏଥିରେ ତାଙ୍କର ଅପାର ଦୟା ଏବଂ ଆମର ପରମ ହିତ ମନେ କରି ଖୁବ୍ ପ୍ରସନ୍ନ ରହିବା ଉଚିତ।

୨୪. ଦୁଃଖ ବା ଶୋକର ଦୁଇଟି କାରଣ ଅଛି—ପ୍ରିୟବିୟୋଗ ଏବଂ ଅପ୍ରିୟସଂଯୋଗ ଅଥବା ଇଷ୍ଟର ବିନାଶ ଏବଂ ଅନିଷ୍ଟର ପ୍ରାପ୍ତି।

୨୫. ମନୁଷ୍ୟକୁ ଧନ, ଗୃହ, ଜମି, ସମ୍ପତ୍ତି ଆଦି ଜଡ଼ ବସ୍ତୁଗୁଡ଼ିକ ପାଇଁ ଓ ସ୍ତ୍ରୀ, ପୁତ୍ର ଆଦି ଚେତନ ପ୍ରାଣୀଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ।

୨୬. ଯେଉଁମାନଙ୍କର ବିନାଶ ହୋଇ ସାରିଛି, ସେମାନଙ୍କ ପାଇଁ ଶୋକ କରିବା ତ ସମ୍ପୂର୍ଣ୍ଣ ବେକାର ଅଟେ; ଯାହାଙ୍କର ବିନାଶ ଅବଶ୍ୟମ୍ଭାବୀ, ତାଙ୍କ ପାଇଁ ମଧ୍ୟ ବୁଦ୍ଧିମାନ୍ ମନୁଷ୍ୟ ଶୋକ କରିବା ଉଚିତ ନୁହେଁ।

୨୭. ଇନ୍ଦ୍ରିୟଙ୍କ ଦ୍ୱାରା ଦୃଶ୍ୟମାନ ଯେତେ ପଦାର୍ଥ ଅଛି, ତାହା ସବୁ ଜଡ଼, ଅନିତ୍ୟ, କ୍ଷଣିକ ଏବଂ ନାଶବାନ୍। କିଛି ଗମ୍ଭୀର ବିଚାର କଲେ ପ୍ରତୀତ

ହୁଏ ଯେ, ସେଗୁଡ଼ିକ ସ୍ୱପ୍ନବତ୍ ଅଟନ୍ତି ଓ ସ୍ୱପ୍ନବତ୍ ହେବାଦ୍ୱାରା ସେଗୁଡ଼ିକ ବାସ୍ତବରେ ହିଁ ନାହାନ୍ତି। ଏଥିପାଇଁ ଏହି ନାଶବାନ୍ ଜଡ଼ ପଦାର୍ଥଗୁଡ଼ିକ ପାଇଁ ଶୋକ କରିବା କୌଣସି ପ୍ରକାରେ ଠିକ୍ ନୁହେଁ।

୨୮. ଯେଉଁ ଚେତନ ତତ୍ତ୍ୱ ଅଛି, ତାହା ନିତ୍ୟ, ସତ୍ ଅଟେ। ତାହାର କେବେ ବିନାଶ ହୁଏ ନାହିଁ। ଏଣୁ ତା'ପାଇଁ ମଧ୍ୟ ଶୋକ କରିବା ଠିକ୍ ନୁହେଁ।

୨୯. ଶରୀର ବିନାଶୀ ଓ ଆତ୍ମା ନିତ୍ୟ-ଅବିନାଶୀ। ଏଥିପାଇଁ ଉଭୟ ଦୃଷ୍ଟିରୁ ଶୋକ କରିବା ଉଚିତ ନୁହେଁ। ଯେଉଁ ବସ୍ତୁ ବିନାଶୀ ଅଟେ, ନାଶ ହେବା ପୂର୍ବରୁ ମଧ୍ୟ ତାହା ବିନଷ୍ଟ ବୋଲି ବୁଝିବା ଉଚିତ, କାରଣ ସେହି ବସ୍ତୁଟି ଦିନେ ନା ଦିନେ ଅବଶ୍ୟ ନଷ୍ଟ ହେବ। ତାହା ସ୍ଥିର ରହିପାରିବ ନାହିଁ।

୩୦. ଯେଉଁ ବସ୍ତୁ ସହ ସଂଯୋଗ ହୁଏ, ତାର ବିୟୋଗ ମଧ୍ୟ ଅବଶ୍ୟମ୍ଭାବୀ ଅଟେ। ସଂସାରର ସଂଯୋଗ ଓ ବିୟୋଗ ସେହିପରି ଅଟେ, ଯେପରି କୌଣସି ଯାତ୍ରୀ ବିଶ୍ରାମାଗାର ବା ପାନ୍ଥଶାଳାରେ ଯାତ୍ରୀମାନଙ୍କର ଏକତ୍ରିତ ହେବା ତଥା ଅଲଗା-ଅଲଗା ହୋଇଯିବା ଅଥବା ରେଲଗାଡ଼ିରେ ଯାତ୍ରୀମାନଙ୍କର ଚଢ଼ିବା-ଓହ୍ଲାଇବା ଘଟେ।

୩୧. ଅଜ୍ଞାନ ଜୀବ ସଂସାରରେ ଏ ମୋର ସ୍ତ୍ରୀ, ଏ ମୋର ପୁଅ, ଏହା ମୋ ଜମି, ଏହା ମୋ ସଂପତ୍ତି, ଏହା ମୋ ଶରୀର—ଏ ପ୍ରକାର ମମତା କରେ ଓ ପୁଣି ସେ ସବୁର ବିନାଶରେ ଦୁଃଖୀ ହୁଏ।

୩୨. ବାସ୍ତବରେ ଇଷ୍ଟ-ବିୟୋଗ ଅଥବା ଅନିଷ୍ଟ-ସଂଯୋଗ ଦୁଃଖଦାୟକ ହୁଏ ନାହିଁ। ଅଜ୍ଞାନମୂଳକ ମମତା ହିଁ ଦୁଃଖର କାରଣ ଅଟେ।

୩୩. ମମତାର ନାଶ ହିଁ ଦୁଃଖନାଶର ଉପାୟ ଓ ମମତାର ନାଶ ପାଇଁ ଦୁଇଟି ଉପାୟ ଅଛି—(କ) ଜ୍ଞାନୀ ମହାତ୍ମାମାନଙ୍କ ସଙ୍ଗଦ୍ୱାରା ଜ୍ଞାନ ପ୍ରାପ୍ତ କରି ମମତାର ମୂଳ ଅଜ୍ଞାନର ନାଶ କରିବା ଅଥବା (ଖ) ଈଶ୍ୱରଙ୍କୁ ଭକ୍ତି କରି ତାଙ୍କରି କୃପାଦ୍ୱାରା ଅଜ୍ଞାନ ନାଶ କରିବା।

୩୪. କୌଣସି ମିତ୍ରର ଗଚ୍ଛିତ ସମ୍ପତ୍ତିକୁ ନିଜ ପାଖରେ ରଖି ତାକୁ ଫେରାଇବାରେ ଯିଏ ଟାଳଟୁଳ ନୀତି କରେ ବା କୁଣ୍ଠାବୋଧ କରେ, ସେ କୃତଘ୍ନ ଅଟେ ଓ ବିଶ୍ୱାସଘାତକ ବୋଲି କଥିତ ହୁଏ। ଏହିପରି ସ୍ତ୍ରୀ, ପୁତ୍ର, ଧନ ଆଦି ଭଗବାନଙ୍କ ଦ୍ୱାରା ଦିଆଯାଇଥିବା ଅମାନତ ବା ସମ୍ପତ୍ତିକୁ ଯେ ନିଜର

ମନେକରି ଫେରାଇ ଦେବାରେ ଟାଳଟୁଳ କରେ ଅଥବା ଭଗବାନଙ୍କ ଦ୍ୱାରା ବଳପୂର୍ବକ ଫେରାଇ ନିଆଗଲେ କାନ୍ଦେ, ସେ ଭଗବଦ୍‌ବିଶ୍ୱାସୀ ବୋଲି ବୁଝାଯିବ ନାହିଁ। ପୁଣି ତାକୁ କିପରି ଭକ୍ତ ବୋଲି କୁହାଯିବ?

୩୫. ଭଗବାନଙ୍କ ବସ୍ତୁ ଭଗବାନଙ୍କୁ ସମର୍ପି ଦେବାରେ ପ୍ରସନ୍ନତା ହେବା ଉଚିତ ଓ ଏପରି କରି ଚିନ୍ତାରୁ ମୁକ୍ତ ହେବା ଉଚିତ।

୩୬. ଈଶ୍ୱରଙ୍କଠାରେ ଆମର ବିଶ୍ୱାସ ନ ଥିଲେ ମଧ୍ୟ ଯାହା କିଛି ହେବାର ଅଛି, ତାହା ହେବ। ଆମେ ଟାଳିଲେ ଟଳିବ ନାହିଁ। ଏହା ବୁଝି ଆମକୁ ଧୈର୍ଯ୍ୟ ଧାରଣ କରିବା ଉଚିତ। ଏଭଳି ନିରୁପାୟ କଥା ପାଇଁ ଚିନ୍ତା କରିବା ଦ୍ୱାରା ଲାଭ କ'ଣ? ପୁଣି ଯେଉଁ କଥା ହୋଇ ସାରିଛି, ତା'ପାଇଁ ଶୋକ କରିବା ଆହୁରି ମୂଲ୍ୟହୀନ ଅଟେ। ଆମେ ଶୋକ କରିବାଦ୍ୱାରା ତାହା ଅନ୍ୟଥା ହୋଇ ପାରିବ ନାହିଁ। ତେଣୁ ତା'ପାଇଁ ଶୋକ କରିବା ନିଜର ହାନି କରିବା ଅଟେ।

୩୭. ପ୍ରତିକୂଳତାରେ ହିଁ ଦୁଃଖ ଅଛି। ଅତଏବ ଦୁଃଖସମୂହର ଆତ୍ୟନ୍ତିକ ଅଭାବ ପାଇଁ ପ୍ରତିକୂଳତା ତ୍ୟାଗ କରିବା ଉଚିତ।

୩୮. ଈଶ୍ୱରଭକ୍ତିର ପ୍ରତାପରେ ସମ୍ପୂର୍ଣ୍ଣ ଦୁଃଖର ମୂଳ ପ୍ରତିକୂଳତାର ଅତ୍ୟନ୍ତ ଅଭାବ ହୋଇଯାଏ।

୩୯. ଈଶ୍ୱରଭକ୍ତର କୌଣସି ଜୀବଠାରେ ଓ କୌଣସି ପଦାର୍ଥରେ ପ୍ରତିକୂଳତା ନ ଥାଏ; କାରଣ ସେ ବୁଝେ ଯେ ଈଶ୍ୱର ହିଁ ସମ୍ପୂର୍ଣ୍ଣ ଭୂତ-ପ୍ରାଣୀଙ୍କର ହୃଦୟରେ ଆତ୍ମାରୂପେ ବିରାଜମାନ। ଅତଃ କାହାରି ପ୍ରତି ଦ୍ୱେଷ କରିବା ପରମେଶ୍ୱରଙ୍କ ସହ ଦ୍ୱେଷ କରିବା ଅଟେ।

୪୦. ଜୀବଙ୍କର କର୍ମ ଅନୁସାରେ ହିଁ ସେମାନଙ୍କ ସୁଖ-ଦୁଃଖ ଭୋଗ ପାଇଁ ପରମେଶ୍ୱର ସବୁ ପଦାର୍ଥ ସୃଷ୍ଟି କରନ୍ତି। ଯେଉଁ ପୁରୁଷ ଏପରି ବୁଝେ, ସେ ଈଶ୍ୱରକୃତ ପ୍ରତ୍ୟେକ ବିଧାନରେ ଠିକ୍ ସେହିପରି ପ୍ରସନ୍ନଚିତ୍ତ ରହେ, ଯେପରି କି ମିତ୍ରର ବିଧାନରେ ମିତ୍ର ଓ ପତିର ବିଧାନରେ ଉତ୍ତମ ସ୍ତ୍ରୀ ରହିଥାଏ।

୪୧. ଅନୁକୂଳ-ପ୍ରତିକୂଳରେ ସମତା ଈଶ୍ୱରଙ୍କ ଶରଣାପନ୍ନ ହେଲେ ଅନାୟାସ ହିଁ ପ୍ରାପ୍ତ ହୋଇଯାଏ।

୪୨. ଈଶ୍ୱର ସୁହୃଦ୍, ଦୟାଳୁ, ପ୍ରେମୀ ଏବଂ ଜ୍ଞାନସ୍ୱରୂପ ଅଟନ୍ତି, ଏ ପ୍ରକାର ବୁଝିଥିବା ବ୍ୟକ୍ତି ଈଶ୍ୱରଙ୍କୁ କେବେ ଭୁଲେ ନାହିଁ। ସେ ନିଜ ଇଚ୍ଛାକୁ ସର୍ବଥା ତ୍ୟାଗ କରି କେବଳ ଏକ ଈଶ୍ୱରଙ୍କ ଇଚ୍ଛାପରାୟଣ ହୋଇଯାଏ।

୪୩. ଭକ୍ତ ନିଜ ମନ, ବୁଦ୍ଧି ଓ ଇନ୍ଦ୍ରିୟଙ୍କୁ ଈଶ୍ୱରଙ୍କୁ ଅର୍ପଣ କରିଦିଏ, ଈଶ୍ୱରଙ୍କ ହାତର କଣ୍ଢେଇ ହୋଇଯାଏ। ଈଶ୍ୱର ଯେପରି କରାନ୍ତି, ସେପରି ହିଁ କରେ, ନିଜ ଇଚ୍ଛାରେ କିଛି କରେ ନାହିଁ ଏବଂ ଈଶ୍ୱରଙ୍କ ଦ୍ୱାରା କରାଯାଇଥିବା ବିଧାନରେ ସଦାସର୍ବଦା ପ୍ରସନ୍ନଚିତ୍ତ ରହେ, ଏହାର ନାମ ଶରଣ ଅଟେ।

୪୪. ଜ୍ଞାନ ଦୃଷ୍ଟିରୁ ବିଚାର କରାଗଲେ ସଂସାର ସ୍ୱପ୍ନବତ୍ ଅଟେ। ସ୍ୱପ୍ନର ପଦାର୍ଥ ସବୁ ମାୟାମୟ। ଏଣୁ ସେଥିରୁ ଉତ୍ପନ୍ନ ହେଉଥିବା ଅନୁକୂଳତା ଓ ପ୍ରତିକୂଳତା ମଧ୍ୟ ମାୟାମୟ ଅଟେ।

୪୫. ଯେବେ ମଣିଷ ସ୍ୱପ୍ନରୁ ଜାଗି ଉଠେ, ତେବେ ସ୍ୱପ୍ନର କୌଣସି ପଦାର୍ଥକୁ ଦେଖେ ନାହିଁ ଓ ସ୍ୱପ୍ନରେ ପ୍ରତୀତ ହୋଇଥିବା ପଦାର୍ଥସମୂହକୁ ମାୟାମୟ ବୁଝେ। ଠିକ୍ ଏହିପରି ତତ୍ତ୍ୱଜ୍ଞାନୀ ପୁରୁଷ ସଂସାରର ସମସ୍ତ ପଦାର୍ଥକୁ ମାୟାମୟ ବୁଝିଥାଏ।

୪୬. ଯେବେ ମନୁଷ୍ୟ ସବୁ ପଦାର୍ଥକୁ ସ୍ୱପ୍ନ ସଦୃଶ ମାୟାମୟ ବୁଝିଯାଏ, ତାପାଇଁ ଅନୁକୂଳତା ଓ ପ୍ରତିକୂଳତାର କିଛି ସତ୍ତା ମଧ୍ୟ ରହିଯାଏ ନାହିଁ। ପୁଣି ଏକ ଚେତନ ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କ ବ୍ୟତୀତ କୌଣସି ବସ୍ତୁ ତାକୁ ଜଣାଯାଏ ନାହିଁ।

୪୭. ଅନୁକୂଳତା ଓ ପ୍ରତିକୂଳତାର ଅତ୍ୟନ୍ତ ଅଭାବ ହୋଇଗଲେ, ରାଗ-ଦ୍ୱେଷାଦି ସମସ୍ତ ଅନର୍ଥ ଏବଂ ଦୁଃଖସମୂହର ଅତ୍ୟନ୍ତ ଅଭାବ ହୋଇଯାଏ ତଥା ପରମଶାନ୍ତି ଓ ପରମ ଆନନ୍ଦର ପ୍ରାପ୍ତି ହୋଇଯାଏ।

୪୮. ବାସ୍ତବରେ ସେହି ପରମ ଆନନ୍ଦ ବ୍ରହ୍ମ ହିଁ ପରମ ଅନୁକୂଳ ଅଟେ ଏବଂ ସେ ହିଁ ସମସ୍ତଙ୍କ ଆତ୍ମା ହୋଇଥିବାରୁ ନିଜ ଆତ୍ମା ଅଟେ। ଯେବେ ଏ ପ୍ରକାରର ଜ୍ଞାନ ହୋଇଯାଏ, ତେବେ ପୁଣି ତା'ର ପ୍ରତିକୂଳ ବୁଦ୍ଧି କେବେ ହୋଇପାରେ ନାହିଁ, କାରଣ ନିଜ ପ୍ରତି କାହାରି ପ୍ରତିକୂଳତା ବୁଦ୍ଧି ହୁଏ ନାହିଁ।

୪୯. ଯାହା କିଛି ମାଲିକର ଇଚ୍ଛାରେ ହୁଏ, ସେଥିରେ ପ୍ରସନ୍ନ ରହିବା ଉଚିତ।

୫୦. ବିଗ୍ରହରେ ହେଉ ବା ଜିଦ୍‌ରେ, ଯେକୌଣସି ପ୍ରକାରେ ଶୋକ, ଚିନ୍ତା ଓ ଦୁଃଖକୁ ଦୂରେଇ ଦେଇ ସବୁବେଳେ ପ୍ରତ୍ୟେକ ଅବସ୍ଥାରେ ଆନନ୍ଦମଗ୍ନ ରହିବା ଉଚିତ।

୫୧. ଯାହା କିଛି ବି ହେଉଛି, ଭଗବାନଙ୍କ ଆଜ୍ଞାରେ ହେଉଛି। ଏପରି ବୁଝି ଯାହା କିଛି ବି ହେଉ ସେଥିରେ ପ୍ରସନ୍ନ ରହିବା ଉଚିତ।

୫୨. ଦୁଃଖସମୂହ ପ୍ରାପ୍ତ ହେଲେ ମଧ୍ୟ ଆନନ୍ଦ ବୋଲି ମନେ କର।

୫୩. ସୁଖରେ ଆପଣମାନେ ପ୍ରସନ୍ନ ରହୁଛନ୍ତି; କିନ୍ତୁ ଯଦି ମନ ବିରୁଦ୍ଧ ଘଟଣାରେ ପ୍ରସନ୍ନ ରହିବେ, ତେବେ କଲ୍ୟାଣ ହୋଇଯିବ। ଆପଣଙ୍କ ଉପରକୁ କୌଣସି ଆପଦ ଆସିଲେ ତାକୁ ଆପଣ ବୁଝିନିଅନ୍ତୁ ଯେ ମୋ ପାଇଁ ଭଗବାନ ଏହି ପୁରସ୍କାର ପଠାଇଛନ୍ତି, ଏପରି ଭାବି ବହୁତ ଆନନ୍ଦିତ ହେବା ଉଚିତ।

୫୪. ପରେଚ୍ଛା ଓ ଦୈବୀ ଇଚ୍ଛା ଏସବୁକୁ ପରମେଶ୍ୱରଙ୍କ ଇଚ୍ଛା ଭାବି ବହୁତ ପ୍ରସନ୍ନ ହେବା ଉଚିତ।

୫୫. ଟଙ୍କାପଇସାର କଥା ତ ସାମାନ୍ୟ। ସର୍ବସ୍ୱ ନାଶ ହୋଇଗଲେ ବି କେବଳ ପ୍ରଭୁଙ୍କ ଭରସା କରି ସମସ୍ତଙ୍କ ଆଶ୍ରୟ ଛାଡ଼ିଦେବା ଉଚିତ।

୫୬. ପ୍ରଭୁଙ୍କ ସମ୍ମତିରେ ଯଦି ଆମକୁ ନରକ ଭୋଗିବାକୁ ପଡ଼େ, ତା'ହେଲେ ଆନନ୍ଦରେ ଭୋଗିବା ଉଚିତ।

୫୭. ଯାହା କିଛି ହେଉଛି, ତାହା ପ୍ରଭୁଙ୍କ ଆଖି ଆଗରେ ହିଁ ହେଉଛି। ଯଦି ତାଙ୍କ ଦୃଷ୍ଟିର ବାହାରେ କିଛି ମଧ୍ୟ ହେଉ ନାହିଁ, ତେବେ ପୁଣି ଚିନ୍ତା କରି ତାଙ୍କ ଶରଣକୁ କଳୁଷିତ କାହିଁକି କରିବା?

୫୮. ପ୍ରଭୁଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ରଖିବା ଉଚିତ, ଯାହାକିଛି ଘଟୁଛି, ତାହାକୁ କେବଳ ଦେଖିଚାଲ।

୫୯. ପ୍ରଭୁ ଯାହା କିଛି କରନ୍ତୁ, ତାକୁ ଆନନ୍ଦରେ ସ୍ୱୀକାର କରିବା ଉଚିତ। ତାଙ୍କ ବିଧାନ ଉପରେ ମନ ଖରାପ କଲେ ସେ କିପରି ସନ୍ତୁଷ୍ଟ ହେବେ? ଶରୀରରେ କୌଣସି ପ୍ରକାରର ରୋଗ ହେଲେ ତାହାକୁ ତପସ୍ୟା ଭାବି 'ମୁଁ ତପ କରୁଅଛି', ଏପରି ବୁଝ ଓ ଖୁବ୍ ପ୍ରସନ୍ନଚିତ୍ତ ରୁହ।

୬୦. ଯାହା କିଛି ହେଉ, ସେଥିରେ ଆନନ୍ଦିତ ହେବା ଉଚିତ। ସବୁକିଛି ପ୍ରଭୁଙ୍କ ଦୃଷ୍ଟି ସମ୍ମୁଖରେ ହିଁ ହେଉଛି।

୬୧. ନିଜ ମନ ଖରାପ କରିବା ଅର୍ଥ ମାଲିକକୁ ତିରସ୍କାର କରିବା ଓ ମାଲିକ ଶରଣରେ କଳଙ୍କ ଲଗାଇବା ଅଟେ ।

୬୨. ଯାହାକିଛି ହେଉଛି, ସବୁ ଭଗବାନଙ୍କ ଆଜ୍ଞାରେ ହିଁ ହେଉଛି । ଭଗବାନଙ୍କ ଶରଣାପନ୍ନ ହେବା ପରେ ତାଙ୍କ ଆଜ୍ଞାକୁ କାହିଁକି ଟାଳିବା? ଯାହା କିଛି ହୁଏ, ତାହା କଳ୍ପିତ ଓ ମିଥ୍ୟା ଅଟେ ତଥା ତାଙ୍କର ଲୀଳାମାତ୍ର ଅଟେ । ଯାହା କିଛି ହୋଇଯାଉ, ଆମର କିଛି ଆପତ୍ତି ନାହିଁ । କେବଳ ସାକ୍ଷୀ ରହିବା ଉଚିତ ।

୬୩. ଭଗବାନ ଯାହା କିଛି କରନ୍ତୁ, ତାକୁ ଆନନ୍ଦରେ ଧାରଣ କରିବା ଉଚିତ ।

୬୪. ଯଦି ମନରେ ସାମାନ୍ୟ ଦୁଃଖ ହୁଏ, ତା'ହେଲେ ବୁଝିବା ଉଚିତ ଯେ ସ୍ୱାମୀଙ୍କ ଦ୍ୱାରା କରାଯାଇଥିବା କାର୍ଯ୍ୟ ଉପରେ ବିଶ୍ୱାସ ନାହିଁ । ସବୁ କିଛି ସ୍ୱାମୀଙ୍କର ହିଁ ଅଟେ । ସେ ନିଜ ବସ୍ତୁକୁ ଯେଉଁ ପ୍ରକାରେ ରଖି ପାରନ୍ତି, ସେଥିରେ ଆମର କ'ଣ ଯାଏଆସେ?

୬୫. ଯାହା କିଛି ବି ହେଉ, ସେଥିରେ ଆନନ୍ଦ ଅନୁଭବ କରିବା ଉଚିତ । ଯାହା କିଛି ହେଉଛି, ତାହାସବୁ ପରମେଶ୍ୱରଙ୍କ ଆଜ୍ଞାରେ ହେଉଛି । ଯାହା କିଛି ଅଛି, ତାହା ପରମେଶ୍ୱରଙ୍କର ହିଁ ଅଟେ । ତାଙ୍କର ଲୀଳାମାତ୍ର ଭାବି ଆନନ୍ଦ ଅନୁଭବ କରିବା ଉଚିତ ।

୬୬. ପରମାତ୍ମାଙ୍କ ପ୍ରତିକୂଳ ଓ ତାଙ୍କର ଆଜ୍ଞା ବିନା କିଛି ହେବା ସମ୍ଭବ ନୁହେଁ, ଏପରି ନିର୍ଣ୍ଣୟ କରି ପ୍ରଭୁଙ୍କ ପ୍ରସନ୍ନତାରେ ପ୍ରସନ୍ନ ହୋଇ ସବୁ ସମୟ ଆନନ୍ଦରେ ମଗ୍ନ ରହିବା ଉଚିତ ।

୬୭. ଈଶ୍ୱରଙ୍କ ଶରଣାଗତି ହିଁ ଦୁଃଖରୁ ସବୁ ଦିନ ପାଇଁ ମୁକ୍ତ ହେବାର ସର୍ବୋତ୍ତମ ଉପାୟ ଅଟେ । ଆମେ ସାରା ଜୀବନ ବିଳାପ କଲେ ମଧ୍ୟ ଅନ୍ୟ କୌଣସି ଉପାୟରେ ଦୁଃଖ ଦୂର ହୁଏ ନାହିଁ ।



## ବାଲ୍ୟ-ଶିକ୍ଷା

୧. ବାଳକମାନେ ନିମ୍ନଲିଖିତ ଛ'ଗୋଟି କଥାକୁ ଜୀବନ ଓ ପ୍ରାଣ ପରି ଭାବି ପାଳନ କରିବା ପାଇଁ ବିଶେଷ ଚେଷ୍ଟା କରିବା ଉଚିତ ।

ଏହି କଥାଗୁଡ଼ିକ ଯଥା–

ସଦାଗ୍ଚର, ସଂଯମ, ବ୍ରହ୍ମଚର୍ଯ୍ୟ ପାଳନ, ବିଦ୍ୟାଭ୍ୟାସ, ମାତା-ପିତା ଓ ଆଗ୍ଚର୍ଯ୍ୟ ଆଦି ଗୁରୁଜନଙ୍କ ସେବା ଓ ଈଶ୍ୱରଭକ୍ତି।

୨. ବାଳକମାନଙ୍କୁ ପ୍ରାତଃକାଳରେ ସୂର୍ଯ୍ୟୋଦୟ ପୂର୍ବରୁ ଉଠି ଶୌଚ ସ୍ନାନ କରିବା ଉଚିତ। ପୁଣି ନିତ୍ୟକର୍ମ କରି ଗୁରୁଜନଙ୍କ ଚରଣରେ ପ୍ରଣାମ କରିବା ଉଚିତ। ଏହାପରେ ଶରୀରର ଆରୋଗ୍ୟ ଏବଂ ବଳ ବୃଦ୍ଧି ପାଇଁ ପଶ୍ଚିମୋତ୍ତାନ, ଶୀର୍ଷାସନ, ବିପରୀତକରଣୀ ଆଦି ଆସନ ଏବଂ ବ୍ୟାୟାମ କରିବା ଉଚିତ। ତା'ପରେ ଦୁଗ୍ଧପାନ କରି ବିଦ୍ୟାଭ୍ୟାସ କରିବେ। ଆସନ ଓ ବ୍ୟାୟାମ ସାୟଂକାଳରେ କରିବାର ଇଚ୍ଛା ଥିଲେ ଦୁଗ୍ଧପାନ ନ କରି ବିଦ୍ୟାଭ୍ୟାସ କରିବେ।

୩. ଯଦି ଶୟନ କରୁ କରୁ ସୂର୍ଯ୍ୟୋଦୟ ହୋଇଯାଏ, ତା'ହେଲେ ଦିନସାରା ଗାୟତ୍ରୀ ଜପ କରି ଉପବାସ କରିବା ଉଚିତ।

୪. ନିତ୍ୟକର୍ମରେ ଭଗବାନଙ୍କ ନାମ ଜପ ଓ ଧ୍ୟାନ ତଥା ଅତି କମ୍‌ରେ ଗୀତାର ଗୋଟିଏ ଅଧ୍ୟାୟ ପାଠ ନିଶ୍ଚିତଭାବେ କରିବା ଉଚିତ।

୫. **ନିତ୍ୟଂ ସ୍ନାତ୍ୱା ଶୁଚିଃ କୁର୍ଯ୍ୟାଦ୍ ଦେବର୍ଷିପିତୃତର୍ପଣମ୍।**
**ଦେବତାଭ୍ୟର୍ଚ୍ଚନଂ ଚୈବ ସମିଦାଧାନମେବ ଚ ॥**

"ବ୍ରହ୍ମଗ୍ଚରୀ ନିତ୍ୟ ସ୍ନାନ କରି ଓ ଶୁଦ୍ଧ ହୋଇ ଦେବ, ଋଷି ଓ ପିତୃପୁରୁଷଙ୍କ ତର୍ପଣ ତଥା ଦେବତାମାନଙ୍କ ପୂଜା ଓ ଅଗ୍ନିହୋତ୍ର ନିଶ୍ଚିତ କରିବା ଉଚିତ।"

୬. ବ୍ରହ୍ମଗ୍ଚରୀ ପାଇଁ ତ ଅଶୌଚ କେବେ ନାହିଁ, କିନ୍ତୁ ନିତ୍ୟକର୍ମ କରିବା ପାଇଁ କାହାରିକୁ ମନା ନାହିଁ। ଜନ୍ମ ଓ ମୃତ୍ୟୁର ଅଶୌଚରେ ସନ୍ଧ୍ୟା, ଗାୟତ୍ରୀ-ଜପ ପ୍ରଭୃତି ବୈଦିକ ନିତ୍ୟକର୍ମ ଜଳ ବିନା ମନେ ମନେ ମନ୍ତ୍ରଗୁଡ଼ିକୁ ଉଚ୍ଚାରଣ କରି କରିବା ଉଚିତ। କେବଳ ସୂର୍ଯ୍ୟ ଭଗବାନଙ୍କୁ ଜଳରେ ଅର୍ଘ୍ୟ ଦେବା ଉଚିତ।

୭. ଯଦି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ହୋଇଥିବେ, ତେବେ ଯଜ୍ଞ, ସନ୍ଧ୍ୟା, ଗାୟତ୍ରୀ-ଜପ, ସ୍ୱାଧ୍ୟାୟ, ଦେବପୂଜା ଏବଂ ତର୍ପଣ କରିବା ଉଚିତ।

୮. ଏଥିରେ ସନ୍ଧ୍ୟା ଓ ଗାୟତ୍ରୀ-ଜପ ନିଶ୍ଚିତଭାବେ କରିବା ଉଚିତ। ନ କଲେ ସେ ପ୍ରାୟଶ୍ଚିତ୍ତର ଭାଗୀ ଏବଂ ପତିତ ବୋଲି ବୁଝାଯାଏ।

୯. ଗାୟତ୍ରୀର ଜପ ସ୍ନାନ କରି ପବିତ୍ର ହୋଇ କରିବା ଉଚିତ– ଚଲାବୁଲା ଅବସ୍ଥାରେ ନୁହେଁ।

୧୦. ଗାୟତ୍ରୀକୁ ନିତ୍ୟ ଏକ ସହସ୍ର ଜପ କଲେ ମନୁଷ୍ୟ ମାସକ ମଧ୍ୟରେ ପାପସମୂହରୁ ମୁକ୍ତ ହୋଇଯାଏ। ତିନି ବର୍ଷ ପର୍ଯ୍ୟନ୍ତ କଲେ ବ୍ରହ୍ମ-ପ୍ରାପ୍ତି ହୋଇଯାଏ, ଏପରି ମନୁ କହିଛନ୍ତି।

୧୧. ଗୀତା, ରାମାୟଣାଦି ଧାର୍ମିକଗ୍ରନ୍ଥଗୁଡ଼ିକ ଉପରେ ଶ୍ରଦ୍ଧାଭକ୍ତିପୂର୍ବକ ବିଚାର କରିବା ପାଇଁ କିଛି ସମୟ ବାହାର କରିବା ଉଚିତ।

୧୨. ଯେଉଁ ବାଳକଟି ବାଲ୍ୟାବସ୍ଥାରେ ବିଦ୍ୟାଭ୍ୟାସ କରେ ନାହିଁ, ତାକୁ ଭବିଷ୍ୟତରେ ସବୁଦିନ ପାଇଁ ଅନୁତାପ କରିବାକୁ ପଡ଼େ।

୧୩. ବାଳକମାନଙ୍କ ପାଇଁ ଲୌକିକ ବିଦ୍ୟା ସଙ୍ଗେ ସଙ୍ଗେ ଧାର୍ମିକ ଶିକ୍ଷାର ମଧ୍ୟ ବହୁତ ଆବଶ୍ୟକତା ଅଛି। ଧାର୍ମିକ ଶିକ୍ଷା ବିନା ମନୁଷ୍ୟର ଜୀବନ ପଶୁ ସମାନ।

୧୪. "ଅଧିକ ଭୋଜନ କରିବା ଆରୋଗ୍ୟ, ଆୟୁ, ସ୍ୱର୍ଗ ଓ ପୁଣ୍ୟର ନାଶକ ଓ ଲୋକନିନ୍ଦିତ ଅଟେ। ଏଥିପାଇଁ ତାକୁ ତ୍ୟାଗ କର।"

୧୫. ବାଳକର ଯେପର୍ଯ୍ୟନ୍ତ ବିବାହ ହୋଇ ନାହିଁ, ସେପର୍ଯ୍ୟନ୍ତ ସେ ଗୁରୁଙ୍କ ପାଖରେ ବା ମାତା-ପିତାଙ୍କ ପାଖରେ ଯେଉଁଠି ବି ରହୁ, ସେ ବ୍ରହ୍ମଚାରୀ ଅଟେ।

୧୬. ଆଜିକାଲିର ସମୟ ଅନୁସାରେ ଅତି କମ୍‌ରେ ଅଠର ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟର ପାଳନ ନିଶ୍ଚିତଭାବେ କରିବା ଉଚିତ।

୧୭. ସୋଡ଼ାପାଣି, ବରଫ, ବିସ୍କୁଟ, ଡାକ୍ତରୀ ଔଷଧ, ହୋଟେଲ ଭୋଜନ ଆଦି ଉଚ୍ଛିଷ୍ଟ ଏବଂ ଅତି ଅପବିତ୍ର। ଏଥିପାଇଁ ଏଗୁଡ଼ିକୁ ଧର୍ମରେ ବାଧକ ମନେକରି ତ୍ୟାଗ କରିବା ଉଚିତ। ଏପରି ଭୋଜନକୁ ଭଗବାନ ତାମସୀ କହିଛନ୍ତି।

୧୮. ପ୍ରାୟତଃ ସୋଡ଼ାପାଣି ଓ ବରଫ ଉଚ୍ଛିଷ୍ଟ, କେକ୍ ଆଦିରେ ଅଣ୍ଡା, ଡାକ୍ତରୀ ଔଷଧରେ ମଦ-ମାଂସ ଆଦିର ମିଶ୍ରଣ, ହୋଟେଲ-ଭୋଜନରେ ମଦ-ମାଂସାଦିର ସଂସର୍ଗ ହେବା ଦ୍ୱାରା ଏସବୁ ଅତି ଅପବିତ୍ର ଅଟେ।

୧୯. ବ୍ରହ୍ମଚାରୀ ରସୁଣ, ପିଆଜ, ମଦ, ମାଂସ, ଭାଙ୍ଗ, ତମାଖୁ, ବିଡ଼ି, ସିଗାରେଟ୍, ଗଞ୍ଜେଇ ଆଦି ଘୃଣିତ ଏବଂ ମାଦକ ପଦାର୍ଥଗୁଡ଼ିକୁ ସେବନ କରିବା ତ ଦୂରର କଥା, ଏଗୁଡ଼ିକୁ ସ୍ମରଣ ମଧ୍ୟ କରିବା ଉଚିତ ନୁହେଁ।

୨୦. ଅତର, ସୁବାସିତ ତେଲ, ଚୌଳ, ଫୁଲହାର, ଆଖିର ଅଞ୍ଜନ, କେଶବିନ୍ୟାସ, ନାଚିବା, ଗାଇବା, ବଜାଇବା, ସ୍ତ୍ରୀଙ୍କ ଦର୍ଶନ-ଭାଷଣ-ସ୍ପର୍ଶ ଏବଂ

ସିନେମା, ଥିଏଟର ଆଦି ଖେଳତାମସା ଦେଖିବା—ଏହି ସବୁକୁ ସାରା ଅନର୍ଥର ମୂଳ କାମୋଦ୍ଦୀପକ ଓ ବୀର୍ଯ୍ୟନାଶକ ଭାବି ତ୍ୟାଗ କରିବା ଉଚିତ।

୨୧. ମିଛ, କପଟ, ଛଳ, ଛିଦ୍ର, ଜୁଆ, ଝଗଡ଼ା, ବିବାଦ, ନିନ୍ଦା, ଚୁଗୁଲି, ହିଂସା, ଚୋରି, ପରସ୍ତ୍ରୀଗମନ ଆଦିକୁ ମହାପାପ ଭାବି ଏହି ସବୁ ସର୍ବଥା ତ୍ୟାଗ କରିବା ଉଚିତ।

୨୨. ଆଳସ୍ୟ ଓ ପ୍ରମାଦକୁ ଛାଡ଼ି ମାତା-ପିତା ଆଦି ଗୁରୁଜନଙ୍କ ସେବା ପରମ ଧର୍ମ ଭାବି ତାଙ୍କରି ପୂଜା-ସେବା ଏବଂ ଆଜ୍ଞାପାଳନ ତତ୍ପରତା ସହ କରନ୍ତୁ।

୨୩. କାମ, କ୍ରୋଧ, ଲୋଭ, ମୋହ, ରାଗ, ଦ୍ୱେଷ, ଈର୍ଷ୍ୟା, ଶତ୍ରୁତା, ଅହଂକାର, ଦମ୍ଭ, ଦର୍ପ, ଅଭିମାନ ଓ ଘୃଣା ଆଦି ଦୁର୍ଗୁଣସମୂହକୁ ସମସ୍ତ ପାପ ଓ ଦୁଃଖସମୂହର ମୂଳ କାରଣ ଭାବି ହୃଦୟରୁ ଦୂର କରିବା ପାଇଁ ବିଶେଷ ପ୍ରଯତ୍ନଶୀଳ ରହିବା ଉଚିତ।

୨୪. ଦୁର୍ଗୁଣ ଓ ଦୁରାଗ୍ରହଗୁଡ଼ିକୁ ତ୍ୟାଗ କରି ମନ ଓ ଇନ୍ଦ୍ରିୟଙ୍କୁ ବିଷୟ-ଭୋଗଠାରୁ ନିବୃତ୍ତ କରି ନିଜର ଅଧୀନ କରିବା ଉଚିତ।

୨୫. ମାତା, ପିତା, ଆଚାର୍ଯ୍ୟଙ୍କ ସେବା ଓ ଆଜ୍ଞାପାଳନ ସମାନ ବାଳକମାନଙ୍କ ପାଇଁ ଅନ୍ୟ କୌଣସି ଧର୍ମ ନାହିଁ। ମନୁ କହିଛନ୍ତି—ଏ ସମସ୍ତଙ୍କର ସେବା ହିଁ ପରମ ଧର୍ମ, ଅନ୍ୟ ସବୁ ଉପଧର୍ମ ଅଟେ।

୨୬. ନିଜଠାରୁ ଯେଉଁମାନେ କୌଣସି ପ୍ରକାରେ ବଡ଼, ସେମାନଙ୍କ ସେବା ଓ ସେମାନଙ୍କୁ ଆଦରପୂର୍ବକ ପ୍ରଣାମ କରିବା ଉଚିତ। ସେମାନଙ୍କ ମଧ୍ୟରେ ବେଦ ଓ ଶାସ୍ତ୍ରବେତ୍ତା ବିଦ୍ୱାନ୍ ବ୍ରାହ୍ମଣ ସବୁଠୁଁ ବଳି ଅଧିକ ସତ୍କାର ପାଇବାର ଯୋଗ୍ୟ ଅଟନ୍ତି।

୨୭. ବୈଶ୍ୟଋଷି ଶ୍ରବଣକୁମାର ଏବଂ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କ ପରି ମାତା-ପିତାଙ୍କ ଚରଣଯୁଗଳରେ ପ୍ରତିଦିନ ପ୍ରଣାମ କରିବା ଉଚିତ ତଥା ଶ୍ରଦ୍ଧା, ଭକ୍ତି, ବିନୟ ଓ ସରଳତାପୂର୍ବକ ତାଙ୍କ ଆଜ୍ଞା ପାଳନ କରି ତାଙ୍କ ସେବା କରିବା ପାଇଁ ତତ୍ପରତାର ସହ ଆତୁର ରହିବା ଉଚିତ।

୨୮. ଯେଉଁ ପୁରୁଷ ମାତା-ପିତାଙ୍କ ସେବାପରାୟଣ ହୁଏ, ତାର ଆୟୁ, ବିଦ୍ୟା ଓ ବଳ ବୃଦ୍ଧି ହୁଏ। ତା'ର ଉତ୍ତମ ଗତି ତଥା ଇହଲୋକ ଓ ପରଲୋକରେ ଚିରକାଳ ସ୍ଥାୟୀ କୀର୍ତ୍ତି ମଧ୍ୟ ହୁଏ।

୨୯. ମାତା-ପିତା, ଗୁରୁଜନ ଓ ସହପାଠୀଙ୍କ କଥା ବା କ'ଣ କହିବା, ସମସ୍ତଙ୍କ ସହ ସଦା-ସର୍ବଦା, ସତ୍ୟ, ହିତକର, ବିନୟଯୁକ୍ତ କଥା କହି ଏବଂ ମନ, ବାଣୀ, ଶରୀରଦ୍ୱାରା ଯେନ କେନ ପ୍ରକାରେ ଅନ୍ୟମାନଙ୍କର ଯେପରି ହିତ ହେବ, ସେପରି ପ୍ରଯତ୍ନ କରିବା ଉଚିତ।

୩୦. ସଂସାରରେ ସବୁଠାରୁ ଉତ୍ତମ ହେଉଛି ପ୍ରେମ, ପ୍ରେମ ସାକ୍ଷାତ୍ ପରମାତ୍ମାଙ୍କ ସ୍ୱରୂପ ଅଟେ। ଏଣୁ ଯେଉଁଠାରେ ପ୍ରେମ ଅଛି, ସେହିଠାରେ ସୁଖ ଓ ଶାନ୍ତିର ସାମ୍ରାଜ୍ୟ ଅଛି।

୩୧. କୌଣସି ଲୋକ ଯଦି ଆମକୁ ନିନ୍ଦା କରେ ବା ଗାଳି ଦିଏ, ତଥାପି ଆମେ ତା' ବଦଳରେ ଶାନ୍ତିଦାୟକ ସତ୍ୟ, ପ୍ରିୟ ଓ ହିତକର କୋମଳ ବଚନ କହିବା ଉଚିତ।

୩୨. କେତେ ବି ବିପଦ ଆସୁ, ଧୈର୍ଯ୍ୟ ଓ ନିର୍ଭୟତାର ସହ ସବୁକୁ ସହ୍ୟ କରିବା ଉଚିତ, କାରଣ ଯେତେ ବଡ଼ ବିପଦ ଆସିଲେ ମଧ୍ୟ ନିର୍ଭୟତାର ସହ ତାକୁ ସହ୍ୟ କରିବାଦ୍ୱାରା ଆତ୍ମବଳ ବୃଦ୍ଧି ହୁଏ। ଏପରି ବୁଝି ବିପଦ ସମୟରେ ଧୈର୍ଯ୍ୟ ଓ ଧର୍ମକୁ ତ୍ୟାଗ କରିବା ଉଚିତ ନୁହେଁ।

୩୩. ସହ୍ୟ କରିବାଦ୍ୱାରା ଧୀରତା, ବୀରତା, ଗମ୍ଭୀରତା ଓ ଆତ୍ମବଳ ବୃଦ୍ଧି ହୋଇଥାଏ। ଅବଶ୍ୟ କ୍ଷମା-ବୁଦ୍ଧିରେ ସହ୍ୟ କରିବା ଉଚିତ, କାପୁରୁଷତା ବା ଡରରେ ନୁହେଁ।

୩୪. ପ୍ରତ୍ୟେକ ବାଳକ ଏହି କଥା ପାଇଁ ଚେଷ୍ଟା କରିବା ଉଚିତ ଯେ ତା'ର ବଳ ବୃଦ୍ଧି ହେଉ। ଏଥିରେ ପାଞ୍ଚୋଟି କଥା ସହାୟକ ଅଟନ୍ତି–

(କ) ବ୍ରହ୍ମଚର୍ଯ୍ୟପାଳନ। ଏହାଦ୍ୱାରା ଶରୀର ସହିତ ଆତ୍ମବଳର ବୃଦ୍ଧି ହୋଇଥାଏ।

(ଖ) ପ୍ରତିଦିନ ନିୟମପୂର୍ବକ ବ୍ୟାୟାମ କରିବା। ଏହାଦ୍ୱାରା ଶରୀରରେ ପୌରୁଷ ଏବଂ ସ୍ଫୂର୍ତ୍ତିର ଉଦୟ ହୁଏ।

(ଗ) ସାୟଂ-ପ୍ରାତଃ ଉଚିତ ମାତ୍ରାରେ ଦୁଗ୍ଧ ପାନ କରିବା। ଦୁଗ୍ଧ ସାକ୍ଷାତ୍ ଅମୃତ ଅଟେ, ଏହାଠାରୁ ବଳି ବଳ ଏବଂ ବୁଦ୍ଧି ବୃଦ୍ଧିକାରକ ପଦାର୍ଥ ଅନ୍ୟ କିଛି ନାହିଁ। ବ୍ୟାୟାମ କରି କ୍ଷୀର ପିଇଲେ ବିଶେଷ ଲାଭ ହୁଏ। କ୍ଷୀର ଦ୍ୱାରା ମନ ସାତ୍ତ୍ୱିକ ହୁଏ।

(ଘ) ସ୍ୱାସ୍ଥ୍ୟଗତ କଥାଗୁଡ଼ିକ ଉପରେ ବିଶେଷ ଧ୍ୟାନ ରଖିବା ଓ

ନୀରୋଗ ରହିବା ପାଇଁ ନିଜ ଘର ଓ ଶରୀରର ଲୁଗାପଟାକୁ ପରିଷ୍କାର ରଖିବା ଅତ୍ୟନ୍ତ ଆବଶ୍ୟକ। ପ୍ରତ୍ୟେକ ବାଳକ ନିଜ ବୁଦ୍ଧିର ବିକାଶ କରିବା ଉଚିତ। ବିଦ୍ୟା ଓ ସତ୍‌ଶାସ୍ତ୍ରସମୂହର ଅଭ୍ୟାସଦ୍ୱାରା ବୁଦ୍ଧି ବଢ଼ିଥାଏ। ବୃଦ୍ଧ ଓ ଉତ୍ତମଲୋକଙ୍କ ସଙ୍ଗ, ସେବା ଓ ନମସ୍କାର କରିବାଦ୍ୱାରା ବିଗ୍ୟର ନିର୍ମଳ ହୋଇଥାଏ। ଉତ୍ତମ ଗୁଣଗୁଡ଼ିକର ସଂଗ୍ରହ, ଉତ୍ତମ ଆଚରଣ ଏବଂ ଶୌଗ୍ୟଗ୍ୟରର ପାଳନ କରିବାଦ୍ୱାରା ବୁଦ୍ଧି ପବିତ୍ର ଏବଂ ତୀକ୍ଷ୍ଣ ହୋଇଥାଏ।

(ଙ) ସବୁ ବାଳକ ଭଗବାନଙ୍କ ଭକ୍ତି ନିଜ ହୃଦୟରେ ଧାରଣ କରିବା ଉଚିତ। ଭଗବଦ୍‌ଭକ୍ତିଦ୍ୱାରା ସଦାଗ୍ୟର ଓ ସଦ୍‌ଗୁଣଗୁଡ଼ିକର ବୃଦ୍ଧି ଆପେ-ଆପେ ହେବାରେ ଲାଗେ। ଭଗବଦ୍‌ଭକ୍ତି ଉତ୍ତମ ଆଚରଣସମୂହର ମୂଳ ଅଟେ। ଭଗବାନଙ୍କ ଭଜନ, ଧ୍ୟାନ, ପୂଜା, ପ୍ରାର୍ଥନା, ନମସ୍କାର, ସ୍ତୁତି—ଏସବୁ ଭକ୍ତିର ଅଙ୍ଗ ଅଟନ୍ତି। ବାଳକମାନେ ଏଗୁଡ଼ିକ ଉପରେ ବିଶେଷ ଧ୍ୟାନ ଦେବା ଆବଶ୍ୟକ।



## ଅଷ୍ଟାଙ୍ଗଯୋଗ

୧. **ଯମନିୟମାସନପ୍ରାଣାୟାମପ୍ରତ୍ୟାହାରଧାରଣାଧ୍ୟାନସମାଧୟୋଽଷ୍ଟାବଙ୍ଗାନି।**

(ଯୋଗଦର୍ଶନ ୨।୨୯)

"ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି—ଏଗୁଡ଼ିକ ଯୋଗର ଆଠଟି ଅଙ୍ଗ।"

୨. **ଅହିଂସାସତ୍ୟାସ୍ତେୟବ୍ରହ୍ମଚର୍ଯ୍ୟାପରିଗ୍ରହା ଯମାଃ।**

(ଯୋଗଦର୍ଶନ ୨।୩୦)

"ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ—ଏହି ପାଞ୍ଚଟିର ନାମ ଯମ ଅଟେ।"

(କ) କୌଣସି ପ୍ରାଣୀକୁ ବା ନିଜକୁ ମନ, ବାଣୀ, ଶରୀରଦ୍ୱାରା, କେବେ କୌଣସି ପ୍ରକାର, କିଞ୍ଚିତ୍‌ମାତ୍ର କଷ୍ଟ ନ ଦେବାର ନାମ ଅହିଂସା। ସ୍ୱଧର୍ମରକ୍ଷା, ପରୋପକାର, ଇନ୍ଦ୍ରିୟସଂଯମ ଓ ଈଶ୍ୱର ଭକ୍ତି ଆଦି ସତ୍‌କାର୍ଯ୍ୟଗୁଡ଼ିକରେ କଷ୍ଟ ସହିବା ଯୋଗସିଦ୍ଧିରେ ସହାୟକ ହୁଏ; ଏଠାରେ କେବଳ ଅଶାସ୍ତ୍ରୀୟ, ଅନୁଚିତ କଷ୍ଟ ଦେବା ପାଇଁ ନିଷେଧ କରାଯାଇଛି। (ଖ) ଅନ୍ତଃକରଣ ଓ ଇନ୍ଦ୍ରିୟଦ୍ୱାରା ଯେପରି ନିର୍ଣ୍ଣୟ କରିଥିବ, ହିତ ଭାବନାରେ, କପଟରହିତ ପ୍ରିୟ ଶବ୍ଦସମୂହରେ

ଯଥାବତ୍, ତାହା ପ୍ରକଟ କରିବାର (ଯଥାର୍ଥ ଭାଷଣର) ନାମ ସତ୍ୟ ଅଟେ । (ଗ) ମନ, ବାଣୀ, ଶରୀରଦ୍ୱାରା କୌଣସି ପ୍ରକାରେ ମଧ୍ୟ କାହାରି ସ୍ୱତ୍ୱକୁ ଚୋରି ନ କରିବା ଓ ଛଡ଼ାଇ ନ ନେବା ହିଁ ଅସ୍ତେୟ ଅଟେ । (ଘ) ମନ, ଇନ୍ଦ୍ରିୟ, ଶରୀରଦ୍ୱାରା ସମସ୍ତ ଅବସ୍ଥାରେ ସଦା-ସର୍ବଦା ସମସ୍ତ ପ୍ରକାର ମୈଥୁନ ଅର୍ଥାତ୍ କାମ-ବିକାରର ସର୍ବଥା ଅଭାବର ନାମ ବ୍ରହ୍ମଚର୍ଯ୍ୟ ଅଟେ । (ଙ) ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧର ଉତ୍ପାଦକ କୌଣସି ଭୋଗ୍ୟସାମଗ୍ରୀ କେବେ ସଂଗ୍ରହ ନ କରିବା ଅପରିଗ୍ରହ ଅଟେ ।

୩. ମନୁଷ୍ୟ ଓ ମନୁଷ୍ୟେତର ସ୍ଥାବର-ଜଙ୍ଗମ ପ୍ରାଣୀ ତଥା ମନୁଷ୍ୟମାନଙ୍କ ମଧ୍ୟରେ ହିନ୍ଦୁ-ମୁସଲମାନ୍, ସନାତନୀ-ଅସନାତନୀ ଆଦି ଭେଦ ନିର୍ବିଶେଷରେ କାହାରି ସହିତ ଯମଗୁଡ଼ିକ ପାଳନରେ ଭେଦ ନ କରିବା "ଜାତିଗତ ସାର୍ବଭୌମ" ମହାବ୍ରତ ଅଟେ ।

୪. ଭିନ୍ନ-ଭିନ୍ନ ଖଣ୍ଡ, ଦେଶ, ପ୍ରଦେଶ, ଗ୍ରାମ, ସ୍ଥାନ ଏବଂ ତୀର୍ଥ-ଅତୀର୍ଥ ଆଦିର ଭେଦରେ ଯମର ପାଳନରେ କୌଣସି ପ୍ରକାରର ଭେଦ ନ ରଖିଲେ ତାହା "ଦେଶଗତ ସାର୍ବଭୌମ" ମହାବ୍ରତ ହୁଏ ।

୫. ବର୍ଷ, ମାସ, ପକ୍ଷ, ସପ୍ତାହ, ଦିବସ, ମୁହୂର୍ତ୍ତ, ନକ୍ଷତ୍ର ଏବଂ ପର୍ବ-ଅପର୍ବ ଆଦି ଭେଦ ନିର୍ବିଶେଷରେ ଯମପାଳନରେ କୌଣସି ପ୍ରକାର ଭେଦ ନ ରଖିବା "କାଳଗତ ସାର୍ବଭୌମ" ମହାବ୍ରତ ନାମରେ କଥିତ ।

୬. ଯଜ୍ଞ, ଦେବପୂଜା, ଶ୍ରାଦ୍ଧ, ଦାନ, ବିବାହ, ନ୍ୟାୟାଳୟ, କ୍ରୟ, ବିକ୍ରୟ, ଜୀବିକା ଆଦି ଭେଦଗୁଡ଼ିକରେ ଯମର ପାଳନରେ କୌଣସି ପ୍ରକାରର ଭେଦ ନ ରଖିବା "ସମୟ (ନିମିତ୍ତ) ଗତ ସାର୍ବଭୌମ" ମହାବ୍ରତ ନାମରେ କଥିତ ।

୭. କୌଣସି ଦେଶ ଅଥବା କାଳରେ, କୌଣସି ଜୀବ ସହିତ, କୌଣସି ନିମିତ୍ତରେ ହିଂସା, ଅସତ୍ୟ, ଚୋରି, ବ୍ୟଭିଚାର ଆଦିର କେବେ କୌଣସି ପ୍ରକାର ଆଚରଣ ନ କରିବା ତଥା ପରିଗ୍ରହ ଆଦି ନ ରଖିବା "ସାର୍ବଭୌମ ମହାବ୍ରତ" ଅଟେ ।

୮. **ଶୌଚସନ୍ତୋଷତପଃସ୍ୱାଧ୍ୟାୟେଶ୍ୱରପ୍ରଣିଧାନାନି ନିୟମାଃ ।**

(ଯୋଗଦର୍ଶନ ୨ । ୩୨)

"ପବିତ୍ରତା, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱରପ୍ରଣିଧାନ—ଏହି ପାଞ୍ଚଗୋଟି ନିୟମ ଅଟନ୍ତି ।"

(କ) ପବିତ୍ରତା ଦୁଇ ପ୍ରକାରର (୧) ବାହ୍ୟ ଓ (୨) ଆଭ୍ୟନ୍ତରୀଣ। ଜଳ-ମାଟିରେ ଶରୀର, ସ୍ୱାର୍ଥ-ତ୍ୟାଗରେ ବ୍ୟବହାର ଏବଂ ଆଚରଣ ତଥା ନ୍ୟାୟୋପାର୍ଜିତ ଦ୍ରବ୍ୟରୁ ପ୍ରାପ୍ତ ସାତ୍ତ୍ୱିକ ପଦାର୍ଥଗୁଡ଼ିକୁ ପବିତ୍ରତାପୂର୍ବକ ସେବନରେ ଆହାର ପବିତ୍ର ହୁଏ। ଏହା ବାହ୍ୟ ପବିତ୍ରତା ଅଟେ। ଅହଂତା, ମମତା, ରାଗ, ଦ୍ୱେଷ, ଈର୍ଷ୍ୟା, ଭୟ ଓ କାମ-କ୍ରୋଧାଦି ଆନ୍ତରିକ ଦୁର୍ଗୁଣଗୁଡ଼ିକର ତ୍ୟାଗରେ ଅନ୍ତଃପବିତ୍ରତା ହୁଏ।

(ଖ) ସୁଖ-ଦୁଃଖ, ଲାଭ-ହାନି, ଯଶ-ଅପଯଶ, ସିଦ୍ଧି-ଅସିଦ୍ଧି, ଅନୁକୂଳତା-ପ୍ରତିକୂଳତା ଆଦି ପ୍ରାପ୍ତ ହେଲେ ସଦାସର୍ବଦା ସନ୍ତୁଷ୍ଟ ଓ ପ୍ରସନ୍ନଚିତ୍ତ ରହିବାର ନାମ ସନ୍ତୋଷ ଅଟେ।

(ଗ) ମନ ଓ ଇନ୍ଦ୍ରିୟଗୁଡ଼ିକର ସଂଯମରୂପ ଧର୍ମପାଳନ ପାଇଁ କଷ୍ଟ ସହିବା ଓ ତିତିକ୍ଷା, ବ୍ରତ ଏବଂ ଉପବାସାଦିର ନାମ ତପ ଅଟେ।

(ଘ) କଲ୍ୟାଣପ୍ରଦ ଶାସ୍ତ୍ରଗୁଡ଼ିକର ଅଧ୍ୟୟନ ଓ ଇଷ୍ଟଦେବଙ୍କ ନାମଜପ ତଥା ସ୍ତୋତ୍ରାଦି ପଠନ-ପାଠନ ଏବଂ ଗୁଣାନୁବାଦ କରିବାର ନାମ ସ୍ୱାଧ୍ୟାୟ ଅଟେ।

(ଙ) ଈଶ୍ୱରଙ୍କ ଭକ୍ତି ଅର୍ଥାତ୍ ସର୍ବସ୍ୱ ଈଶ୍ୱରଙ୍କୁ ଅର୍ପଣ କରି ଈଶ୍ୱରଙ୍କ ପାଇଁ ମନ-ବାଣୀ ଓ ଶରୀରଦ୍ୱାରା ଈଶ୍ୱରଙ୍କ ଅନୁକୂଳ ଚେଷ୍ଟା କରିବାର ନାମ ଈଶ୍ୱରପ୍ରଣିଧାନ ଅଟେ।

୯. **ଅହିଂସାପ୍ରତିଷ୍ଠାୟାଂ ତତ୍ସନ୍ନିଧୌ ବୈରତ୍ୟାଗଃ।** (ଯୋଗଦର୍ଶନ ୨।୩୫)

"ଅହିଂସାରୂପୀ ମହାବ୍ରତର ପୂର୍ଣ୍ଣପାଳନ ହେଲେ ସେହି ଯୋଗୀଙ୍କ ନିକଟରେ ଅନ୍ୟ (ସ୍ୱାଭାବିକ ବୈର ରଖୁଥିବା) ପ୍ରାଣୀ ମଧ୍ୟ ବୈର ଅର୍ଥାତ୍ ହିଂସାଦି ବୃତ୍ତି ତ୍ୟାଗ କରି ଦିଅନ୍ତି।"

୧୦. **ସତ୍ୟପ୍ରତିଷ୍ଠାୟାଂ କ୍ରିୟାଫଳାଶ୍ରୟତ୍ୱମ୍।** (ଯୋଗଦର୍ଶନ ୨।୩୬)

"ସତ୍ୟର ଉତ୍ତମ ପାଳନରେ ସେହି ସତ୍ୟବାଦୀର ବାଣୀ ସଫଳ ହୋଇଯାଏ, ଅର୍ଥାତ୍ ସେ ଯାହା କିଛି କହେ, ତାହା ସତ୍ୟ ହୋଇଯାଏ।"

୧୧. **ଅସ୍ତେୟପ୍ରତିଷ୍ଠାୟାଂ ସର୍ବରତ୍ନୋପସ୍ଥାନମ୍।** (ଯୋଗଦର୍ଶନ ୨।୩୭)

"ଚୋରି ବୃତ୍ତି ସର୍ବଥା ତ୍ୟାଗ ହୋଇଗଲେ ସମସ୍ତ ରତ୍ନଙ୍କ ଉପସ୍ଥିତି ହୋଇଯାଏ ଅର୍ଥାତ୍ ସମସ୍ତ ରତ୍ନ ତା'ର ଦୃଷ୍ଟିଗୋଚର ହୋଇ ଯାଆନ୍ତି ଓ ସବୁ ଲୋକ ତାକୁ ପୂର୍ଣ୍ଣରୂପେ ବିଶ୍ୱାସ କରିବାରେ ଲାଗି ଯାଆନ୍ତି।"

୧୨. **ବ୍ରହ୍ମଚର୍ଯ୍ୟପ୍ରତିଷ୍ଠାୟାଂ ବୀର୍ଯ୍ୟଲାଭଃ।** (ଯୋଗଦର୍ଶନ ୨।୩୮)

"ବ୍ରହ୍ମଚର୍ଯ୍ୟ ଭଲଭାବରେ ପାଳନ ହେଲେ ଶରୀର, ମନ ଓ ଇନ୍ଦ୍ରିୟମାନଙ୍କରେ ଅତ୍ୟନ୍ତ ସାମର୍ଥ୍ୟ ପ୍ରାପ୍ତି ହୋଇଯାଏ।"

୧୩. **ଅପରିଗ୍ରହସ୍ଥୈର୍ଯ୍ୟେ ଜନ୍ମକଥନ୍ତାସମ୍ବୋଧଃ।** (ଯୋଗଦର୍ଶନ ୨।୩୯)

"ଅପରିଗ୍ରହ ସ୍ଥିର ହୋଇଗଲେ ଅର୍ଥାତ୍ ବିଷୟ-ଭୋଗ ପଦାର୍ଥଗୁଡ଼ିକର ସଂଗ୍ରହ ଭଲଭାବେ ତ୍ୟାଗ ହେଲେ ବୈରାଗ୍ୟ ଓ ଉଦାସୀନତା ଆସି ମନ ସଂଯମିତ ହୁଏ ଓ ମନସଂଯମରେ ଭୂତ, ଭବିଷ୍ୟତ୍, ବର୍ତ୍ତମାନ ଜନ୍ମର ଓ ତା'ର କାରଣ ସମୂହର ଜ୍ଞାନ ହୋଇଯାଏ।"

୧୪. **ଶୌଚାତ୍ ସ୍ୱାଙ୍ଗଜୁଗୁପ୍ସା ପରୈରସଂସର୍ଗଃ।** (ଯୋଗଦର୍ଶନ ୨।୪୦)

"ପୂର୍ଣ୍ଣତଃ ବାହାରର ପବିତ୍ରତାଠାରୁ ନିଜ ଅଙ୍ଗଗୁଡ଼ିକରେ ଘୃଣା ତଥା ଅନ୍ୟ ଶରୀରମାନଙ୍କରେ ଅରୁଚି ହୋଇଯିବାଦ୍ୱାରା ସେଗୁଡ଼ିକର ସଂସର୍ଗ କରାଯାଏ ନାହିଁ।"

୧୫. **ସତ୍ତ୍ୱଶୁଦ୍ଧିସୌମନସ୍ୟୈକାଗ୍ର୍ୟେନ୍ଦ୍ରିୟଜୟାତ୍ମଦର୍ଶନଯୋଗ୍ୟତ୍ୱାନି ଚ।** (ଯୋଗଦର୍ଶନ ୨।୪୧)

"ଅନ୍ତଃକରଣର ପବିତ୍ରତାଦ୍ୱାରା ମନର ପ୍ରସନ୍ନତା ଓ ଏକାଗ୍ରତା, ଇନ୍ଦ୍ରିୟଙ୍କ ଉପରେ ବିଜୟ ଓ ଆତ୍ମାର ସାକ୍ଷାତ୍ ଦର୍ଶନ କରିବାର ଯୋଗ୍ୟତା ପ୍ରାପ୍ତ ହୋଇଯାଏ।"

୧୬. **ସନ୍ତୋଷାଦନୁତ୍ତମସୁଖଲାଭଃ।** (ଯୋଗଦର୍ଶନ ୨।୪୨)

"ସନ୍ତୋଷ ଦ୍ୱାରା ସର୍ବୋତ୍ତମ ସୁଖ ପ୍ରାପ୍ତି ହୁଏ।"

୧୭. **କାୟେନ୍ଦ୍ରିୟସିଦ୍ଧିରଶୁଦ୍ଧିକ୍ଷୟାତ୍ତପସଃ।** (ଯୋଗଦର୍ଶନ ୨।୪୩)

"ତପ ଅନୁଷ୍ଠାନଦ୍ୱାରା ଅଶୁଦ୍ଧି ନାଶ ହୋଇ ଅଣିମାଦି ଅଷ୍ଟସିଦ୍ଧିଗୁଡ଼ିକ ଓ ଦୂରରୁ ଦର୍ଶନ-ଶ୍ରବଣ ଆଦି ସିଦ୍ଧିଗୁଡ଼ିକ ପ୍ରାପ୍ତ ହୋଇ ଯାଆନ୍ତି।"

୧୮. **ସ୍ୱାଧ୍ୟାୟାଦିଷ୍ଟଦେବତାସମ୍ପ୍ରୟୋଗଃ।** (ଯୋଗଦର୍ଶନ ୨।୪୪)

"ସ୍ୱାଧ୍ୟାୟଦ୍ୱାରା ଇଷ୍ଟଦେବଙ୍କ ସାକ୍ଷାତ୍ ଦର୍ଶନ ହୋଇଯାଏ।"

୧୯. **ସମାଧିସିଦ୍ଧିରୀଶ୍ୱରପ୍ରଣିଧାନାତ୍।** (ଯୋଗଦର୍ଶନ ୨।୪୫)

"ଈଶ୍ୱରପ୍ରଣିଧାନଦ୍ୱାରା ସମାଧି ସିଦ୍ଧ ହୁଏ।"

୨୦. ଶରୀରର ସ୍ୱାଭାବିକ ଚେଷ୍ଟାକୁ ଶିଥିଳ କଲେ ଅଥବା ଅନନ୍ତରେ ମନ ତନ୍ମୟ ହେଲେ ଆସନର ସିଦ୍ଧି ହୁଏ। ଅତି କମ୍‌ରେ ଗୋଟିଏ ପ୍ରହର ଅର୍ଥାତ୍ ତିନି ଘଣ୍ଟା ପର୍ଯ୍ୟନ୍ତ ଗୋଟିଏ ଆସନରେ ସୁଖପୂର୍ବକ ସ୍ଥିର ଓ ଅଚଳ ଭାବେ ବସିବାକୁ ଆସନସିଦ୍ଧି କହନ୍ତି।

୨୧. ସେହି ଆସନଗୁଡ଼ିକର ସିଦ୍ଧିଦ୍ୱାରା (ଶରୀର ପୂର୍ଣ୍ଣରୂପେ ସଂଯତ ହୋଇଯିବା ଯୋଗୁଁ) ଶୀତୋଷ୍ଣାଦି ଦ୍ୱନ୍ଦ୍ୱ ବାଧା ଦିଅନ୍ତି ନାହିଁ।

୨୨. ପ୍ରାଣାୟାମର ବିଷୟ ଅନୁଭବୀ ଯୋଗୀମାନଙ୍କ ପାଖରେ ରହି ହିଁ ତାଙ୍କଠାରୁ ଶିଖିବା ଉଚିତ, ନୋଚେତ୍ ଏହାଦ୍ୱାରା ଶାରୀରିକ ହାନି ହୋଇପାରେ।

୨୩. ପ୍ରାଣାୟାମ ସିଦ୍ଧ ହୋଇଗଲେ ବିବେକଜ୍ଞାନକୁ ଆବୃତ କରୁଥିବା ପାପ ଓ ଅଜ୍ଞାନର କ୍ଷୟ ହୋଇଯାଏ।

୨୪. ଇନ୍ଦ୍ରିୟଗୁଡ଼ିକ ନିଜ ନିଜ ବିଷୟସଂଯୋଗରୁ ରହିତ ହୋଇ ଚିତ୍ତର ସ୍ୱରୂପରେ ଅବସ୍ଥିତ ହୋଇଯିବା ''ପ୍ରତ୍ୟାହାର'' ଅଟେ।

୨୫. ପ୍ରତ୍ୟାହାର ଦ୍ୱାରା ଇନ୍ଦ୍ରିୟଗୁଡ଼ିକ ଅତ୍ୟନ୍ତ ବଶୀଭୂତ ହୋଇଯାଆନ୍ତି ଅର୍ଥାତ୍ ଇନ୍ଦ୍ରିୟଙ୍କ ଉପରେ ପୂର୍ଣ୍ଣ ଅଧିକାର ପ୍ରାପ୍ତ ହୋଇଯାଏ।

୨୬. ଚିତ୍ତକୁ କୌଣସି ଏକ ଦେଶ-ବିଶେଷରେ ସ୍ଥିର କରିବାର ନାମ ଧାରଣା ଅଟେ।

୨୭. **ତତ୍ର ପ୍ରତ୍ୟୟୈକତାନତା ଧ୍ୟାନମ୍।** (ଯୋଗଦର୍ଶନ ୩।୨)

ସେହି ପୂର୍ବୋକ୍ତ ଧ୍ୟେୟ ବସ୍ତୁରେ ଚିତ୍ତବୃତ୍ତିର ଏକତାନତାର ନାମ ଧ୍ୟାନ ଅଟେ ଅର୍ଥାତ୍ ଚିତ୍ତବୃତ୍ତି ଗଙ୍ଗାର ପ୍ରବାହ ଭଳି ବା ତୈଳଧାରାପରି ଅବିଚ୍ଛିନ୍ନ ରୂପେ ନିରନ୍ତର ଧ୍ୟେୟ ବସ୍ତୁରେ ହିଁ ଅନବରତ ସଂଲଗ୍ନ ରହିବା 'ଧ୍ୟାନ' ନାମରେ କଥିତ।

୨୮. ଧ୍ୟାନ କରୁ କରୁ ଯେବେ ଯୋଗୀର ଚିତ୍ତ ଧ୍ୟେୟାକାରକୁ ପ୍ରାପ୍ତ ହୋଇଯାଏ ଓ ସେ ନିଜେ ମଧ୍ୟ ଧ୍ୟେୟରେ ତନ୍ମୟ ହୋଇଯାଏ, ଧ୍ୟେୟଠାରୁ ଭିନ୍ନ ନିଜେ ନିଜର ଜ୍ଞାନ ତାକୁ ନ ରହିବା ପରି ରହିଯାଏ, ସେହି ସ୍ଥିତିର ନାମ ସମାଧି ଅଟେ।

୨୯. ଧ୍ୟାନରେ ଧ୍ୟାତା, ଧ୍ୟାନ, ଧ୍ୟେୟ—ଏହି ତ୍ରିବିଧତା ରହେ। ସମାଧିରେ କେବଳ ଅର୍ଥମାତ୍ର ବସ୍ତୁ ଅର୍ଥାତ୍ ଧ୍ୟେୟ ବସ୍ତୁ ପରମାତ୍ମା ହିଁ ରହେ, ଅର୍ଥାତ୍ ଧ୍ୟାତା, ଧ୍ୟାନ, ଧ୍ୟେୟ—ତିନିଙ୍କର ଏକତା ହୋଇଯାଏ।



## ଭାରତୀୟ ସଂସ୍କୃତି

୧. ଏ ଯୁଗରେ ମଧ୍ୟ, ଯଦିଓ ଆମେ ଭାରତବାସୀ ଶତାବ୍ଦୀ ଶତାବ୍ଦୀ ଧରି ଦାସତାର ବନ୍ଧନରେ ବାନ୍ଧି ହୋଇଥିଲୁ, ଆମର ସଭ୍ୟତା ସଂସାର ପାଇଁ ଆଦରର ବିଷୟ ହୋଇରହିଛି।

୨. ଭାରତୀୟ ସଂସ୍କୃତି ମନୁଷ୍ୟମାତ୍ରକେ ନୁହେଁ, ପ୍ରାଣୀମାତ୍ରକେ—ଏପରି କି ବୃକ୍ଷ ଆଦି ସ୍ଥାବର ଜୀବଗୁଡ଼ିକରେ ମଧ୍ୟ ଆତ୍ମବୁଦ୍ଧି କରିବାର ଉପଦେଶ ଦିଏ। ତାହା ଆମକୁ ଏହା ଶିଖାଏ ଯେ, ପ୍ରତ୍ୟେକ ଜୀବକୁ ନିଜର ଆତ୍ମା ବୋଲି ଭାବ।

୩. ଭାରତୀୟ ସଂସ୍କୃତି ଆମକୁ କେବଳ ମନୁଷ୍ୟପାଇଁ ନୁହେଁ, ଅପିତୁ ଜୀବମାତ୍ରକେ ସମସ୍ତଙ୍କୁ ପ୍ରେମ କରିବାକୁ କହେ।

୪. ସମସ୍ତ ଲୋକେ ବଞ୍ଚନ୍ତୁ, ସମସ୍ତେ ସୁଖୀ ହୁଅନ୍ତୁ। ସମସ୍ତେ ସର୍ବବିଧ ଉନ୍ନତି କରନ୍ତୁ, ଭାରତୀୟ ସଂସ୍କୃତିରେ ଆବହମାନ କାଳରୁ ଏହି ସିଦ୍ଧାନ୍ତ-ବାକ୍ୟ ହିଁ ରହି ଆସିଛି।

୫. ଭାରତୀୟ ସଂସ୍କୃତିର ଆଧାର ତା'ର ଆଧ୍ୟାତ୍ମିକତା ଅଟେ।

୬. ଅଧ୍ୟାତ୍ମବିଦ୍ୟା ଓ ପରଲୋକ ବିଦ୍ୟାରେ ଏହି ଦେଶ ସହ ସମକକ୍ଷତା ଆଜି ପର୍ଯ୍ୟନ୍ତ କୌଣସି ଦେଶ କରିପାରି ନାହିଁ ଓ ଭବିଷ୍ୟତ୍‌ରେ ମଧ୍ୟ କେହି କରି ପାରିବା ସନ୍ଦେହ।

୭. ଆଧୁନିକ ସଂସ୍କୃତିର ଉଦ୍ଦେଶ୍ୟ ଅଟେ—ଖାଇବା-ପିଇବା, ଆନନ୍ଦ କରିବା, ଶରୀରକୁ ଅଧିକରୁ ଅଧିକ ଆରାମ ଦେବା, ଅଧିକରୁ ଅଧିକ ଭୋଗ ଭୋଗିବା, ଯେକୌଣସି ପ୍ରକାରେ ହେଉ, ବର୍ତ୍ତମାନର ଜୀବନକୁ ସୁଖୀ କରିବା। ଏହା ଆଗକୁ ତା'ର ଦୃଷ୍ଟି ଯାଉ ନାହିଁ। ଏହାର ବିପରୀତ ପ୍ରାଚୀନ ସଂସ୍କୃତିର ଲକ୍ଷ୍ୟ ଥିଲା–ଯଥାଶୀଘ୍ର ପରମାତ୍ମାଙ୍କୁ ପ୍ରାପ୍ତି କରିବା, ଚିରଶାନ୍ତି ଏବଂ ଶାଶ୍ୱତ ସୁଖ ପ୍ରାପ୍ତ କରିବା।

୮. ବେଦ ହିଁ ଈଶ୍ୱରୀୟ ଜ୍ଞାନର ଅନାଦି ସ୍ରୋତ ଅଟେ। ସେଇଥିରୁ ହିଁ ସମସ୍ତ ଜ୍ଞାନ ସୃଷ୍ଟି ହୋଇଛି। ଧର୍ମର ଆଧାର ହିଁ ବେଦ ଅଟେ। ଆମ କର୍ତ୍ତବ୍ୟାକର୍ତ୍ତବ୍ୟର ନିର୍ଣ୍ଣାୟକ ବେଦ ହିଁ ଅଟେ। ସମସ୍ତ ଶାସ୍ତ୍ର ବେଦର ଆଧାରରେ ହିଁ ପରିଗ୍ରଳିତ। ଶ୍ରୁତି-ସ୍ମୃତି-ପୁରାଣାଦି ଶାସ୍ତ୍ରମାନଙ୍କର ପ୍ରାମାଣିକତା ବେଦମୂଳକ ହିଁ ଅଟେ। ଯେଉଁଠି ଶ୍ରୁତି ଓ ସ୍ମୃତିର ପରସ୍ପର ବିରୋଧ ଦୃଷ୍ଟିଗୋଚର ହୁଏ, ସେଠାରେ ଶ୍ରୁତିକୁ ହିଁ ବଳବାନ୍ ସ୍ୱୀକାର କରାଯାଏ। ତାତ୍ପର୍ଯ୍ୟ ଏହା ଅଟେ ଯେ, ବେଦ ଆମର ସର୍ବସ୍ୱ, ବେଦ ଆମର ପ୍ରାଣ, ବେଦ ଉପରେ ଆମ ଜୀବନ ଅବଲମ୍ବିତ, ବେଦ ହିଁ ଆମର ଆଧାରସ୍ତମ୍ଭ ଅଟେ। ବେଦ ସମୂହର ଯେତେ ବି ମହିମା ଗାନ କରାଯାଉ, ତାହା ଅଳ୍ପ ହିଁ ହେବ।

୯. ଯଦି ଆମେ ସଂସାରରେ ବଞ୍ଚି ରହିବାକୁ ଚାହୁଁ, ତା'ହେଲେ ଆମକୁ ନିଜର ପ୍ରାଚୀନ ସଂସ୍କୃତି ରକ୍ଷା ପାଇଁ କଟିବଦ୍ଧ ହୋଇଯିବା ଉଚିତ। ଭଗବାନ ତ ଆମର ଏବଂ ଆମ ସଂସ୍କୃତିର ସହାୟକ ଅଟନ୍ତି। ଅନ୍ୟଥା ଏହା ଉପରେ ଏପରି ସବୁ ପ୍ରବଳ ଆକ୍ରମଣ ହୋଇଛି ଯାହାର ଆଘାତରେ ତାହା କେବେଠାରୁ ନଷ୍ଟ ହୋଇ ସାରନ୍ତାଣି।

୧୦. ଆମ ପୂର୍ବପୁରୁଷ ଋଷିମାନେ ତପସ୍ୟା, ସଂଯମ, ସଦ୍‌ଗୁଣ, ସଦାଚାର, ଭଗବଦ୍‌ଭକ୍ତି ଏବଂ ଯୋଗବଳରେ ଯେଉଁ ସର୍ବଲୋକବିସ୍ମାପକ ତତ୍ତ୍ୱଜ୍ଞାନ ଅର୍ଜନ କଲେ, ତାହା ତୁଳନାରେ ପାଶ୍ଚାତ୍ୟ ଜଗତ୍‌ର ଉଚ୍ଚାତିଉଚ୍ଚ ଭୌତିକ ଜ୍ଞାନସମୁଦ୍ର ଗୋଟିଏ ବିନ୍ଦୁ ସମାନ ମଧ୍ୟ ନୁହେଁ।

୧୧. ଆଧୁନିକ ସଂସ୍କୃତିରେ ଭୋଗର ପ୍ରାଧାନ୍ୟ ଥିବାବେଳେ ପ୍ରାଚୀନ ସଂସ୍କୃତିରେ ତ୍ୟାଗ, ବୈରାଗ୍ୟ ଏବଂ ତପର ପ୍ରାଧାନ୍ୟ ରହିଛି।

୧୨. ପ୍ରାଚୀନ ସଂସ୍କୃତିରେ ଦୈବୀ ସମ୍ପଦର ପ୍ରାଧାନ୍ୟ ଅଛି ଓ ବର୍ତ୍ତମାନ ସଂସ୍କୃତିରେ ଆସୁରୀ ସମ୍ପଦର ପ୍ରାଧାନ୍ୟ ଅଛି। ଏହା ହିଁ ଉଭୟ ସଭ୍ୟତାରେ ଅନ୍ତର ଅଟେ।

୧୩. ଈଶ୍ୱର ଭକ୍ତି ହିଁ କଲ୍ୟାଣର ମୁଖ୍ୟ ସାଧନ ଅଟେ। ମନୁଷ୍ୟ ଜନ୍ମ ପାଇ ଜୀବନରେ ଏହାରି ଅଭ୍ୟାସ କରିବା ଉଚିତ। ଏହା ହିଁ ଭାରତୀୟ ସଂସ୍କୃତିର ମୂଳମନ୍ତ୍ର ଅଟେ।



## ବ୍ରାହ୍ମଣତ୍ୱର ରକ୍ଷା ପରମ ଆବଶ୍ୟକ

୧. ବ୍ରାହ୍ମଣ ଧର୍ମଗ୍ରନ୍ଥଗୁଡ଼ିକର ରକ୍ଷା, ପ୍ରଚାର ଓ ବିସ୍ତାର କରୁଛି ଓ ତାହାରି ଅନୁସାରେ ତିନି ବର୍ଣ୍ଣ ଦ୍ୱାରା କର୍ମ କରାଇବାର ବ୍ୟବସ୍ଥା କରୁଛି।

୨. ବ୍ରାହ୍ମଣତ୍ୱର ରକ୍ଷା ବ୍ରାହ୍ମଣଦ୍ୱାରା ହିଁ ହେବ। କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ନିଜ ସଦାଚାର, ସଦ୍‌ଗୁଣ, ଭକ୍ତି ତଥା ଜ୍ଞାନ ଆଦିର ପ୍ରଭାବରେ ଭଗବାନଙ୍କୁ ପ୍ରାପ୍ତ କରି ପାରନ୍ତି, କିନ୍ତୁ ସେମାନେ ବ୍ରାହ୍ମଣ ହୋଇ ପାରିବେ ନାହିଁ।

୩. ଯିଏ ଜନ୍ମତଃ ବ୍ରାହ୍ମଣ, ସେ ହିଁ ବ୍ରାହ୍ମଣ ଅଟେ ଓ ତା'ର ହିଁ ବେଦାଦି ପଢ଼ିବାର ଅଧିକାର ଅଛି।

୪. ଶାସ୍ତ୍ରସମୂହ ଓ ପ୍ରାଚୀନ ଗ୍ରନ୍ଥଗୁଡ଼ିକୁ ଦେଖିଲେ ଏ କଥା ସିଦ୍ଧ ହୁଏ

ଯେ—ବ୍ରାହ୍ମଣମାନେ ବହୁତ କିଛି ତ୍ୟାଗ କରିଛନ୍ତି। ରାଜ୍ୟ କ୍ଷତ୍ରିୟମାନଙ୍କ ପାଇଁ ଛାଡ଼ିଦେଲେ। ଧନର ଉତ୍ପତ୍ତି ସ୍ଥାନ, କୃଷି, ଗୋରକ୍ଷା, ବାଣିଜ୍ୟ ଆଦିକୁ ଓ ଧନଭଣ୍ଡାରକୁ ବୈଶ୍ୟଙ୍କ ହାତରେ ଦେଇ ଦେଲେ। ଶାରୀରିକ ଶ୍ରମ ଦ୍ୱାରା ଅର୍ଥୋପାର୍ଜନ କରିବା କାର୍ଯ୍ୟ ଶୂଦ୍ରଙ୍କ ଭାଗରେ ଆସିଗଲା। ବ୍ରାହ୍ମଣମାନେ ନିଜ ପାଇଁ ରଖିଲେ କେବଳ ସନ୍ତୋଷପୂର୍ଣ୍ଣ ତ୍ୟାଗମୟ ଜୀବନ।

୫. ବ୍ରାହ୍ମଣ ଋତ, ଅମୃତ, ମୃତ, ପ୍ରମୃତ ଅଥବା ସତ୍ୟାନୃତରେ ନିଜର ଜୀବନ ବିତାଇବେ, କିନ୍ତୁ ଶ୍ୱବୃତ୍ତି ଅର୍ଥାତ୍ ସେବାବୃତ୍ତି ଗ୍ରହଣ କରିବେ ନାହିଁ। ଉଞ୍ଛ ଓ ଶିଳକୁ ଋତ ଜାଣିବା ଉଚିତ (ଖେତରେ ପଡ଼ିଥିବା ଶସ୍ୟଦାନା ସାଉଁଟିବାକୁ ଉଞ୍ଛ କହନ୍ତି ଓ ଧାନ ଶିଁସା ସାଉଁଟିବାକୁ ଶିଳ କହନ୍ତି)। ବିନା ମାଗିବାରେ ମିଳୁଥିବା ଅନ୍ନ ଅମୃତ ଅଟେ। ମାଗିଥିବା ଭିକ୍ଷା ମୃତ ନାମରେ କଥିତ ଓ କୃଷକୁ ପ୍ରମୃତ କହନ୍ତି। ବାଣିଜ୍ୟକୁ ସତ୍ୟାନୃତ କହନ୍ତି। ତାହାଦ୍ୱାରା ମଧ୍ୟ ଜୀବିକା ନିର୍ବାହ କରାଯାଇପାରେ।

୬. ବ୍ରାହ୍ମଣ ପାଇଁ ଉଞ୍ଛ ଓ ଶିଳ—ଏ ଦୁଇଟି ବୃତ୍ତି ସବୁଠୁଁ ଉତ୍ତମ ରୂପେ ପରିଗଣିତ ହୁଏ।

୭. ବେଦ ପଢ଼ାଇବା, ଯଜ୍ଞ କରାଇ ଦକ୍ଷିଣା ଗ୍ରହଣ କରିବା ତଥା ବିନା ମାଗିବାରେ ମିଳୁଥିବା ଦାନ ନେବା ବହୁତ ଉତ୍ତମ ଅମୃତ ତୁଲ୍ୟ କୁହାଯାଇଛି ଏବଂ ଭିକ୍ଷାବୃତ୍ତି ମଧ୍ୟ ସେମାନଙ୍କ ପାଇଁ ଧର୍ମସଙ୍ଗତ ଅଟେ।

୮. ଆପଦ କାଳରେ କ୍ଷତ୍ରିୟ ବା ବୈଶ୍ୟ ବୃତ୍ତି ଦ୍ୱାରା ବ୍ରାହ୍ମଣ ନିଜର ଜୀବିକା ନିର୍ବାହ କରିପାରିବେ ଓ ତାହା ନିନ୍ଦନୀୟ ନୁହେଁ। ଧର୍ମଶାସ୍ତ୍ରରେ ଏହି ଆଦେଶ ରହିଛି।

୯. ବ୍ରାହ୍ମଣ-ଜୀବନର ଉଦ୍ଦେଶ୍ୟ ଓ ଜୀବନର ସ୍ଥିତି କେତେ କଠୋର, ତପୋମୟୀ ଓ ତ୍ୟାଗପୂର୍ଣ୍ଣ!

୧୦. ଯେଉଁ ମାନ-ସମ୍ମାନକୁ ସମସ୍ତେ ଗ୍ରହନ୍ତି, ବ୍ରାହ୍ମଣ ସେହି ସମ୍ମାନକୁ ଭୟ କରେ ଓ ଅପମାନକୁ ସ୍ୱାଗତ କରେ।

୧୧. ବ୍ରାହ୍ମଣତ୍ୱର ରକ୍ଷା ପାଇଁ—ଯାହା ବର୍ଣ୍ଣାଶ୍ରମ ଧର୍ମର ପ୍ରାଣ ଅଟେ—ସ୍ୱୟଂ ଭଗବାନ ଧରାଧାମରେ ଅବତାର ନେଇଥାନ୍ତି।

୧୨. ଜ୍ଞାନସ୍ୱରୂପ, ସମସ୍ତଙ୍କ ଅନ୍ତର୍ଯ୍ୟାମୀ ଅନନ୍ତ ହରିଙ୍କର ମଧ୍ୟ ତୃପ୍ତି ବ୍ରାହ୍ମଣମୁଖରେ ହୁଏ।

୧୩. ବ୍ରାହ୍ମଣଙ୍କୁ ପୂଜା କଲେ ଆୟୁ, କୀର୍ତ୍ତି, ଯଶ ଓ ବଳ ବଢ଼େ। ତେଣୁ ସବୁ ଲୋକେ ଓ ଲୋକେଶ୍ୱରଗଣ ବ୍ରାହ୍ମଣଙ୍କୁ ପୂଜା କରନ୍ତି।

୧୪. ଧର୍ମ, ଅର୍ଥ, କାମ—ଏହି ତ୍ରିବର୍ଗକୁ ଓ ମୋକ୍ଷକୁ ପ୍ରାପ୍ତ କରିବାରେ, ଯଶ, ଲକ୍ଷ୍ମୀପ୍ରାପ୍ତି ଓ ରୋଗଶାନ୍ତିରେ ଏବଂ ଦେବତା ତଥା ପିତୃଗଣଙ୍କ ପୂଜାରେ ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରିବା ଉଚିତ।

୧୫. ଯେଉଁ ଘରେ ଭୋଜନ କରିବା ପାଇଁ ଆସିଥିବା ବ୍ରାହ୍ମଣମାନଙ୍କ ପାଦ ଧୋଇବାରେ କାଦୁଅ ହୋଇଯାଏ ନାହିଁ, ଯେଉଁ ଘରମାନଙ୍କରେ ବେଦ-ଶାସ୍ତ୍ରଗୁଡ଼ିକର ଧ୍ୱନି ପ୍ରତିଧ୍ୱନିତ ହୁଏ ନାହିଁ, ଯେଉଁଠାରେ ହୋମସମ୍ବନ୍ଧୀ ସ୍ୱାହା ଓ ଶ୍ରାଦ୍ଧସମ୍ବନ୍ଧୀ ସ୍ୱଧାର ଧ୍ୱନି ହୁଏ ନାହିଁ, ସେହି ଘରଗୁଡ଼ିକ ଶ୍ମଶାନ ସମାନ।

୧୬. ବ୍ରାହ୍ମଣ ସଦ୍‌ଗୁଣ ଓ ସଦାଚାର ସମ୍ପନ୍ନ ହେବା ସହିତ ଯଦି ବିଦ୍ୱାନ୍ ହୋଇଥିବେ, ତେବେ ତ ବହୁତ ଉତ୍ତମ; ବିଦ୍ୱାନ୍ ନ ହେଲେ ମଧ୍ୟ ସେ ସର୍ବଥା ପୂଜନୀୟ ଅଟନ୍ତି।

୧୭. ଯଦି ବ୍ରାହ୍ମଣତ୍ୱ ଜାଗ୍ରତ ହୋଇଗଲା ଓ ସେ ପୁଣି ତାର ସ୍ଥାନ ପ୍ରାପ୍ତ କରି ନେଲା, ତେବେ ବ୍ରାହ୍ମଣ ପୁଣି ପୂର୍ବ ଭଳି ଜଗଦ୍‌ଗୁରୁ ପଦରେ ପ୍ରତିଷ୍ଠିତ ହୋଇପାରେ।



# ଆଦର୍ଶ ରାଜା

୧. ଯେ ପ୍ରକାର ମୁଖ  ଖାଦ୍ୟର ରସକୁ ସମସ୍ତ ଅଙ୍ଗରେ ପହଞ୍ଚାଇ ସେଗୁଡ଼ିକୁ ପୁଷ୍ଟ କରିବା ପାଇଁ ଖାଏ, କେବଳ ନିଜ ପାଇଁ ଖାଏ ନାହିଁ, ସେହିପରି ରାଜା ପ୍ରଜାଙ୍କ କାମରେ ଉପଯୋଗ କରିବା ପାଇଁ ସେମାନଙ୍କ ଠାରୁ କର ଅସୁଲ କରିବା ଉଚିତ, ନିଜର ବିଳାସବ୍ୟସନ ଓ ଭୋଗ ପାଇଁ ନୁହେଁ।

୨. ରାଜାର ସବୁକିଛି ପ୍ରଜାପାଇଁ ଉଦ୍ଦିଷ୍ଟ ଅଟେ।

୩. ଯେପରି ସନ୍ତାନର ଶିଷ୍ଟ ହେବା ଓ ଦୁଷ୍ଟ ହେବାର ସମସ୍ତ ଦାୟିତ୍ୱ ମାତା-ପିତାଙ୍କ ଉପରେ ଥାଏ, ସେହିପରି ପ୍ରଜାର ଭଲ-ମନ୍ଦର ସମସ୍ତ ଭାର ରାଜା ଉପରେ ହିଁ ରହିଥାଏ।

୪. ଯଦି ରାଜା ଧର୍ମାତ୍ମା, ସଦାଚାରୀ ଏବଂ ନ୍ୟାୟଶୀଳ ହୁଏ, ତା'ହେଲେ ପ୍ରଜାଠାରେ ମଧ୍ୟ ଏ ସମସ୍ତ ଗୁଣ କ୍ରମଶଃ ଆସିଯାଏ।

୫. ଯଦି ରାଜା ଦୁରାଗ୍ରହୀ, ଅନ୍ୟାୟୀ ଏବଂ ପ୍ରଜାପୀଡ଼କ ହୁଏ, ତେବେ ପ୍ରଜାଠାରେ ଉଚ୍ଛୃଙ୍ଖଳତା, ଅନାଚାର, ପାପାଚାର ଏବଂ ପ୍ରତିହିଂସାର ଭାବ ବ୍ୟାପିଯାଏ ଓ ଏପ୍ରକାର ରାଜା ଓ ପ୍ରଜା ଉଭୟ ହିଁ ଅଧୋଗତିକୁ ପ୍ରାପ୍ତ ହୁଅନ୍ତି।

୬. ରାଜା ପ୍ରଜାକୁ ଧର୍ମମାର୍ଗରେ ପରିଚାଳିତ କରାଇବା ପାଇଁ ସ୍ୱୟଂ ତତ୍ପରତା ସହ ତ୍ୟାଗପୂର୍ବକ ଧର୍ମାଚରଣ କରିବା ଆବଶ୍ୟକ।

୭. ରାଜାମାନେ ବିଶେଷ ଚରିତ୍ରବାନ୍ ଏବଂ ଧର୍ମାତ୍ମା ହେବା ଉଚିତ, ଯଦ୍ଦ୍ୱାରା ପ୍ରଜାଜନ ମଧ୍ୟ ତାଙ୍କୁ ଅନୁକରଣ କରି ଚରିତ୍ରବାନ୍ ଏବଂ ଧର୍ମାତ୍ମା ହୋଇ ପାରିବେ।

୮. ଆଦର୍ଶ ତ୍ୟାଗଦ୍ୱାରା ହିଁ ପ୍ରାଚୀନକାଳର ରାଜାମାନେ ଜଗତ୍‌ରେ ଧର୍ମସ୍ଥାପନ କରିବାରେ ସମର୍ଥ ହେଉଥିଲେ। ଏହି କାରଣରୁ ତାଙ୍କ ପ୍ରଜା ତାଙ୍କରି ଭଳି ଧର୍ମରେ ରତ ରହୁଥିଲେ ଓ ଜଗତ୍‌ରେ ସର୍ବତ୍ର ସୁଖ ଶାନ୍ତିର ସାମ୍ରାଜ୍ୟ ଥିଲା।

୯. ରାମରାଜ୍ୟରେ ସମସ୍ତ ନର-ନାରୀ ଉଦାର, ସମସ୍ତେ ପରୋପକାରୀ ଓ ସମସ୍ତେ ବ୍ରାହ୍ମଣଙ୍କ ଚରଣ ସେବକ ଥିଲେ। ସମସ୍ତ ପୁରୁଷ ଏକପତ୍ନୀବ୍ରତୀ ଥିଲେ। ନାରୀମାନେ ମଧ୍ୟ ମନ, ବଚନ ଓ କର୍ମରେ ପତିର ହିତ ସାଧନକାରିଣୀ ଥିଲେ। ବଣମାନଙ୍କରେ ବୃକ୍ଷ ସଦା ଫୁଲ ଓ ଫଳରେ ଭରପୂର ଥିଲେ। ହାତୀ ଓ ସିଂହ ଶତ୍ରୁତା ଭୁଲି ଏକା ସାଙ୍ଗରେ ରହୁଥିଲେ। ପକ୍ଷୀ ଓ ପଶୁ ସମସ୍ତେ ସ୍ୱାଭାବିକ ଶତ୍ରୁତା ଭୁଲି ପରସ୍ପର ମଧ୍ୟରେ ପ୍ରେମ ବଢ଼ାଇ ଦେଇଥିଲେ। ଶୀତଳ, ମନ୍ଦ, ସୁଗନ୍ଧିତ ପବନ ପ୍ରବାହିତ ହେଉଥିଲା। ବୃକ୍ଷଲତାଙ୍କୁ ମାଗିଲେ ମଧୁବର୍ଷା କରିଦେଉଥିଲେ, ଗାଈମାନେ ମନଇଚ୍ଛା (ପର୍ଯ୍ୟାପ୍ତ) ଦୁଧ ଦେଉଥିଲେ ଓ ପୃଥିବୀ ସଦା ଶସ୍ୟରେ ଭରି ରହୁଥିଲା। ସମୁଦ୍ରମାନେ ନିଜ ଲହଡ଼ିଦ୍ୱାରା କୂଳରେ ରତ୍ନ ଅଜାଡ଼ି ଦେଉଥିଲେ। ସେହିଗୁଡ଼ିକୁ ମନୁଷ୍ୟମାନେ ଗୋଟେଇ ନେଉଥିଲେ। ସୂର୍ଯ୍ୟ ଯେତିକି ଆବଶ୍ୟକ ସେତିକି ଉତ୍ତାପ ଦେଉଥିଲେ ଓ ମେଘକୁ ମାଗିଲେ ଯେବେ ଯେଉଁଠି ଯେତେ ଦରକାର ସେତିକି ହିଁ ଜଳ ଦେଉଥିଲା। ତ୍ରେତାଯୁଗରେ ସତ୍ୟଯୁଗପରି ସ୍ଥିତି ହୋଇଯାଇଥିଲା।



# ସମାଜ-ସଂସ୍କାର

୧. ଖାଦ୍ୟ-ପେୟର ପବିତ୍ରତା ଓ ସଂଯମ ଆର୍ଯ୍ୟ ଜାତି ଲୋକଙ୍କ ଜୀବନର ପ୍ରଧାନ ଅଙ୍ଗ ଅଟେ ।

୨. ଅନ୍ୟାୟରେ ଅର୍ଜିତ ପଇସାରୁ ଓ ଅପବିତ୍ର ତାମସୀ ବସ୍ତୁଗୁଡ଼ିକ ଦ୍ୱାରା ପ୍ରସ୍ତୁତ ହୋଇଥିବା, ଅପବିତ୍ର ହାତରେ ପ୍ରସ୍ତୁତ ଓ ପରଷା ହେଉଥିବା, ଅପବିତ୍ର ସ୍ଥାନରେ ରଖାଯାଇଥିବା, ହିଂସା ଓ ମାଦକତାଯୁକ୍ତ, ବିଶେଷ ଖର୍ଚ୍ଚଯୁକ୍ତ, ଅସ୍ୱାସ୍ଥ୍ୟକର ପଦାର୍ଥଯୁକ୍ତ, ସଡ଼ିଯାଇଥିବା, ବ୍ୟସନରୂପୀ, ଅପବିତ୍ର ଓ ଉଚ୍ଛିଷ୍ଟ ଖାଦ୍ୟପଦାର୍ଥ ଧର୍ମ, ବୁଦ୍ଧି, ଧନ, ହିନ୍ଦୁ-ସଭ୍ୟତା ଓ ସ୍ୱାସ୍ଥ୍ୟ ସମସ୍ତଙ୍କ ପାଇଁ ହାନିକର ହୋଇଥାଏ । ଏହି ବିଷୟ ଉପରେ ସମସ୍ତଙ୍କୁ ବିଶେଷରୂପେ ଧ୍ୟାନ ଦେବା ଉଚିତ ।

୩. ବେଶଭୂଷା ସାଦା, କମ୍ ଦରର, ସୁରୁଚି-ଉତ୍ପନ୍ନକାରୀ, ପବିତ୍ର ଓ ସଂଯମ ବୃଦ୍ଧିକାରକ ହେବା ଆବଶ୍ୟକ ।

୪. ମିଲରେ ପ୍ରସ୍ତୁତ ବସ୍ତ୍ର ନ ପିନ୍ଧିବା ଉଚିତ । ବିଦେଶୀ ବସ୍ତ୍ରର ବ୍ୟବହାର ଦେଶର ଦାରିଦ୍ର୍ୟର ପ୍ରଧାନ କାରଣ ଅଟେ ।

୫. ରେଶମୀ ବସ୍ତ୍ର ଜୀବିତ ପୋକଙ୍କୁ ଗରମ ପାଣିରେ ଫୁଟାଇ ସେଗୁଡ଼ିକ ଠାରୁ ବାହାରୁ ଥିବା ସୂତାରେ ତିଆରି ହୁଏ । ତାହା ମଧ୍ୟ ଅତି ଅପବିତ୍ର ଓ ହିଂସାଯୁକ୍ତ କାର୍ଯ୍ୟ ଅଟେ ।

୬. ବସ୍ତ୍ରଗୁଡ଼ିକ ମଧ୍ୟରେ ସବୁଠୁଁ ଉତ୍ତମ ହେଲା ହାତରେ କଟାଯାଇଥିବା ସୂତା ନିର୍ମିତ ଖଦି (ଖଦଡ଼) । କିନ୍ତୁ ଏଥିରେ ମଧ୍ୟ ଆଡମ୍ବର କରିବା ଉଚିତ ନୁହେଁ ।

୭. ଖଦଡ଼ ଆମ ସଂଯମ ଓ ସ୍ୱଳ୍ପ ବ୍ୟୟ ପାଇଁ ଉଦ୍ଦିଷ୍ଟ—ଆଡ଼ମ୍ବର ଓ ବୃଥା ଖର୍ଚ୍ଚ ପାଇଁ ନୁହେଁ । ଯଦି ଖଦଡ଼ରେ ଆଡ଼ମ୍ବର ଓ ବୃଥା ଖର୍ଚ୍ଚ ଆସିଯାଏ, ତେବେ ଏଥିରେ ଅପବିତ୍ରତା ଆସିଯିବ ।

୮. ସୌନ୍ଦର୍ଯ୍ୟ-ଭାବନାରେ କାମ-ଭାବନା ଛପି ରହିଥାଏ । ଯେଉଁ ସ୍ତ୍ରୀ-ପୁରୁଷ ନିଜକୁ ସୁନ୍ଦର ଦେଖାଇ ହେବାକୁ ଚାହାଁନ୍ତି—ସେମାନେ କାମ-ଭାବନା ବିସ୍ତାର କରି ବଳ, ବୁଦ୍ଧି ଓ ବୀର୍ଯ୍ୟ ନାଶଦ୍ୱାରା ନିଜର ଓ ସମାଜର ବଡ଼ ଅପକାର କରନ୍ତି ।

୯. ବିବାହ ଅବସରରେ ଦୂର ଦେଶରୁ ସଂପର୍କୀୟମାନଙ୍କର ଯେଉଁ ଯିବା-ଆସିବା ହୁଏ, ତାହା କମ୍ କରିବା ଉଚିତ, କାରଣ ଏଥିରେ ମଧ୍ୟ ବିଶେଷ ଭାବେ ଧନ ବ୍ୟୟ ହୋଇଥାଏ ତଥା ଲୋକଙ୍କୁ ଯିବା-ଆସିବାରେ ମଧ୍ୟ ବହୁତ ହଇରାଣ ହେବାକୁ ହୁଏ ।

୧୦. ଏବେ ଏପରି ଧର୍ମଭୀରୁ, ସାହସୀ ସଜ୍ଜନଙ୍କର ଆବଶ୍ୟକତା ଅଛି, ଯେଉଁମାନେ ଲୋଭକୁ ଛାଡ଼ି ନିଜ ପୁଅମାନଙ୍କ ବିବାହରେ ଯୌତୁକ ନେବାକୁ ମନା କରିଦେବେ ବା ଅତି କମ୍ ନେବେ । ପୁଅପକ୍ଷର ସ୍ୱାର୍ଥତ୍ୟାଗ ଦ୍ୱାରା ହିଁ ଏହି ପାପ ବନ୍ଦ ହେବ ।

୧୧. ସ୍ତ୍ରୀମାନଙ୍କ ସହ ପୁରୁଷମାନେ ଓ ପୁରୁଷଙ୍କ ସହ ସ୍ତ୍ରୀମାନେ କୌଣସି ପ୍ରକାରର ସମ୍ବନ୍ଧ ନ ରଖିବା ଉଚିତ ।

୧୨. ଏପରି କେଉଁ ମନୁଷ୍ୟ ଅଛି, ଯେ ସ୍ତ୍ରୀମାନଙ୍କ ସାଙ୍ଗରେ ରହି ନିଜକୁ ପବିତ୍ର ରଖି ପାରେ ।

୧୩. ସ୍ତ୍ରୀମାନଙ୍କ ସଂସର୍ଗ କଥା କ'ଣ କହିବା, ଶାସ୍ତ୍ରଗୁଡ଼ିକ ସ୍ତ୍ରୀମାନଙ୍କ ସଂସର୍ଗକାରୀଙ୍କ ସଂସର୍ଗକୁ ମଧ୍ୟ ଅତ୍ୟନ୍ତ ତ୍ୟାଜ୍ୟ କହିଛନ୍ତି—

**ସ୍ତ୍ରୀଣାଂ ସ୍ତ୍ରୀସଂଗିନାଂ ସଂଗଂ ତ୍ୟକ୍ତ୍ୱା ଦୂରତ ଆତ୍ମବାନ୍ ।**

(ଶ୍ରୀମଭାଗବତ ୧୧ । ୧୪ । ୨୯)

୧୪. ବଡ଼ ବଡ଼ ଋଷି-ମୁନି ମଧ୍ୟ ସ୍ତ୍ରୀମାନଙ୍କ ସାଙ୍ଗରେ ରହି ନିଜକୁ ରକ୍ଷା କରି ପାରିଲେ ନାହିଁ, ପୁଣି କାମବାସନାର କିଙ୍କର ହୋଇ ଯାଇଥିବା ଆମେସବୁ ମନୁଷ୍ୟରୂପୀ କୀଟଙ୍କ କଥା କ'ଣ କହିବା?

୧୫. ମାତା, ଭଉଣୀ, ଝିଅ ଆଦିଙ୍କ ସହ ମଧ୍ୟ ଏକାନ୍ତରେ ବସିବାକୁ ମନାକରା ଯାଇଛି । ଯଦ୍ୟପି ଏ ସମସ୍ତଙ୍କ ସହ ଆମର ସ୍ୱାଭାବିକ ହିଁ ପରମ ପବିତ୍ର ସମ୍ବନ୍ଧ ଥାଏ, ତଥାପି ଇନ୍ଦ୍ରିୟଗୁଡ଼ିକ ବଡ଼ ବଳବାନ୍ ଓ ସେମାନେ ବଡ଼ ବଡ଼ ମନସ୍ୱୀ ତଥା ବିଗ୍ରହବନ୍ତ ପୁରୁଷଙ୍କ ମନକୁ ମଧ୍ୟ ଆକର୍ଷିତ କରି ନିଅନ୍ତି—

**ମାତ୍ରା ସ୍ୱସ୍ରା ଦୁହିତ୍ରା ବା ନ ବିବିକ୍ତାସନୋ ଭବେତ୍ ।**
**ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି ॥**

(ମନୁ. ୨ । ୨୧୫)

୧୬. ଯେଉଁ ପୁରୁଷ କଥା-କୀର୍ତ୍ତନ ଆଦି ନାଁରେ, ଭକ୍ତି ଓ ଧର୍ମର

ଆଢୁଆଳରେ ପାପ କରେ, ସେ ତ ଅତ୍ୟନ୍ତ ନୀଚ। ତା'ର ଦର୍ଶନକାରୀକୁ ପାପ ଲାଗେ।

୧୭. ଯେଉଁ ଲୋକେ ଏହିପରି କଥା-କୀର୍ତ୍ତନ ବାହାନାରେ ପରସ୍ତ୍ରୀମାନଙ୍କୁ ନିଜ ଘରକୁ ଡାକି ପାପ କରନ୍ତି, ତାଙ୍କ ବିଷୟରେ ଅବା କ'ଣ କୁହାଯିବ? ସେ ମୂଢ଼ମାନେ ନିଜ ପାଇଁ ନିଜ ହାତରେ ନରକର ଦ୍ୱାର ଖୋଲି ଦିଅନ୍ତି।

୧୮. ଯେଉଁ ଲୋକେ ମହନ୍ତ ହୋଇ ସ୍ତ୍ରୀମାନଙ୍କ ଦ୍ୱାରା ପାଦ ପୂଜା କରାନ୍ତି, ତାଙ୍କୁ ନିଜ ଶରୀର ଧୁଆଜଳ, ପାଦୋଦକ ଅଥବା ଉଚ୍ଛିଷ୍ଟ ଦିଅନ୍ତି ତଥା ନିଜର ଫଟୋ ପୂଜା ପାଇଁ ଦିଅନ୍ତି ଅଥବା ନିଜେ କୃଷ୍ଣ ସାଜି ସ୍ତ୍ରୀମାନଙ୍କ ସହ ରାସଲୀଳା କରନ୍ତି, ସେମାନେ ଘୋର ପାପ କରନ୍ତି ଓ ନିଜର ତଥା ନିଜ ପୂଜାକାରୀଙ୍କର ଘୋର କ୍ଷତି କରନ୍ତି। ଏଥିପାଇଁ ସେମାନଙ୍କ ଚରଣୋଦକ ଆଦି ନେବା, ତାଙ୍କ ଶରୀରର ଅଥବା ଫଟୋର ପୂଜା କରିବା ଅତ୍ୟନ୍ତ ନିଷିଦ୍ଧ ଅଟେ।

୧୯. "ଈଶ୍ୱର ନାହାନ୍ତି; ଈଶ୍ୱରଙ୍କୁ ମାନିବା ଛଳନା ଅଟେ; ଈଶ୍ୱରଭକ୍ତି ମୂର୍ଖତା ଅଟେ; ଶାସ୍ତ୍ର ଏବଂ ପୁରାଣଗୁଡ଼ିକର ରଚୟିତା ଦମ୍ଭ ଓ ଛଳନା ବା କପଟର ପ୍ରଚାରକ ଥିଲେ; ମୁକ୍ତି ବା ଭଗବତ୍‌ପ୍ରାପ୍ତି କେବଳ କଳ୍ପନା ଅଟେ; ଖାଦ୍ୟପେୟରେ ଛୁଆଁ-ଅଛୁଆଁ ଓ କୌଣସି ନିୟମର ଆବଶ୍ୟକତା ନାହିଁ; ବର୍ଣ୍ଣ-ଭେଦ ଜନ୍ମ ଓ କର୍ମଦ୍ୱାରା ନୁହେଁ, କେବଳ କର୍ମଦ୍ୱାରା ନିର୍ଦ୍ଧାରିତ; ଶାସ୍ତ୍ର ନ ମାନିଲେ କୌଣସି ହାନି ନାହିଁ; ପୂର୍ବପୁରୁଷ ଆଜିକାଲିକା ପରି ଉନ୍ନତ ନ ଥିଲେ; ଜଗତ୍‌ର କ୍ରମଶଃ ଉନ୍ନତି ହେଉଅଛି; ଅବତାର ଉନ୍ନତ ବିଚାରର ମହାତ୍ମାମାନଙ୍କର ହିଁ ନାମାନ୍ତର ଅଟେ; ମାତା-ପିତାଙ୍କ ଆଜ୍ଞା ମାନିବା ଆବଶ୍ୟକ ନୁହେଁ; ସ୍ତ୍ରୀର ପତିତ୍ୟାଗ ଓ ନବୀନ ପତି-ନିର୍ବାଚନ କରିବାର ଅଧିକାର ହେବା ଉଚିତ; ସ୍ତ୍ରୀ-ପୁରୁଷଙ୍କର ସବୁ କ୍ଷେତ୍ରରେ ସମାନ କାର୍ଯ୍ୟ ହେବା ଉଚିତ; ପରଲୋକ ଓ ପୁନର୍ଜନ୍ମ କିଏ ଦେଖିଛି? ପାପ-ପୁଣ୍ୟ ଓ ନରକ-ସ୍ୱର୍ଗାଦି କେବଳ କଳ୍ପନା ଅଟେ; ଋଷି-ମୁନିଗଣ ସ୍ୱାର୍ଥୀ ଥିଲେ; ବ୍ରାହ୍ମଣମାନେ ନିଜର ସ୍ୱାର୍ଥ ସାଧନ ପାଇଁ ହିଁ ଗ୍ରନ୍ଥଗୁଡ଼ିକୁ ରଚନା କରିଥିଲେ; ପୁରୁଷ ଜାତି ସ୍ତ୍ରୀମାନଙ୍କୁ ପଦଦଳିତ କରି ରଖିବା ପାଇଁ ପାତିବ୍ରତ୍ୟ ଓ ସତୀତ୍ୱର ମହିମା ଗାନ କରିଥିଲେ; ଦେବତାବାଦ କଳ୍ପନା ଅଟେ; ଉଚ୍ଚବର୍ଣ୍ଣର ଲୋକେ ନୀଚ ବର୍ଣ୍ଣଙ୍କୁ ସବୁବେଳେ ଅତ୍ୟାଚାରିତ କଲେ; ବିବାହ ପୂର୍ବରୁ ପୁଅ-ଝିଅଙ୍କର ଅଶ୍ଳୀଳ ଚାଲି-ଚଳଣି ବ୍ୟଭିଚାରର ନୁହେଁ;

ସମସ୍ତଙ୍କୁ ନିଜ ମନ ଅନୁସାରେ ସବୁ କିଛି କରିବାର ଅଧିକାର ଅଛି''—ଏଭଳି ନାନାପ୍ରକାର କଥା ଆଜିକାଲି ଏପରି ଢଙ୍ଗରେ ଖେଳେଇ ଦିଆଯାଉ ଅଛି ଯେ ସରଳ ନର-ନାରୀ ଈଶ୍ୱରଙ୍କ ପ୍ରତି ଅବିଶ୍ୱାସୀ ହୋଇ ଧର୍ମ, କର୍ମ ଓ ସଦାଚାରକୁ ତ୍ୟାଗ କରିଦେଉଛନ୍ତି। ଏ ଦିଗକୁ ସମସ୍ତ ବିଚାରଶୀଳ ପୁରୁଷ ଧ୍ୟାନ ଦେବା ଉଚିତ।



## ବ୍ୟାପାର-ସଂସ୍କାର

୧. ବସ୍ତୁଗୁଡ଼ିକୁ କିଣିବା ଓ ବିକିବାରେ ମାପ-ଓଜନ ଓ ଗଣିବା ଆଦିରେ କମ୍ ଦେବା ଅଥବା ଅଧିକ ନେବା ଏବଂ ବସ୍ତୁକୁ ବଦଳାଇ ବା ଗୋଟିଏ ଜିନିଷରେ ଅନ୍ୟ ଖରାପ ଜିନିଷ ମିଶାଇ ଦେଇଦେବା ଅଥବା ଭଲ ନେଇଯିବା ତଥା ଲାଭ, ମାଲଗୋଦାମ ଭଡ଼ା ଓ ଦଲାଲ ପାଉଣା ମିଶାଇ ତା'ଠାରୁ ଅଧିକ ଦାମ ନେବା ବା କମ୍ ଦେବା ତଥା ମିଛ, କପଟ, ଚୋରି ଓ ବଳପ୍ରୟୋଗରେ ଅଥବା ଅନ୍ୟ କୌଣସି ପ୍ରକାରେ ଅନ୍ୟର ପ୍ରାପ୍ୟକୁ ହରଣ କରିନେବା ଇତ୍ୟାଦି ଦୋଷ ନ ଥାଇ ଯେଉଁ ସତ୍ୟପୂର୍ବକ ପବିତ୍ର ବସ୍ତୁଗୁଡ଼ିକର ବ୍ୟାପାର ହୁଏ, ତା'ର ନାମ ସତ୍ୟ ବ୍ୟବହାର ଅଟେ।

୨. ଦଲାଲ ଲଗାଇ କୌଣସି ପ୍ରକାରେ ମହାଜନର ଗୋଟିଏ ପଇସା ଅଧିକ ନେବା ବଡ଼ ପାପ ଅଟେ। ଏଥିରୁ ଦୂରେଇ ରହିବା ଉଚିତ। କମିଶନୀ କାମରେ ମଧ୍ୟ ବିଶ୍ୱାସଘାତକତା କରି କାମ କରିବା ଉଚିତ ନୁହେଁ। ଦଲାଲ ମଧ୍ୟ ପ୍ରକୃତ ବଜାରଦର କହି କିଣିବା ଓ ବିକିବା ବ୍ୟକ୍ତିକୁ ଭ୍ରମରୁ ରକ୍ଷା କରି ନିଜର ପ୍ରାପ୍ୟ ଓ ପରିଶ୍ରମର ପଇସା ନେବା ଉଚିତ।

୩. ଅନ୍ୟର ପ୍ରାପ୍ୟ ଉପରେ ଆଶା ନ ରଖି ମିଥ୍ୟା-କପଟକୁ ଛାଡ଼ି ନ୍ୟାୟପୂର୍ବକ ପବିତ୍ର ବସ୍ତୁଗୁଡ଼ିକର କ୍ରୟ-ବିକ୍ରୟ କରିବା ସତ୍ ଓ ପବିତ୍ର ବ୍ୟାପାର ଅଟେ।

୪. ଆମେ ଯାହା ସହିତ ବ୍ୟବହାର ବା ବ୍ୟାପାର କରିବା, ତାହା ସହିତ ଆମକୁ ସେହିପରି ଆଚରଣ ବା ବ୍ୟବହାର କରିବା ଉଚିତ, ଯେପରି ଆମେ ନିଜ ସହ ଆଶା କରୁଛୁ। ଆମେ ଯେପରି ନିଜର ହିତ ଓ ସ୍ୱାର୍ଥ ପ୍ରତି ଖିଆଲ ରଖିଛୁ, ସେତିକି ତା'ର ହିତ ଓ ସ୍ୱାର୍ଥ ପ୍ରତି ଖିଆଲ ରଖିବା ଉଚିତ।

୫. ଯିଏ ନିଜର ସ୍ୱାର୍ଥ ଛାଡ଼ି ପରର ହିତ ଚିନ୍ତା କରେ, ଅନ୍ୟର ସ୍ୱାର୍ଥ

ପାଇଁ ନିଜ ସ୍ୱାର୍ଥକୁ ତ୍ୟାଗ କରିଦିଏ, ସେ ସବୁଠୁଁ ଉତ୍ତମ ଅଟେ। ବେପାରୀ ହେଲେ ମଧ୍ୟ ଏପରି ପୁରୁଷ ପ୍ରକୃତରେ ସାଧୁ ହିଁ ଅଟେ।

୬. ଯିଏ ପ୍ରତିଜ୍ଞାପତ୍ର (ସଟ୍ଟା)କୁ କ୍ଷତିକାରକ ଜାଣି ମଧ୍ୟ ତାକୁ ତ୍ୟାଗ କରେ ନାହିଁ, ସେ ନିଜେ ତ ନିଜର ହିଁ ହିଂସାର ଉପାୟ କରିଥାଏ, ତାହା ଅନ୍ୟର ମଧ୍ୟ ଯଥେଷ୍ଟ କ୍ଷତି କରିଥାଏ। ଯେଉଁ ଲୋକେ ବଜାରର ମାଲକୁ ଏକା ହାତେଇ ନେବା ପ୍ରଭୃତି କରି ପଦାର୍ଥର ଦାମ ଖୁବ୍ ଅଧିକ ବଢ଼େଇ ଦିଅନ୍ତି, ସେମାନେ ବଡ଼ ପାପ କରନ୍ତି।

୭. ଲାଖ, ରେଶମ ଓ ଚମଡ଼ାର ବେପାର ଓ ବ୍ୟବହାର ପ୍ରତ୍ୟେକ ଧର୍ମପ୍ରେମୀ ସଜ୍ଜନ ତ୍ୟାଗ କରିଦେବା ଉଚିତ।

୮. କେବଳ ସୁଧର ହିଁ ବେପାର ନ କରିବା ଉଚିତ, କିନ୍ତୁ ଯଦି କେହି ଏପରି କରି ନ ପାରେ, ତେବେ ଲୋଭବଶତଃ ଗରିବଙ୍କୁ ଲୁଟିବା ଅବଶ୍ୟ ଛାଡ଼ିଦେଉ।

୯. ଯଥାସାଧ୍ୟ ବିଦେଶୀ ବସ୍ତ୍ର ଓ ଅନ୍ୟାନ୍ୟ ବିଦେଶୀ ବସ୍ତୁଗୁଡ଼ିକର ବେପାର ତ୍ୟାଗ କରିଦେବା ଉଚିତ।

୧୦. ବେପାରରେ ନିୟମ କରିନିଅ ଯେ 'ମୁଁ ମିଛ ବା କପଟର ବ୍ୟବହାର କରିବି ନାହିଁ।' ଖାଇବାକୁ ନ ମିଳୁ ପଛେ କୌଣସି ଚିନ୍ତା କର ନାହିଁ। ମୋର ବିଶ୍ୱାସ ଯେ ସତ୍ୟତାପୂର୍ଣ୍ଣ ବାଣିଜ୍ୟ ଯେପରି ଚାଲେ, ସେପରି ମିଛଦ୍ୱାରା କେବେ ଚାଲି ପାରିବ ନାହିଁ।

୧୧. ମିଥ୍ୟା, କପଟଦ୍ୱାରା ବ୍ୟାପାରରେ ଆର୍ଥିକ ଲାଭ ହେବା ତ ଦୂରର କଥା, ଓଲଟା ହାନି ହିଁ ହୁଏ। ଧର୍ମର ହାନି ତ ସୁସ୍ପଷ୍ଟ ଅଟେ।

୧୨. ପରମାତ୍ମାଙ୍କ ଉପରେ ବିଶ୍ୱାସ କରି ବ୍ୟାପାରରେ ମିଛ, କପଟକୁ ସର୍ବଥା ତ୍ୟାଗ କରିବା ଉଚିତ। କୌଣସି ଜିନିଷରେ ଅନ୍ୟ କୌଣସି ଜିନିଷ ମିଶାଇବା ଉଚିତ ନୁହେଁ। ଓଜନ ଅଧିକ କରିବା ପାଇଁ ତୁଳା, ରେଶମ, ଶସ୍ୟ ଆଦିରେ ପାଣି ମିଶାଇବା ବା ଓଦାସ୍ଥାନରେ ରଖିବା ଉଚିତ ନୁହେଁ। ଖାଦ୍ୟପଦାର୍ଥଗୁଡ଼ିକରେ ଅନ୍ୟ କିଛି ମିଶ୍ରଣ କରି ଲୋକଙ୍କ ସ୍ୱାସ୍ଥ୍ୟ ଓ ଧର୍ମକୁ କେବେ ଖରାପ କରିବା ଉଚିତ ନୁହେଁ। ଓଜନ, ମାପ ଓ ଗଣତିରେ କମ୍ ଦେବା ଓ ଅଧିକ ନେବା ଉଚିତ ନୁହେଁ। ନମୁନା ଅନୁସାରେ ହିଁ ପଦାର୍ଥର ନେବା-ଦେବା କରିବା ଅତ୍ୟନ୍ତ ଆବଶ୍ୟକ।

୧୩. ଯେଉଁମାନେ ଅନ୍ୟାୟରେ ଧନ ରୋଜଗାର କରି ତା'ମଧ୍ୟରୁ

ଅଳ୍ପ କିଛି ଦାନ ଦେଇ ଧର୍ମାତ୍ମା ହେବାକୁ ଓ କଥିତ ହେବାକୁ ଚାହାନ୍ତି, ସେମାନେ ବଡ଼ ଭ୍ରମରେ ଅଛନ୍ତି। ଭଗବାନଙ୍କ ନିକଟରେ ଏତେ ଅନ୍ଧକାର ନାହିଁ, ସେଠାରେ ସମସ୍ତଙ୍କର ପ୍ରକୃତ ପରୀକ୍ଷା ହୋଇଥାଏ।

୧୪. ପାପଦ୍ୱାରା ଧନ ଉତ୍ପନ୍ନ ହେବାର ଧାରଣା ବଡ଼ ଭ୍ରମମୂଳକ ଅଟେ। ତାହାଦ୍ୱାରା ଧନ ତ ଉତ୍ପନ୍ନ ହୁଏ ନାହିଁ, ବରଂ ଆତ୍ମାର ପତନ ଅବଶ୍ୟ ହୋଇଥାଏ। ଲୋକ-ପରଲୋକ ଉଭୟ ନଷ୍ଟ ହୋଇଯାଏ।

୧୫. ପାପର ପଇସା ରହେ ନାହିଁ। ଇଆଡୁ ଆସେ, ସିଆଡ଼େ ବାହାରିଯାଏ। ଲାଭ ଯେତିକି ହେବାର ଥାଏ, ସେତିକି ହିଁ ହୋଇଥାଏ।

୧୬. ଯଦି ଏହି ସୂତ୍ରଟି ମନେ ରଖାଯାଏ ଯେ "ଲୋଭ ହିଁ ପାପର ମୂଳ ଅଟେ" ତା'ହେଲେ ବ୍ୟବହାରରେ ପାପ ହୋଇପାରେ ନାହିଁ।

୧୭. କାମ, ଲୋଭ ଆଦିର ଅଭାବ ହୋଇଗଲେ ବ୍ୟାପାର ସ୍ୱତଃ ହିଁ ପବିତ୍ର ହୋଇଯାଏ।

୧୮. ଲୋଭ ବା ଧନ ଇଚ୍ଛା ନ କରି କର୍ତ୍ତବ୍ୟବୁଦ୍ଧିରେ ବ୍ୟାପାର କରିବା ଉଚିତ। କର୍ତ୍ତବ୍ୟବୁଦ୍ଧିରେ କରାଯାଇଥିବା କାମରେ ପାପ ରହେ ନାହିଁ। ପାପ ହେବାର କାରଣ ଲୋଭ ଓ ଆସକ୍ତି।

୧୯. କର୍ତ୍ତବ୍ୟବୁଦ୍ଧିରେ କରାଯାଉଥିବା ବ୍ୟାପାରରେ ଅନ୍ତଃକରଣର ଶୁଦ୍ଧି ଓ ଈଶ୍ୱର ପ୍ରସନ୍ନତା ହୁଏ। ଶୁଦ୍ଧ ଅନ୍ତଃକରଣରେ ତତ୍ତ୍ୱଜ୍ଞାନର ସ୍ଫୁରଣ ହୁଏ ଏବଂ ଭଗବତ୍ କୃପା ହେଲେ ତାହାଦ୍ୱାରା ପରମ ପଦ ସୁଗମତାରେ ପ୍ରାପ୍ତ ହୋଇପାରେ। ପରମ ପଦ-ପ୍ରାପ୍ତିର ଇଚ୍ଛା ନ ରଖି କେବଳ ଭଗବତ୍-ପ୍ରୀତ୍ୟର୍ଥ ବ୍ୟାପାର କରୁଥିବା ଲୋକ ଆହୁରି ଉତ୍ତମ ତଥା ପ୍ରଶଂସନୀୟ ଅଟେ।

୨୦. ସମସ୍ତ କଥା ଉଦ୍ଦେଶ୍ୟ ଉପରେ ନିର୍ଭର କରେ। ମାଲିକର ପୁଞ୍ଜି ନ ବୁଡୁ ଓ ଆସୁଥିବା ଲୋକଙ୍କର ପ୍ରତ୍ୟେକ ପ୍ରକାରର ସେବା ହେଉଥାଉ— ଏହି ଭାବରେ ସମସ୍ତଙ୍କୁ ସମସ୍ତଙ୍କ ସାଙ୍ଗରେ ବ୍ୟବହାର କରିବା ଉଚିତ।

୨୧. କୁଶଳ ବେପାରୀ ସଚ୍ଚୋଟ ହୋଇଥାଏ, ତା'ର ଅନ୍ୟକୁ ଠକିବାର ଉଦ୍ଦେଶ୍ୟ ନ ଥାଏ। ସତ୍ୟର ଆଧାରରେ ବ୍ୟାପାର କରି ସେ ସମସ୍ତଙ୍କର ବିଶ୍ୱାସପାତ୍ର ହୋଇଯାଏ। ଯେତେ ବିଶ୍ୱାସ ବଢୁଥାଏ, ସେତିକି ତାର ଝଂଝଟ କମୁଥାଏ ଓ ବ୍ୟାପାରରେ ଦିନକୁ ଦିନ ଉନ୍ନତି ହେଉଥାଏ।

୨୨. ପ୍ରାଣୀମାତ୍ରକୁ ପରମାତ୍ମାଙ୍କ ସ୍ୱରୂପ ଓ ପୂଜନୀୟ ଭାବି ମିଥ୍ୟା,

କପଟ, ଛଳନାକୁ ତ୍ୟାଗ କରି ସ୍ୱାର୍ଥବୁଦ୍ଧିରହିତ ହୋଇ ନିଜ ନିଜ କାର୍ଯ୍ୟ ଦ୍ୱାରା ସର୍ବବ୍ୟାପୀ ପରମାତ୍ମାଙ୍କ ପୂଜା କରିବା ଉଚିତ ।

୨୩. ନିଜ ନିଜ କର୍ମଗୁଡ଼ିକଦ୍ୱାରା ଗ୍ରାହକମାନଙ୍କୁ ସରଳତାର ସହିତ ନିଃସ୍ୱାର୍ଥବୁଦ୍ଧିରେ ସୁଖ ଦେବା ହିଁ ସ୍ୱକର୍ମଦ୍ୱାରା ପରମାତ୍ମାଙ୍କ ପୂଜା କରିବା ଅଟେ ଓ ଏହି ପୂଜାରୂପ ଭକ୍ତିରେ ପରମାତ୍ମାଙ୍କ ପ୍ରାପ୍ତି ହୋଇପାରେ, ଏଥିରେ କୌଣସି ସନ୍ଦେହ ନାହିଁ ।

୨୪. ନାଟକରେ ନାଟକର ମାଲିକ ଯଦି ନିଜେ ଜଣେ ସାଧାରଣ ଚପରାସୀର ଅଭିନୟ କରେ, ତା'ହେଲେ ସେ କ'ଣ ଛୋଟ ହୋଇଯାଏ? ଯାହା ଦାୟିତ୍ୱରେ ଯେଉଁ କାମ ଅଛି, ସେ ତାହା କରିବା ଉଚିତ । ଯାହାର କାର୍ଯ୍ୟ ସୁନ୍ଦର ଓ ସ୍ୱାର୍ଥରହିତ ହେବ, ତାରି ଉପରେ ପ୍ରଭୁ ପ୍ରସନ୍ନ ହେବେ ।

୨୫. ପରମପିତା ପରମାତ୍ମାଙ୍କର ସବୁ ସନ୍ତାନ ଭିନ୍ନ-ଭିନ୍ନ କାର୍ଯ୍ୟ କରନ୍ତି, ଯିଏ ତାଙ୍କର ସେବକ ହୋଇ ନିଃସ୍ୱାର୍ଥଭାବେ ତାଙ୍କ ଆଜ୍ଞା ଅନୁସାରେ କାର୍ଯ୍ୟ କରେ, ସେ ହିଁ ତାଙ୍କର ଅଧିକ ପ୍ରିୟ ଅଟେ ।

୨୬. ଛୋଟ-ବଡ଼ ସମସ୍ତଙ୍କୁ ଦିନେ ସବୁ କିଛି ଅନ୍ୟକୁ ସମର୍ପି ଦେଇ ମାଲିକର ଘରକୁ ଯିବାକୁ ହେବ । ଯିଏ ମାଲିକର କାମ ସଚ୍ଚୋଟତାର ସହ ଚଳାଇଯାଏ, ସେ ସୁଖ ଓ ପଦୋନ୍ନତି ପାଏ, ମାଲିକର ମନ ହୋଇଗଲେ ମାଲିକର ସମାନ ଅଂଶିଦାର ମଧ୍ୟ ହୋଇ ପାରେ ଏବଂ ଯିଏ ବିଶ୍ୱାସଘାତକତା କରି ମାଲିକର ଜିନିଷକୁ ନିଜର ଭାବି କର୍ତ୍ତବ୍ୟ ଭୁଲି ଛଳ-କପଟ କରେ, ସେ ଦଣ୍ଡ ଓ ଅବନତିର ପାତ୍ର ହୁଏ ।

୨୭. କୌଣସି କାମ ଛୋଟ ନୁହେଁ କି ବଡ଼ ନୁହଁ ।

୨୮. ସଂସାରର ସବୁ ଧନ ପରମାତ୍ମାଙ୍କର ଅଟେ । ଆମେ ସମସ୍ତେ ତାଙ୍କରି ପ୍ରଜା ଅଟୁଁ, ପରମାତ୍ମା ଆମ ଯୋଗ୍ୟତାନୁସାରେ ସମସ୍ତ ଭଣ୍ଡାରର ଦାୟିତ୍ୱ ଆମକୁ ଦେଇ ତା'ର ରକ୍ଷା ଓ ଯଥାଯୋଗ୍ୟ ବ୍ୟବହାରପାଇଁ ଆଜ୍ଞା ଦେଇଛନ୍ତି ।

୨୯. ବୈଶ୍ୟ ନିଜର ବର୍ଣ୍ଣୋଚିତ କର୍ମ-ବ୍ୟାପାର ଦ୍ୱାରା ହିଁ ଭଗବାନଙ୍କୁ ପୂଜି ପରମ ସିଦ୍ଧି ପାଇ ପାରନ୍ତି ।

୩୦. ପତିବ୍ରତା ନାରୀ ପରି ସମସ୍ତ କାର୍ଯ୍ୟ ଈଶ୍ୱରପ୍ରୀତ୍ୟର୍ଥ, ଈଶ୍ୱରଙ୍କ ଆଜ୍ଞାନୁସାରେ କର ।

୩୧. ଅସତ୍ୟ, କପଟ ଓ ଲୋଭ ଆଦି ତ୍ୟାଗ କରି ଯଦି ଭଗବତ୍-ପ୍ରୀତ୍ୟର୍ଥ ନ୍ୟାୟଯୁକ୍ତ ବ୍ୟାପାର କରାଯାଏ, ତେବେ ତାହା ମୁକ୍ତିର ସାଧନ ହୋଇଯାଇପାରେ। ମୁକ୍ତିର ପ୍ରଧାନ ହେତୁ ଭାବ ଅଟେ, କ୍ରିୟା ନୁହେଁ।

୩୨. ଯଦି କୌଣସି ମନୁଷ୍ୟ ସ୍ୱାର୍ଥ, ମାନ-ବଡ଼ିମାକୁ ସର୍ବଥା ତ୍ୟାଗ କରି ଲୋକସେବା କାର୍ଯ୍ୟରେ ଲାଗିଯାଏ, ତେବେ ଦୈବଯୋଗେ କୌଣସି ଭୁଲ ହୋଇଗଲେ ମଧ୍ୟ ତାକୁ କେହି ଦୋଷ ଦିଅନ୍ତି ନାହିଁ ଓ ତାକୁ ଦୋଷ ଲାଗେ ନାହିଁ। ଏହା ସ୍ୱାର୍ଥତ୍ୟାଗ ଓ ନିଷ୍କାମଭାବର ମହତ୍ତ୍ୱ ଅଟେ।

୩୩. ଦୋକାନୀକୁ ଏହି ବୁଦ୍ଧି ରଖିବା ଉଚିତ ଯେ ତା' ଦୋକାନକୁ ଯେଉଁ ଗ୍ରାହକ ଆସେ, ସେ ସାକ୍ଷାତ୍ ପରମାତ୍ମାଙ୍କ ସ୍ୱରୂପ ଅଟେ।

୩୪. ''ଗ୍ରାହକରୂପୀ ପରମାତ୍ମା ବାରମ୍ବାର ଆସନ୍ତି ନାହିଁ, ଏହାଙ୍କର ଯାହା କିଛି ବି ସେବା ମୋ ଦ୍ୱାରା ହୋଇପାରେ, ତାହା ଅଳ୍ପ ଅଟେ,'' ଏହା ଭାବି ଗ୍ରାହକ ସହିତ ପୂର୍ଣ୍ଣମାତ୍ରାରେ ତା'ର ହିତ ଦେଖି ପୂର୍ଣ୍ଣ ସତ୍ୟତାର ବ୍ୟବହାର କରିବା ଉଚିତ।

୩୫. ମନରେ ସବୁବେଳେ ଏହି ଭାବନା ରଖିବା ଉଚିତ ଯେ ଏହି ରୂପରେ ମୋ ଆଗରେ ପ୍ରତ୍ୟକ୍ଷ ଥିବା ପରମାତ୍ମାଙ୍କ ସେବା କିପରି ମୁଁ ଅଧିକ କରିପାରିବି। ଏହି ଭାବନାରେ ବେପାର ଆପେ ଆପେ ସୁଧୁରି ପାରେ ଓ ଏହାଦ୍ୱାରା ଜଣେ ବ୍ୟାପାରୀ ଦୋକାନରେ ବସି ରହି, କିଛି ମଧ୍ୟ ବେପାର କରି ସରଳତାର ସହ ପରମାତ୍ମାଙ୍କ ସେବା କରି ତାଙ୍କୁ ପ୍ରସନ୍ନ କରିପାରେ। ବ୍ୟାପାରୀ, ଦଲାଲ, ଓକିଲ, ଡାକ୍ତର, ଜମିଦାର, କୃଷକ ସମସ୍ତେ ନିଜ ନିଜ ଜୀବିକାଦ୍ୱାରା ଏହି ବୁଦ୍ଧିରେ ପରମାତ୍ମାଙ୍କ ସେବା କରି ପାରନ୍ତି। ଯେବେ ଏହି ବିବେକ ଜାଗ୍ରତ ହୋଇଯାଏ ଯେ ସାରା ସଂସାର ଈଶ୍ୱରଙ୍କ ଠାରୁ ଉତ୍ପନ୍ନ ଓ ସେହି ଈଶ୍ୱର ହିଁ ସମସ୍ତ ସଂସାରରେ ବିଦ୍ୟମାନ, ତେବେ ପୁଣି ବ୍ୟାପାର କରି ମଧ୍ୟ ଭଗବତ୍ ବିସ୍ମୃତି କେବେ ହୋଇପାରେ ନାହିଁ।

୩୬. ସବୁଠୁଁ ପ୍ରଥମ ଓ ଅନ୍ତିମ କଥା ହେଲା ଯେ ମିଥ୍ୟା, କପଟ, ଛଳନା ତ୍ୟାଗ କରି ଅନ୍ୟର କୌଣସି ପ୍ରକାରର କ୍ଷତି ନ କରାଇ ନ୍ୟାୟ ଓ ସତ୍ୟତାର ସହ ବ୍ୟାପାର କରିବା ଉଚିତ।



# ମୃତ୍ୟୁକାଳୀନ ଉପଗ୍ରର

ହିନ୍ଦୁ-ଜାତିରେ ମନୁଷ୍ୟ ମରିବା ସମୟରେ ଘରର ଲୋକେ ତା'ର ପାରଲୌକିକ ମଙ୍ଗଳ କାମନାରେ କିଛି ଏପରି କାମ କରନ୍ତି, ଯାହାଦ୍ୱାରା ମନୁଷ୍ୟକୁ ବଡ଼ କଷ୍ଟ ହୋଇଥାଏ। ଅତଏବ ନିମ୍ନଲିଖିତ କଥାଗୁଡ଼ିକ ଉପରେ ବିଶେଷ ଧ୍ୟାନ ଦେବା ଉଚିତ–

୧. ଯଦି ରୋଗୀ ଦୁଇ-ତିନି ମହଲା ଉପରେ ଥିବ, ତେବେ ଏପରି ଅବସ୍ଥାରେ ତାକୁ ତଳକୁ ଆଣିବାର ଆବଶ୍ୟକତା ନାହିଁ।

ଖଟରେ ଶୋଇଥିବ ତ ସେହିଠି ହିଁ ରହିବାକୁ ଦେବା ଉଚିତ।

ଯଦି ଖଟ ଉପରେ ମରିବାରେ କିଛି ଭ୍ରମ ଧାରଣା ଥିବ ଏବଂ ତଳକୁ ଓହ୍ଲାଇ ଶୁଆଇଦେବା ଆବଶ୍ୟକ ହୁଏ, ତେବେ ରୋଗୀର ଲକ୍ଷଣ ଦେଖି ଚିକିତ୍ସକ ଓ ବରିଷ୍ଠ ଅନୁଭବୀ ଲୋକଙ୍କ ପରାମର୍ଶ ଓ ଅନୁମାନ ଆଧାରରେ ମୃତ୍ୟୁର ଦୁଇ-ଗ୍ରରି ଦିନ ପୂର୍ବରୁ ହିଁ ତାକୁ ଖଟର ତଳକୁ ଓହ୍ଲାଇ, ଯେଉଁଠି ତଳେ ଫାଙ୍କା (ଫମ୍ପା) ନ ଥିବ, ଏପରି ସ୍ଥାନରେ ଶୁଆଇ ଦେବା ଉଚିତ। ଯଦି କୌଣସି କାରଣବଶତଃ ଏହା ସମ୍ଭବ ନ ହୋଇପାରେ, ତେବେ ସେ ଯେଉଁ କୋଠରୀରେ ଥିବ, ସେହିଠାରେ ଭୂଇଁ ଉପରେ ଶୁଆଇ ଦିଅ। ରୋଗୀ ଯଦି ଭଲ ହୋଇଯାଏ, ତେବେ ପୁନର୍ବାର ଖଟ ଉପରେ ଶୁଆଇବାରେ କୌଣସି ଆପତ୍ତି ନାହିଁ। ଯଦି ଅନୁମାନ ପୂର୍ବରୁ ତା'ର ମୃତ୍ୟୁ ହୋଇଗଲା ତା'ହେଲେ ବି କୌଣସି ଆପତ୍ତି ନାହିଁ। ବରଂ ମୃତ୍ୟୁକାଳରେ ତଳକୁ ଓହ୍ଲାଇ ଶୁଆଇବାରେ ଯେଉଁ କଷ୍ଟ ହୋଇଥାଏ, ସେଥିରୁ ସେ ରକ୍ଷା ପାଇଗଲା।

ଯେଉଁ ସ୍ଥାନରେ ତାକୁ ଶୁଆଇବାକୁ ହେବ, ସେହି ସ୍ଥାନକୁ ଗଙ୍ଗାଜଳରେ ଧୋଇ ତା'ଉପରେ ପବିତ୍ର ମାଟି ଓ ଗୋବରରେ ଲିପି ଦିଅ।

୨. ତାପରେ ତା' ଉପରେ ହଳଦିଆ ସୋରିଷ ଓ କଳା ତିଳ ବିଞ୍ଚି ଦିଅ, କୁଶ ବିଛାଇ ଦିଅ। ପୁଣି ତା' ଉପରେ ଗଙ୍ଗାନଦୀର ନରମ ଧୂଳିଆ ମାଟିରେ ଗୋଟିଏ ଶଯ୍ୟା ତିଆରି କର ଯେ କି ଦୁଇଫୁଟ ଚଉଡ଼ା, ଛଅଫୁଟ ଲମ୍ୱା ଓ ଦୁଇ ଇଞ୍ଚ ଉଚ୍ଚ ହୋଇଥିବ।

୩. ସେହି ଶଯ୍ୟାଉପରେ ଭଗବନ୍ନାମ 'ରାମ-ରାମ' ଲେଖି—

**ଓଁ ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା।**
**ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତରଃ ଶୁଚିଃ॥**

—ଏହି ମନ୍ତ୍ର ଦ୍ୱାରା ଗଙ୍ଗାଜଳରେ ସେହି ଶଯ୍ୟାକୁ ମାର୍ଜନ କରିବ।

୪. ତା'ଉପରେ କୁଶର ତିନିଖଣ୍ଡି ଆସନ ବିଛାଇ ଦିଅ, କୁଶାସନ ନ ଥିଲେ କୁଶ ପକାଇ ନୂଆ ସପ ବିଛାଇ ଦିଅ ଓ ତା'ଉପରେ ଶୁଦ୍ଧ ଧଳା ସୂତା ବା ପଶମ ବସ୍ତ୍ର ବିଛାଇ ଦିଅ। ନୀଳରେ ରଙ୍ଗା ଯାଇଥିବା ବା କାରଖାନାରେ ତିଆରି ବା ରେଶମ ବସ୍ତ୍ର ବିଛାଇବା ଉଚିତ ନୁହେଁ।

୫. ମରଣାସନ୍ନ ରୋଗୀକୁ ସ୍ନାନ କରାଇ ଶଯ୍ୟା ଉପରେ ଶୁଆଇ ଦିଅ। ଯଦି ଅବସ୍ଥା ସ୍ନାନ କରାଇବା ଯୋଗ୍ୟ ନ ଥାଏ, ତା'ହେଲେ ସ୍ନାନ କରାଇବାର ଆବଶ୍ୟକତା ନାହିଁ। ଏହାଦ୍ୱାରା ବ୍ୟର୍ଥରେ ତା'ର କଷ୍ଟ ବଢ଼େ। ଖଣ୍ଡିଏ ଶୁଦ୍ଧଲୁଗାକୁ ଗଙ୍ଗାଜଳରେ ଭିଜାଇ, ତା'ଦ୍ୱାରା ଧୀରେ ଧୀରେ ସମ୍ପୂର୍ଣ୍ଣ ଶରୀର ପୋଛି ଦିଅ। ମଳ ଇତ୍ୟାଦି ସଫା କରିବାକୁ ହେଲେ ଛୋଟ ଗାମୁଛାରେ ଆସ୍ତେ ଆସ୍ତେ ପୋଛି ଦେଇ ପରିଷ୍କାର କରିବା ଉଚିତ।

୬. ତା'ପରେ ଧୁଆ ହୋଇଥିବା ଶୁଖିଲା ନୂଆ ଶୁଦ୍ଧ ବସ୍ତ୍ର ତାକୁ ପିନ୍ଧାଇ ଦିଅ। ସେହି ଲୁଗା ନୀଳରେ ରଙ୍ଗା ଯାଇ ନ ଥିବ ଓ କାରଖାନା-ପ୍ରସ୍ତୁତ ହୋଇ ନ ଥିବ।

୭. ମରଣାସନ୍ନ ଲୋକର ଯଜ୍ଞୋପବୀତ ବଦଳାଇ ଦେବା ଉଚିତ।

୮. ଖଣ୍ଡିଏ ଶୁଦ୍ଧ ଲୁଗା ତା' ଉପରେ ଘୋଡ଼ାଇ ଦେବା ଉଚିତ। କିନ୍ତୁ ମୁହଁ ଖୋଲା ରଖିବା ଉଚିତ।

୯. ଗଳାରେ ତୁଳସୀ କଣ୍ଠିର ମାଳା ପିନ୍ଧାଇ ଦିଅ।

୧୦. ମୁଣ୍ଡ ଆଡ଼କୁ ତୁଳସୀ ଗଛର କୁଣ୍ଡଟିଏ ରଖି ଦିଅ।

୧୧. ଖଣ୍ଡିଏ ଛୋଟ ଗୀତା ତା' ମଥା ତଳେ ରଖି ଦିଅ।

୧୨. ମଥାରେ ଗୋପୀଚନ୍ଦନ ବା ଗଙ୍ଗାଙ୍କ ରେଣୁକାତିଳକ ଲଗାଇ ଦିଅ।

୧୩. ତା' ଚାରିପଟେ ଫୁଲ ବିଞ୍ଚି ଦିଅ ଓ ବାରମ୍ବାର ଧୂପ ଦିଅ।

୧୪. ଶ୍ରୀମଦ୍‌ଭଗବଦ୍‌ଗୀତାର ଅଷ୍ଟମ ଅଧ୍ୟାୟ ଅର୍ଥସହିତ ଶୁଣାଅ, ଯଦି ଚେତା ନ ଥାଏ, ତାହେଲେ 'ନାରାୟଣ'ଙ୍କର ନାମ ଶୁଣାଇ ଦିଆ ଯାଇପାରେ। ଯଦି ଗୀତା ପଢ଼ିବା-ଲୋକ ନ ଥିବ ତେବେ ପୂର୍ବରୁ ହିଁ ଭଗବାନଙ୍କ ନାମ ଶୁଣାଇବ। ଚେତା ରହିବା ସମୟରେ ମଧ୍ୟ 'ନାରାୟଣ'ଙ୍କ ନାମ ଶୁଣାଇ ଦିଆ ଯାଇପାରେ।

୧୫. ଡାକ୍ତରୀ ଔଷଧ ବା ଯେଉଁଥିରେ ଅପବିତ୍ର ପଦାର୍ଥସମୂହର ସଂଯୋଗ ଥିବ, ଏପରି ଔଷଧ ଖୁଆଇବା ଉଚିତ ନୁହେଁ।

୧୬. ରୋଗୀ ପାଖରେ ବସି ଘର-ପରିବାର ସମ୍ପର୍କିତ କାନ୍ଦଣା ନ କାନ୍ଦିବା ଉଚିତ ଓ ଘର ସଂସାର କଥା ତାକୁ ମନେ ପକାଇ ଦେବା ଉଚିତ ନୁହେଁ। ମାତା, ସ୍ତ୍ରୀ, ପତି, ପୁତ୍ର ବା କୌଣସି ସ୍ନେହୀ ବା ସଂପର୍କୀୟ ତା'ପାଖରେ ବସି ନିଜର ଦୁଃଖ ଶୁଣାଇବା ବା କାନ୍ଦିବା ଉଚିତ ନୁହେଁ। ତା'ର ମନ ଅନୁକୂଳ ପ୍ରତ୍ୟେକ ପ୍ରକାରରେ କଲ୍ୟାଣମୟୀ ସେବା କରିବା ଉଚିତ।

୧୭. ଏ ଅବସ୍ଥାରେ ଗଙ୍ଗାଜଳ, ତୁଳସୀ ଦେବା ବଡ଼ ଉତ୍ତମ ଅଟେ, କିନ୍ତୁ ତାକୁ ଗିଳିବାରେ ଯଦି କଷ୍ଟ ହେଉଥାଏ ତେବେ ତୁଳସୀପତ୍ରକୁ ବାଟି ଗଙ୍ଗାଜଳରେ ମିଶାଇ ପିଆଇ ଦେବା ଉଚିତ। ପାଞ୍ଚ-ଦଶ ମିନିଟ୍ ପରେ ପୁଣି ଦିଆଯାଇ ପାରେ। ଗଙ୍ଗାଜଳ ବହୁତ ଦିନର ବିସ୍ୱାଦ ନ ହେଉ, ପ୍ରଥମେ ନିଜେ ଚାଖି ପୁଣି ରୋଗୀକୁ ଦେବା ଉଚିତ। ଯେଉଁଥିରେ ଗନ୍ଧ ଆସିଯାଇଥିବ, ଯାହା କଟୁ ହୋଇଯାଇଥିବ, ତାହା ଦେବା ଉଚିତ ନୁହେଁ। ଟଟକା ଗଙ୍ଗାଜଳ କେଉଁଠାରୁ ମଗାଇ ନେବା ଉଚିତ। ଗଙ୍ଗାଜଳରେ ଶୁଦ୍ଧି, ଅଶୁଦ୍ଧି ବା ସ୍ପର୍ଶାସ୍ପର୍ଶର କୌଣସି ନିଷେଧ ନାହିଁ। ଯଦି ରୋଗୀ ମୁହଁ ବନ୍ଦ କରିଦିଏ ତେବେ ତାକୁ କିଛି ମଧ୍ୟ ନ ଦେବା ଉଚିତ।

୧୮. ଯଦି ରୋଗୀ ଭଗବାନଙ୍କ ସାକାର ବା ନିରାକାର କୌଣସି ରୂପର ପ୍ରେମୀ ହୋଇଥିବେ, ତେବେ ସାକାର ପ୍ରେମୀକୁ ତା'ଆଖି ଆଗରେ ଇଷ୍ଟଦେବଙ୍କ ଛବି ବା ମୂର୍ତ୍ତି ବାରମ୍ବାର ଦେଖାଇବା ଉଚିତ ଓ ତାର ରୂପ ତଥା ପ୍ରଭାବର ବର୍ଣ୍ଣନା ଶୁଣାଇବା ଉଚିତ। ନିରାକାର ପ୍ରେମୀକୁ ନିରାକାର ବ୍ରହ୍ମର ଶୁଦ୍ଧ, ବୋଧସ୍ୱରୂପ, ଜ୍ଞାନସ୍ୱରୂପ, ସତ୍, ଚିତ୍, ଘନ, ନିତ୍ୟ, ଅଜ, ଅବିନାଶୀ ଆଦି ବିଶେଷଣଗୁଡ଼ିକ ସହ ଆନନ୍ଦ ଶବ୍ଦ ଯୋଡ଼ି ଶୁଣାଇବା ଉଚିତ। ଅଥବା ପ୍ରାୟ ଅଧ ତୋଳା ଓଜନର ଶ୍ରୀଶାଳଗ୍ରାମଙ୍କ ମୂର୍ତ୍ତି ମରଣାସନ୍ନ ବ୍ୟକ୍ତିର ବକ୍ଷଃସ୍ଥଳ ଉପରେ ରଖି ଘରର ଲୋକେ ସେହି ମୂର୍ତ୍ତିକୁ ପୂଜା କରିବା ଓ ମରଣକାଳ ଅତ୍ୟନ୍ତ ନିକଟ ଆସିଗଲେ କର୍ପୂରରେ ଆଳତି କରିବା ଉଚିତ।

୧୯. ଯଦି ମରଣାସନ୍ନ ବ୍ୟକ୍ତିକୁ କାଶୀ ଆଦି ତୀର୍ଥସ୍ଥଳକୁ ନେଇ ଯିବାର ଥାଏ, ତେବେ ତାକୁ ପଚାରି ଦିଅ। ଯଦି ତାର ଇଚ୍ଛା ଥିବ, ସେଠାକୁ ଯିବାରେ କୌଣସି ଶଂକା ନ ଥିବ, ବୈଦ୍ୟଙ୍କ ଅନୁମତି ମିଳୁଥିବ ଏବଂ ଆବଶ୍ୟକ ଆର୍ଥିକ ସମ୍ବଳ ଥିବ, ତେବେ ତାକୁ ସେଠାକୁ ନେଇଯାଅ।

୨୦. ପୁଣି ମରଣାସନ୍ନର ସାରା ଶରୀରରେ **'ଓଁ ଅପବିତ୍ରଃ ପବିତ୍ରୋ ବା....'** ଏହି ମନ୍ତ୍ର ଦ୍ୱାରା ଗଙ୍ଗାଜଳରେ ମାର୍ଜନ କର।

୨୧. ସମସ୍ତେ ମିଶି ଶାଳଗ୍ରାମଙ୍କୁ ପରିକ୍ରମା ଓ ନମସ୍କାର କର।

୨୨. ପ୍ରାଣ ଚ୍ଛାଲିଯିବା ପରେ ମଧ୍ୟ ଅତି କମ୍‌ରେ ପନ୍ଦର-କୋଡ଼ିଏ ମିନିଟ ପର୍ଯ୍ୟନ୍ତ କାହାରିକୁ ଖବର ନ ଦେବା ଉଚିତ। ଭଗବନ୍ନାମର କୀର୍ତ୍ତନ କରି ଚ୍ଛାଲ, ଯଦ୍ଦ୍ୱାରା ସେଠାକାର ବାୟୁମଣ୍ଡଳ ସାତ୍ତ୍ୱିକ ରହିବ। କନ୍ଦାକଟାର ଚିତ୍କାର ନ ହେଉ, କାରଣ ସେ ସମୟରେ କାନ୍ଦଣା ପ୍ରାଣୀପାଇଁ ଭଲ ନୁହେଁ।

୨୩. ଘରର ଲୋକେ ବୁଦ୍ଧିମାନ୍ ହୋଇଥିଲେ କାନ୍ଦିବା ଉଚିତ ନୁହେଁ। ଅନ୍ୟ ଲୋକେ ମଧ୍ୟ ତାଙ୍କ ପାଖକୁ ଆସି ତାଙ୍କୁ କେବଳ ସହାନୁଭୂତି ଶବ୍ଦ ଶୁଣାଇ କନ୍ଦାଇବାର ଚେଷ୍ଟା କରିବା ଉଚିତ ନୁହେଁ।

୨୪. ଶୋକ-ଚିହ୍ନ ବାର ଦିନରୁ ଅଧିକ ରଖିବା ଉଚିତ ନୁହେଁ।

୨୫. ଅଳ୍ପ ବୟସର ପୁଅ-ଝିଅଙ୍କର ମୃତ୍ୟୁରେ ଶୋକ ପାଳନ କର ନାହିଁ।

୨୬. ମୃତକ ପାଇଁ ଶୋକସଭା ନ କରି ନିଜର ସାବଧାନ ପାଇଁ ସଭା କରିବା ଉଚିତ। ଏହି କଥା ମନେ ରଖିବା ଉଚିତ ଯେ ଏହି ଭଳି ଦିନେ ଆମର ମୃତ୍ୟୁ ହେବ।

୨୭. ଜୀବନ୍ମୁକ୍ତ ପୁରୁଷର ମୃତ୍ୟୁରେ ଶୋକ କର ନାହିଁ। ଏପରି କରିବା ତାଙ୍କୁ ଅପମାନ କରିବା ଅଟେ।



## ତୀର୍ଥସ୍ଥଳମାନଙ୍କରେ ପାଳନୀୟ ନିୟମ

୧. ଗଙ୍ଗା, ଯମୁନା ଓ ଦେବାଳୟ ଆଦି ତୀର୍ଥସ୍ଥାନମାନଙ୍କ ଠାରୁ ବହୁତ ଦୂରରେ ମଳ-ମୂତ୍ର ତ୍ୟାଗ କରିବା ଉଚିତ। ଯେଉଁ ଲୋକ ଗଙ୍ଗା-ଯମୁନା ଆଦିର କୂଳରେ ମଳ-ମୂତ୍ର ତ୍ୟାଗ କରେ ତଥା ଗଙ୍ଗା-ଯମୁନା ଆଦିରେ ଦାନ୍ତ ଘଷେ ଓ କୁଳି କରେ, ସେ ସ୍ନାନର ପୁଣ୍ୟ ନ ପାଇ ପାପଭାଗୀ ହୋଇଥାଏ।

---

ବିଶେଷ—ଯିଏ ମରଣାସନ୍ନ ବ୍ୟକ୍ତିକୁ କୀର୍ତ୍ତନ-ଭଜନ ଶୁଣାଏ ଓ ତା' ସହିତ ତାକୁ ସେବା କରେ, ତାର ବଡ଼ ମାହାତ୍ମ୍ୟ ଅଛି। ସେ କାର୍ଯ୍ୟର ତୁଳନାରେ କୌଣସି ଭଜନ ନାହିଁ, ଧ୍ୟାନ ନାହିଁ, ସତ୍‌ସଙ୍ଗ ନାହିଁ। ଏହା ମୁକ୍ତିର ବିତରଣ ଅଟେ। ସବୁ କାର୍ଯ୍ୟ ଛାଡ଼ି ଏଥିପାଇଁ ଦୌଡ଼ିଯିବା ଉଚିତ। ନିତ୍ୟକର୍ମ କରୁଥାଅ ତ ତାହା ମଧ୍ୟ ଛାଡ଼ି କରି ଚ୍ଛାଲିଯାଅ। ଲକ୍ଷେ କାମ ଛାଡ଼ି ମରଣାସନ୍ନକୁ କୀର୍ତ୍ତନ, ଭଜନ, ଉପଦେଶ ଶୁଣାଅ। ରୋଗୀ ଯଦି ସ୍ୱୟଂ ଶୁଣିବାକୁ ଚ୍ଛାହେଁ ବା ଘରଲୋକେ ଚ୍ଛାହାନ୍ତି, ତେବେ ଶୁଣାଅ। କିନ୍ତୁ ଯଦି ସମସ୍ତେ ବିରୋଧ କରନ୍ତି, ତେବେ କୌଣସି ଉପାୟ ନାହିଁ। କିନ୍ତୁ ଯଦି ରୋଗୀ ଶୁଣିବାକୁ ଚ୍ଛାହେଁ, ତା'ହେଲେ ଆଉ କାହାରି କଥା ନ ଶୁଣି, ତାକୁ ଶୁଣାଅ।

୨. କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, ରାଗ, ଦ୍ୱେଷ, ଦମ୍ଭ, କପଟ, ପ୍ରମାଦ, ଆଳସ୍ୟ ଆଦି ଦୁର୍ଗୁଣଗୁଡ଼ିକୁ ତୀର୍ଥମାନଙ୍କରେ ସର୍ବଥା ତ୍ୟାଗ କରିବା ଉଚିତ । ଶୀତ-ଗ୍ରୀଷ୍ମ, ସୁଖ-ଦୁଃଖ ଓ ଅନୁକୂଳ-ପ୍ରତିକୂଳ ପଦାର୍ଥଗୁଡ଼ିକ ପ୍ରାପ୍ତ ହେଲେ ସେଗୁଡ଼ିକୁ ଭଗବାନଙ୍କ ପ୍ରେରିତ ପୁରସ୍କାର ମନେକରି ସଦାସର୍ବଦା ପ୍ରସନ୍ନଚିତ୍ତ ଓ ସନ୍ତୁଷ୍ଟ ରହିବା ଉଚିତ ।

୩. ତୀର୍ଥଯାତ୍ରାରେ ନିଜ ସହଯାତ୍ରୀମାନଙ୍କ ମଧ୍ୟରୁ କୌଣସି ସାଥୀ ତଥା ଆଶ୍ରିତ ଉପରେ କୌଣସି ବଡ଼ ବିପଦ ପଡ଼ିଲେ କାମ-କ୍ରୋଧ ବା ଭୟ କାରଣରୁ ତାକୁ ଏକୁଟିଆ କେବେ ଛାଡ଼ିବା ଉଚିତ ନୁହେଁ । ମହାରାଜ ଯୁଧିଷ୍ଠିର ସ୍ୱର୍ଗକୁ ତିରସ୍କାର କରି ପରମ ଧର୍ମ ଭାବି ନିଜ ସାଥିରେ ଥିବା କୁକୁରକୁ ମଧ୍ୟ ତ୍ୟାଗ କଲେ ନାହିଁ । ଯେଉଁ ଲୋକେ ନିଜର କୌଣସି ସାଥୀ ବା ଆଶ୍ରିତ ବେମାର ପଡ଼ିଥିଲେ ତାକୁ ଛାଡ଼ି ତୀର୍ଥ, ସ୍ନାନ ଓ ଭଗବଦ୍ ବିଗ୍ରହଦର୍ଶନ ଆଦି ପାଇଁ ଚାଲିଯାଆନ୍ତି, ସେମାନଙ୍କ ଉପରେ ଭଗବାନ ପ୍ରସନ୍ନ ନ ହୋଇ ଓଲଟା ଅସନ୍ତୁଷ୍ଟ ହୁଅନ୍ତି, କାରଣ "ପରମାତ୍ମା ହିଁ ସମସ୍ତଙ୍କ ଆତ୍ମା ଅଟନ୍ତି" ଏହି ନ୍ୟାୟରେ ସେହି ବିପଦଗ୍ରସ୍ତ ସାଥୀର ତିରସ୍କାର ବସ୍ତୁତଃ ପରମାତ୍ମାଙ୍କର ତିରସ୍କାର । ତେଣୁ ତାକୁ ଭୁଲରେ ବି କେବେ ତ୍ୟାଗ କରିବା ଉଚିତ ନୁହେଁ ।

୪. ଯେପରି ତୀର୍ଥମାନଙ୍କରେ କରାଯାଇଥିବା ସ୍ନାନ, ଦାନ, ଜପ, ତପ, ଯଜ୍ଞ, ବ୍ରତ, ଉପବାସ, ଧ୍ୟାନ, ଦର୍ଶନ, ପୂଜା, ପାଠ, ସେବା, ସତ୍‌ସଙ୍ଗ ଆଦି ମହାନ୍ ଫଳଦାୟକ ହୁଅନ୍ତି, ଠିକ୍ ସେହିପରି ସେଠାରେ କରାଯାଇଥିବା ମିଥ୍ୟା, କପଟ, ଚୋରି, ବ୍ୟଭିଚାର, ହିଂସା ଆଦି ପାପକର୍ମ ମଧ୍ୟ ବଜ୍ରପାପ ହୋଇଯାଆନ୍ତି । ଏଥିପାଇଁ ତୀର୍ଥମାନଙ୍କରେ କୌଣସି ପ୍ରକାରର କିଞ୍ଚିତ୍‌ମାତ୍ର ପାପ ମଧ୍ୟ କରିବା ଉଚିତ ନୁହେଁ ।

୫. ବିଳାସ-ବ୍ୟସନ, ଆରାମ, ସ୍ୱାଦ ଓ ଭୋଗବୁଦ୍ଧିରେ ତୀର୍ଥମାନଙ୍କରେ କୌଣସି ପଦାର୍ଥ ସଂଗ୍ରହ କରିବା ଉଚିତ ନୁହେଁ ଏବଂ ସେବନ କରିବା ବି ଉଚିତ ନୁହେଁ । କେବଳ ଶରୀରନିର୍ବାହମାତ୍ରକ ପାଇଁ ତ୍ୟାଗ ଓ ବୈରାଗ୍ୟ ବୁଦ୍ଧିରେ ଅନ୍ନ-ବସ୍ତ୍ରର ଉପଯୋଗ କରିବା ଉଚିତ ।

୬. ତୀର୍ଥମାନଙ୍କରେ ନିଜ ଅର୍ଜିତ ଦ୍ରବ୍ୟରେ ପବିତ୍ରତାପୂର୍ବକ ପ୍ରସ୍ତୁତ ହୋଇଥିବା ଅନ୍ନ ଓ ଦୁଧ-ଫଳ ଆଦି ସାତ୍ତ୍ୱିକ ପଦାର୍ଥଗୁଡ଼ିକୁ ହିଁ ଭୋଜନ

କରିବା ଉଚିତ । ସମସ୍ତଙ୍କ ସହ ସ୍ୱାର୍ଥ ଓ ଅହଂକାରକୁ ତ୍ୟାଗ କରି ଦମ୍ଭ, ବିନୟ ଓ ମୋହପୂର୍ବିକ ସାତ୍ତ୍ୱିକ ବ୍ୟବହାର କରିବା ଉଚିତ ।

୭. ତୀର୍ଥମାନଙ୍କରେ ବିଡ଼ି, ସିଗାରେଟ୍, ତମାଖୁ, ଗଞ୍ଜେଇ, ଭାଙ୍ଗ, ଚରସ, କୋକୀନ ଆଦି ମାଦକ ଦ୍ରବ୍ୟଗୁଡ଼ିକର ଏବଂ ରସୁଣ, ପିଆଜ, ବିସ୍କୁଟ, ବରଫ, ସୋଡ଼ା, ଲେମୋନେଡ଼ ଆଦି ଅପବିତ୍ର ପଦାର୍ଥଗୁଡ଼ିକର ତଥା ତାସ, ପଶା, ଚେସ୍ ଖେଳିବା ବା ନାଟକ-ସିନେମା ଦେଖିବା ଆଦି ପ୍ରମାଦର ଏବଂ ଗାଳି-ଗୁଲଜ, ଚୁଗୁଲି-ନିନ୍ଦା, ହାସ-ପରିହାସ, ବେକାର କଥାବାର୍ତ୍ତା, ଆକ୍ଷେପ ଆଦି ବ୍ୟର୍ଥ ବାର୍ତ୍ତାଳାପ ସର୍ବଥା ତ୍ୟାଗ କରିବା ଉଚିତ ।

୮. ନିବାସ-ସ୍ଥାନ ଓ ବାସନ-କୁସନ ବ୍ୟତୀତ କାହାରି କୌଣସି ଜିନିଷ କାମରେ ଲଗାଇବା ଉଚିତ ନୁହେଁ । ମାଗିବା ବିନା ଦେଲେ ମଧ୍ୟ ବିନାମୂଲ୍ୟରେ ଗ୍ରହଣ କରିବା ଉଚିତ ନୁହେଁ । ତୀର୍ଥମାନଙ୍କରେ ନିକଟ ସଂପର୍କୀୟ ମିତ୍ର ଆଦିଙ୍କର ଉପହାରାଦି ମଧ୍ୟ ନ ନେବା ଉଚିତ । ବିନା ଅନୁମତିରେ କାହାରି କୌଣସି ଜିନିଷ କାମରେ ଲଗାଇବା ଚୋରି ସମାନ ଅଟେ । ବିନା ମୂଲ୍ୟରେ ଔଷଧାଦି ନେବା ମଧ୍ୟ ଦାନ ନେବା ସଙ୍ଗେ ସମାନ ଅଟେ ।

୯. ମନ, ବାଣୀ ଓ ଶରୀରରେ ବ୍ରହ୍ମଚର୍ଯ୍ୟ ପାଳନ ଉପରେ ବିଶେଷ ଧ୍ୟାନ ରଖିବା ଉଚିତ । ସ୍ତ୍ରୀପକ୍ଷେ ପରପୁରୁଷର ଓ ପୁରୁଷପକ୍ଷେ ପରସ୍ତ୍ରୀର ଦର୍ଶନ, ସ୍ପର୍ଶ, ଭାଷଣ ଓ ଚିନ୍ତନ ଆଦି ମଧ୍ୟ କେବେ କରିବା ଉଚିତ ନୁହେଁ । ଯଦି ବିଶେଷ ଆବଶ୍ୟକତା ପଡ଼େ, ତା'ହେଲେ ସ୍ତ୍ରୀମାନେ ପରପୁରୁଷକୁ ପିତା ବା ଭ୍ରାତା ସମାନ ଭାବି ଓ ପୁରୁଷ ପରସ୍ତ୍ରୀଙ୍କୁ ମାତା ବା ଭଗିନୀ ସମାନ ଭାବି ନିମ୍ନ ଦୃଷ୍ଟି କରି ସଂକ୍ଷେପରେ ବାର୍ତ୍ତାଳାପ କରି ପାରନ୍ତି । ଯଦି ଜଣକର ଅନ୍ୟ କାହାରି ପ୍ରତି ପାପ ବୁଦ୍ଧି ହୋଇଯାଏ, ତା'ହେଲେ ଅତି କମ୍‌ରେ ଗୋଟିଏ ଦିନ ଉପବାସ କରନ୍ତୁ ।

୧୦. ନିଜ ନିଜ ଅଧିକାର ଅନୁସାରେ ସନ୍ଧ୍ୟା, ତର୍ପଣ, ଜପ, ଧ୍ୟାନ, ପୂଜା, ପାଠ, ସ୍ୱାଧ୍ୟାୟ, ହୋମ, ବଳିବୈଶ୍ୱଦେବ ଆଦି ନିତ୍ୟ ଓ ନୈମିତ୍ତିକ କର୍ମ ଠିକ୍ ସମୟରେ କରିବାକୁ ବିଶେଷ ଭାବରେ ଚେଷ୍ଟା କରିବା ଉଚିତ । ଯଦି କୌଣସି ବିଶେଷ କାରଣବଶତଃ ସମୟର ଉଲ୍ଲଂଘନ ହୋଇଯାଏ, ତା'ହେଲେ ମଧ୍ୟ କର୍ମର ଉଲ୍ଲଂଘନ କରିବା ଉଚିତ ନୁହେଁ ।

୧୧. ଗୀତା, ରାମାୟଣ ଆଦି ଶାସ୍ତ୍ରଗୁଡ଼ିକର ଅଧ୍ୟୟନ, ଭଗବନ୍ନାମ-

ଜପ, ସୂର୍ଯ୍ୟ ଭଗବାନଙ୍କୁ ଅର୍ଘ୍ୟଦାନ, ଇଷ୍ଟଦେବଙ୍କ ପୂଜା, ଧ୍ୟାନ, ନମସ୍କାର ଓ ପ୍ରାର୍ଥନା ଆଦି ସବୁ ବର୍ଣ୍ଣ ଓ ଆଶ୍ରମର ସ୍ତ୍ରୀ-ପୁରୁଷମାନଙ୍କୁ ଅବଶ୍ୟ କରିବା ଉଚିତ।

୧୨. କାମ, କ୍ରୋଧ, ଲୋଭ ଆଦିର ବଶୀଭୂତ ହୋଇ କୌଣସି ଜୀବକୁ କୌଣସି ପ୍ରକାରର କିଞ୍ଚିତ୍‌ମାତ୍ର ମଧ୍ୟ ଦୁଃଖ କେବେ ଦେବା ଉଚିତ ନୁହେଁ। କୀର୍ତ୍ତନ ଓ ସ୍ୱାଧ୍ୟାୟର ଅତିରିକ୍ତ ସମୟରେ ମୌନ ରହିବାପାଇଁ ଚେଷ୍ଟା କରିବା ଉଚିତ। କାରଣ ମୌନ ରହିବାଦ୍ୱାରା ଜପ ଓ ଧ୍ୟାନ ସାଧନରେ ବିଶେଷ ସାହାଯ୍ୟ ମିଳିଥାଏ। ଯଦି ବିଶେଷ କାର୍ଯ୍ୟବଶତଃ କଥା କହିବାକୁ ପଡ଼େ, ତା'ହେଲେ ସତ୍ୟ, ପ୍ରିୟ ଓ ହିତକାରକ ବଚନ କହିବା ଉଚିତ।

୧୩. ସାଧୁ, ବ୍ରାହ୍ମଣ, ତପସ୍ୱୀ, ବ୍ରହ୍ମଚାରୀ, ବିଦ୍ୟାର୍ଥୀ ଆଦି ସତ୍‌ପାତ୍ରଙ୍କର ତଥା ଦୁଃଖୀ, ଅନାଥ, ଆତୁର, ଅଙ୍ଗହୀନ, ରୋଗୀ ଓ ସାଧକ ପୁରୁଷଙ୍କୁ ଅନ୍ନ, ବସ୍ତ୍ର, ଔଷଧ ଓ ଧାର୍ମିକ ପୁସ୍ତକ ଆଦି ଦ୍ୱାରା ଯଥାଯୋଗ୍ୟ ସେବା କରିବା ଉଚିତ।

୧୪. ଭୋଗ ଓ ଐଶ୍ୱର୍ଯ୍ୟକୁ ଅନିତ୍ୟ ଭାବି ବିବେକ-ବୈରାଗ୍ୟପୂର୍ବକ ବଶୀଭୂତ ହୋଇଥିବା ମନ ଓ ଇନ୍ଦ୍ରିୟଙ୍କୁ କେବଳ ଶରୀର ନିର୍ବାହ ଅତିରିକ୍ତ ସେମାନଙ୍କ ବିଷୟସମୂହରୁ ନିବୃତ୍ତ କରିବାକୁ ଚେଷ୍ଟା କରିବା ଉଚିତ।

୧୫. କାଞ୍ଚନ-କାମିନୀ ପ୍ରତି ଲୋଲୁପ, ନିଜ ନାମରୂପକୁ ପୂଜା କରାଇ ଲୋକଙ୍କୁ ଉଚ୍ଛିଷ୍ଟ (ଅଇଁଠା) ଖୁଆଉଥିବା ଲୋକ, ମାନ-ବଡ଼ିମା ଓ ପ୍ରତିଷ୍ଠାର ଦାସ, ପ୍ରମାଦୀ ଓ ବିଷୟାସକ୍ତ ପୁରୁଷଙ୍କର ସଂସର୍ଗ ଭୁଲରେ ମଧ୍ୟ କରିବା ଉଚିତ ନୁହେଁ। ହୁଏତ ସେମାନେ ସାଧୁ, ବ୍ରହ୍ମଚାରୀ ଓ ତପସ୍ୱୀଙ୍କ ବେଶରେ ମଧ୍ୟ ଥାଆନ୍ତୁ ନା କାହିଁକି। ମାଂସାହାରୀ, ମାଦକଦ୍ରବ୍ୟଗୁଡ଼ିକର ସେବନକାରୀ, ପାପୀ, ଦୁରାଚାରୀ ଓ ନାସ୍ତିକ ପୁରୁଷଙ୍କୁ ଦର୍ଶନ ମଧ୍ୟ କରିବା ଉଚିତ ନୁହେଁ।

୧୬. ତୀର୍ଥମାନଙ୍କରେ ସାଧୁ, ମହାତ୍ମା, ଜ୍ଞାନୀ, ଯୋଗୀ ଓ ଭକ୍ତବୃନ୍ଦଙ୍କ ଦର୍ଶନ, ସେବା, ସତ୍‌ସଙ୍ଗ, ନମସ୍କାର, ଉପଦେଶ, ଆଦେଶ ଓ ବାର୍ତ୍ତାଳାପ ଦ୍ୱାରା ବିଶେଷ ଲାଭ ପାଇବା ପାଇଁ ସେମାନଙ୍କୁ ଅନୁସନ୍ଧାନ କରିବା ଉଚିତ।

୧୭. ତୀର୍ଥକୁ ଯାଇ କି ପ୍ରକାର କ'ଣ-କ'ଣ କରିବା ଉଚିତ, ଏହି କଥାଗୁଡ଼ିକ ନିମ୍ନରେ କୁହାଯାଉଛି—

ପାଦରେ ଯାତ୍ରା କରିବା ସମୟରେ ମନରେ ଭଗବାନଙ୍କ ସ୍ୱରୂପର

ଧ୍ୟାନ ଓ ବାଣୀରେ ନାମ ଜପ କରି ଚାଲିବା ଉଚିତ। ଯଦି ଅନେକ ଲୋକ ସାଙ୍ଗରେ ଥାଆନ୍ତି, ତା'ହେଲେ ସମସ୍ତଙ୍କୁ ମିଶି ଭଗବାନଙ୍କ ନାମ-କୀର୍ତ୍ତନ କରି ଚାଲିବା ଉଚିତ। ରେଲଗାଡ଼ି ଆଦି ବାହନରେ ଯାତ୍ରା କରିବା ସମୟରେ ମଧ୍ୟ ଭଗବାନଙ୍କୁ ସ୍ମରଣ କରି ଧାର୍ମିକ ପୁସ୍ତକଗୁଡ଼ିକର ଅଧ୍ୟୟନ ଅଥବା ଭଗବାନଙ୍କ ନାମ-ଜପ କରି କରି ଯିବା ଉଚିତ।

୧୮. ଗଙ୍ଗା, ସିନ୍ଧୁ, ସରସ୍ୱତୀ, ଯମୁନା, ଗୋଦାବରୀ, ନର୍ମଦା, କାବେରୀ, କୃଷ୍ଣା, ସରଯୂ, ମାନସରୋବର, କୁରୁକ୍ଷେତ୍ର, ପୁଷ୍କର, ଗଙ୍ଗାସାଗର ଆଦି ତୀର୍ଥ ସମୂହରେ ତାଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ, ରହସ୍ୟ ଓ ମହିମା ସ୍ମରଣ କରି ଆତ୍ମଶୁଦ୍ଧି ଓ କଲ୍ୟାଣ ପାଇଁ ସ୍ନାନ କରିବା ଉଚିତ।

୧୯. ତୀର୍ଥ ସ୍ଥାନମାନଙ୍କରେ ଶ୍ରୀରାମ, ଶ୍ରୀକୃଷ୍ଣ, ଶ୍ରୀଶିବ, ଶ୍ରୀବିଷ୍ଣୁ ଆଦି ଭଗବଦ୍ ବିଗ୍ରହଗୁଡ଼ିକର ଶ୍ରଦ୍ଧା-ପ୍ରେମପୂର୍ବକ ଦର୍ଶନ କରି ତାଙ୍କ ଗୁଣ, ଲୀଳା, ତତ୍ତ୍ୱ, ରହସ୍ୟ ଓ ମହିମା ଆଦିର ସ୍ମରଣ କରି ଦିବ୍ୟ ସ୍ତୋତ୍ରସମୂହ ଦ୍ୱାରା ଆତ୍ମୋଦ୍ଧାର ପାଇଁ ତାଙ୍କର ସ୍ତୁତି-ପ୍ରାର୍ଥନା କରିବା ଉଚିତ।

୨୦. ଭକ୍ତଙ୍କ ଦର୍ଶନ, ସେବା, ସତ୍‌ସଙ୍ଗ, ନମସ୍କାର, ଉପଦେଶ ଓ ବାର୍ତ୍ତାଳାପ ଦ୍ୱାରା ବିଶେଷ ଲାଭ ପାଇବା ପାଇଁ ତାଙ୍କ ଅନୁସନ୍ଧାନ କରିବା ଉଚିତ। ଭଗବାନ ଅର୍ଜୁନଙ୍କ ପ୍ରତି ଗୀତାରେ କହିଅଛନ୍ତି—

**ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା।**
**ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ॥**

(୪।୩୪)



## ସ୍ତ୍ରୀ-ଶିକ୍ଷା

୧. ସ୍ତ୍ରୀମାନଙ୍କୁ ବ୍ୟାବହାରିକ ବିଦ୍ୟା ମଧ୍ୟ ଶିଖାଇବା ଉଚିତ। ଘରେ ଯେଉଁ ଖର୍ଚ୍ଚ ହେଉଛି, ତାହା ସବୁବେଳେ କାରଣ ଓ ଦିନ ସହ ଲେଖି ରଖିଲେ ବହୁତ ଲାଭ ଅଛି ତଥା ଟଙ୍କା ପଇସାର ହିସାବ ଶିଖାଇବା ଉଚିତ। ସ୍ତ୍ରୀଲୋକଙ୍କୁ କିଛି ଜଣା ନ ଥିଲେ ପୁରୁଷଙ୍କ ମରିବା ପରେ ଘର ନଷ୍ଟ ହୋଇଯାଏ।

୨. ବାକ୍‌ସଂଯମର ଅଭାବ, ମୂଢ଼ତା, ମର୍ମ ବୁଝିବା ଶକ୍ତିର ଅଭାବ, ସକାମଭାବ, କଥା ଶୁଣି ତା'ର ଓଲଟା ଅର୍ଥ ବୁଝିବା—ସ୍ତ୍ରୀମାନଙ୍କ ଠାରେ ଏହି ପ୍ରଧାନ ଦୋଷଗୁଡ଼ିକ ଦେଖିବାକୁ ମିଳିଥାଏ।

୩. ଲଜ୍ଜା ହିଁ ସ୍ତ୍ରୀମାନଙ୍କର ଭୂଷଣ ଅଟେ।

୪. ଛାଇ ପରି ସ୍ୱାମୀ ସାଙ୍ଗରେ ରହିବା ହିଁ ପତ୍ନୀର ଏକମାତ୍ର କର୍ତ୍ତବ୍ୟ ଅଟେ।

୫. ସ୍ତ୍ରୀକୁ ପତି-ସେବା ଓ ପତିର ସୁଖ ପାଇଁ ପତି ସହିତ ହିଁ ରହିବା ଉଚିତ।

୬. ପତି ବିରୋଧ କଲେ ମଧ୍ୟ କଷ୍ଟ ଓ ଆପଦ ସମୟରେ ପତି-ସେବା ପାଇଁ ସ୍ତ୍ରୀକୁ ପତି ସହିତ ରହିବା ଉଚିତ।

୭. ଶାଶୁ ବା ତାଙ୍କ ସମାନ, ସଂପର୍କରେ ନିଜଠାରୁ ବଡ଼ କେହି ବି ସ୍ତ୍ରୀ, ଯାହା କିଛି କହନ୍ତି ବା ବ୍ୟବହାର କରନ୍ତି, ତାକୁ ଖୁସି ମନରେ ସହିବା ଉଚିତ।

୮. କେବେ ପତି ସହ ବିଦେଶ ଯିବାକୁ ପଡ଼ିଲେ ନିର୍ମଳ ହୃଦୟରେ ଶାଶୁମାନଙ୍କୁ ପ୍ରଣାମ କରି, ତାଙ୍କୁ ସନ୍ତୁଷ୍ଟ କରାଇ, ସେବାରୁ ବଞ୍ଚିତ ହେବା ଯୋଗୁଁ ହାର୍ଦ୍ଦିକ ପଶ୍ଚାତ୍ତାପ କରି ଯିବା ଉଚିତ। ଏହାଦ୍ୱାରା ବୋହୂମାନଙ୍କୁ ଶାଶୁଙ୍କର ଆଶୀର୍ବାଦ ଆପେ ଆପେ ପ୍ରାପ୍ତ ହୁଏ।

୯. ପତିର ବିୟୋଗରେ ଭୀଷଣ ବିପଦ ଆସିଲେ ମଧ୍ୟ ତା'ର ପତିପାଦ ପ୍ରତି ଧ୍ୟାନ ରହୁ। ମନରେ ଭଗବାନଙ୍କ ବଳ ଉପରେ ପୂର୍ଣ୍ଣ ବୀରତା, ଧୀରତା ଓ ତେଜ ରହୁ ଏବଂ ସ୍ୱଧର୍ମ ପାଳନରେ ଆତ୍ମାହୁତି ଦେବାକୁ ସେ ସଦା ପ୍ରସ୍ତୁତ ରହୁ।

୧୦. ବଡ଼ ବିପଦ ସମୟରେ ମଧ୍ୟ ସ୍ତ୍ରୀକୁ ଯଥାସମ୍ଭବ ପରପୁରୁଷର ଅଙ୍ଗକୁ ସ୍ପର୍ଶ ନ କରିବା ଉଚିତ।

୧୧. ସ୍ତ୍ରୀ କୌଣସି ଅବସ୍ଥାରେ ମଧ୍ୟ ପତି ଉପରେ ଅସନ୍ତୁଷ୍ଟ ନ ହେଉ ଓ ତାକୁ ସନ୍ତୁଷ୍ଟ କରାଇବା ପାଇଁ ନ୍ୟାୟଯୁକ୍ତ ଉଚିତ ଚେଷ୍ଟା କରୁ।

୧୨. ବିଦେଶରୁ ଫେରିବା କ୍ଷଣି ହିଁ ଶାଶୁ ଓ ସମସ୍ତ ଗୁରୁଜନସ୍ଥାନୀୟ ସ୍ତ୍ରୀମାନଙ୍କୁ ପ୍ରଣାମ କରିବା ଓ ଶାଶୁ ଆଦିଙ୍କର ଆନ୍ତରିକତାର ସହ ସେବା କରିବା ଉଚିତ ଏବଂ ଗୃହର ସାରା କାମ ସୁଗ୍ପରୁରୂପେ କରିବା ଉଚିତ।

୧୩. ପ୍ରତିଦିନ ପ୍ରାଣାଧିକ ପ୍ରିୟ ପତିର କାର୍ଯ୍ୟ କରିବା ଓ ସେଥିରେ ପ୍ରସନ୍ନ ରହିବା ସ୍ତ୍ରୀର ସ୍ୱାଭାବିକ ଧର୍ମ ଅଟେ।

୧୪. ଯଦି କେବେ ଅନ୍ୟର ଘରେ ରହିବାର ଅବସର ଆସେ, ତା'ହେଲେ

ସ୍ତ୍ରୀମାନେ ଅନ୍ତଃପୁରରେ ରହିବା ଉଚିତ ଏବଂ ଏହିପରି କୌଣସି ଅନ୍ୟ ସ୍ତ୍ରୀକୁ ନିଜ ଘରେ ରଖିବାର ହେଲେ ସ୍ତ୍ରୀମାନଙ୍କୁ ଅନ୍ତଃପୁରରେ ରଖିବା ଉଚିତ।

୧୫. ଯେ ନିଜ ଧର୍ମକୁ ପ୍ରାଣପଣେ ପାଳନ କରେ, ଶେଷରେ ତା'ର ପରିଣାମ ଉତ୍ତମ ହୋଇଥାଏ।

୧୬. ବିନା ଦୋଷରେ ଯଦି ସ୍ୱାମୀ ସ୍ତ୍ରୀକୁ ତ୍ୟାଗ କରିଦିଏ, ତେବେ ସ୍ତ୍ରୀ ଏହି ବିପତ୍ତିରେ ଦୁଃଖମୟ ଜୀବନ ବିତାଇ ମଧ୍ୟ ନିଜ ପାତିବ୍ରତ୍ୟ ଧର୍ମର ରକ୍ଷା କରିବା ଉଚିତ। ପରିଣାମରେ ତା'ର କଲ୍ୟାଣ ହେବ।

୧୭. ଯେଉଁ ସ୍ତ୍ରୀ ଆପଦକାଳରେ ସୀତା ପରି ଧର୍ମପାଳନ କରିବ, ତା'ର କୀର୍ତ୍ତି ସଂସାରରେ ସବୁଦିନ ପାଇଁ ପ୍ରକାଶିତ ହୋଇଯିବ।

୧୮. ଯେଉଁ ମାଆ ଓ ଭଉଣୀମାନେ ପ୍ରମାଦ, ମୋହ ଓ ଆସକ୍ତିକୁ ତ୍ୟାଗ କରି ସୀତାଙ୍କ ଚରିତ୍ରକୁ ଅନୁକରଣ କରିବେ, ସେମାନଙ୍କର ନିଜ କଲ୍ୟାଣରେ ଶଙ୍କା ଅବା କ'ଣ ଅଛି। ସେମାନେ ନିଜ ପତି ଓ ପୁତ୍ରଙ୍କୁ ମଧ୍ୟ ଉଦ୍ଧାର କରିପାରନ୍ତି। ଅଧିକ କ'ଣ କହିବା, ଯାହା ଉପରେ ତାଙ୍କର ଦୟା ହୋଇଯିବ, ତାର ମଧ୍ୟ କଲ୍ୟାଣ ହେବା ସମ୍ଭବ।

୧୯. ସତୀ ଶିରୋମଣି ପତିବ୍ରତା ସ୍ତ୍ରୀ ଦର୍ଶନ ଏବଂ ପୂଜାର ଯୋଗ୍ୟା ଅଟେ। କେବଳ ମନୁଷ୍ୟଙ୍କ ଦ୍ୱାରା ନୁହେଁ, ବରଂ ଦେବତାଙ୍କ ଦ୍ୱାରା ମଧ୍ୟ ସେ ପୂଜନୀୟା ଅଟେ ଓ ନିଜ ଚରିତ୍ର ଦ୍ୱାରା ତ୍ରିଲୋକର ପବିତ୍ରକର୍ତ୍ତ୍ରୀ ଅଟେ।

୨୦. ମନୁ ଆଦି ସ୍ମୃତିକାରଗଣ ସ୍ତ୍ରୀମାନଙ୍କ ପାଇଁ ବିବାହ-ବିଧିକୁ ହିଁ ବୈଦିକ ସଂସ୍କାର, ପତି ହିଁ ଗୁରୁ ହେବା କାରଣରୁ ପତିଗୃହରେ ନିବାସ ହିଁ ଗୁରୁକୁଳବାସ ଓ ଗୃହକାର୍ଯ୍ୟକୁ ହିଁ ଅଗ୍ନିହୋତ୍ର ବୋଲି କହିଛନ୍ତି।

୨୧. ସ୍ତ୍ରୀମାନେ ପ୍ରସନ୍ନଚିତ୍ତ ହୋଇ ଘରକାମରେ କୁଶଳତା ଓ ଘରର ଜିନିଷଗୁଡ଼ିକୁ ଭଲଭାବେ ସମ୍ଭାଳିବା, କମ୍ ଖର୍ଚ୍ଚ କରିବା, ଘରର ଆୟ-ବ୍ୟୟର ହିସାବ ରଖିବା, ଅତିଥି-ସେବା, ସନ୍ତାନ ଉତ୍ପତ୍ତି ଓ ପାଳନ, ଧର୍ମକାର୍ଯ୍ୟ ଓ ସେବାରେ ଆଗ୍ରହ, ସିଲାଇ ବା ବୁଣାବୁଣି, ସୂତାକାଟିବା, ଗ୍ରଉଳ ଆଦି ପେଷିବା, ଝାଡୁଦେବା, ଲିପାପୋଛା, ବାସନ କୁସନ ସଫା ଆଦି ସମସ୍ତ କାର୍ଯ୍ୟ ନିଜ କର୍ତ୍ତବ୍ୟ ଭାବି ପ୍ରେମପୂର୍ବକ ନିଷ୍କାମଭାବେ କରିବା ଉଚିତ। ଏହାଦ୍ୱାରା ସେମାନେ ଇହଲୋକରେ ଯଶ ପାଆନ୍ତି ଓ ପରଲୋକରେ ଉତ୍ତମ ଗତିକୁ ପ୍ରାପ୍ତ ହୁଅନ୍ତି।

୨୨. ତମାଖୁ, ଭାଙ୍ଗ, ମଦିରାଦି ମାଦକ ବସ୍ତୁଗୁଡ଼ିକର ସେବନ, ଦୁର୍ଜନଙ୍କ ସଂସର୍ଗ, ପତିଠାରୁ  ଅଲଗା ରହିବା, ଇଆଡ଼େ-ସିଆଡ଼େ ମନ ଇଚ୍ଛା ବୁଲିବା, ଅନ୍ୟର ଘରେ ରହିବା, ଅସମୟରେ ଶୋଇବା—ଏହି ଛଅ ଗୋଟି କଥା ସ୍ତ୍ରୀମାନଙ୍କ ପାଇଁ ମନୁ ବଡ଼ ଦୋଷ ବୋଲି କହିଛନ୍ତି । ଏଣୁ ସମସ୍ତ ସ୍ତ୍ରୀଙ୍କୁ ସାବଧାନତାର ସହ ଏଗୁଡ଼ିକଠାରୁ ନିଜକୁ ରକ୍ଷା କରି ରହିବା ଉଚିତ ।

୨୩. ସ୍ତ୍ରୀମାନଙ୍କୁ  ନିଜ ସ୍ୱାମୀଙ୍କ ଅତିରିକ୍ତ ଅନ୍ୟପୁରୁଷର ଦର୍ଶନ, ସ୍ପର୍ଶ, ଭାଷଣ, ଚିନ୍ତନ ଓ ତା' ସହ ଏକାନ୍ତବାସ ଆଦି ମଧ୍ୟ କରିବା ଉଚିତ ନୁହେଁ ।

୨୪. ବିବାହିତା ସ୍ତ୍ରୀ ପାଇଁ ପାତିବ୍ରତ୍ୟ ଧର୍ମ ସମାନ କିଛି ନାହିଁ । ଏଣୁ ମନ, ବାଣୀ ଓ କର୍ମରେ ପତିସେବାପରାୟଣ ହେବା ଉଚିତ ।

୨୫. ସ୍ତ୍ରୀପାଇଁ ପତିପରାୟଣତା ହିଁ ମୁଖ୍ୟ ଧର୍ମ । ଏହା ବ୍ୟତୀତ ଅନ୍ୟ ସବୁ ଧର୍ମ ଗୌଣ ଅଟେ ।

୨୬. ସ୍ତ୍ରୀମାନଙ୍କୁ ପତି ଆଜ୍ଞା ବିନା ଯଜ୍ଞ, ବ୍ରତ, ଉପବାସ ଆଦି କିଛି ମଧ୍ୟ ନ କରିବା ଉଚିତ । ସ୍ତ୍ରୀ କେବଳ ପତିର ସେବା-ଶୁଶ୍ରୂଷାରେ ହିଁ ଉତ୍ତମ ଗତି ପାଇଥାଏ ଏବଂ ସ୍ୱର୍ଗଲୋକରେ ଦେବତାମାନେ ମଧ୍ୟ ତା'ର ମହିମା ଗାନ କରନ୍ତି ।

୨୭. ଯେଉଁ ସ୍ତ୍ରୀ ପତିର ଆଜ୍ଞା ବିନା ବ୍ରତ, ଉପବାସ ଆଦି କରେ, ସେ ନିଜ ସ୍ୱାମୀର ଆୟୁ ହରଣ କରେ ଓ ନିଜେ ନରକକୁ ଯାଏ ।

୨୮. ପତିର ଆଜ୍ଞା ବିନା ଯଜ୍ଞ, ଦାନ, ତୀର୍ଥ, ବ୍ରତ ଆଦି ମଧ୍ୟ ନ କରିବା ଉଚିତ । ଅନ୍ୟ ଲୌକିକ କର୍ମଗୁଡ଼ିକର କଥା ଅବା କ'ଣ କହିବା?

୨୯. ସ୍ତ୍ରୀ ପାଇଁ ପତି ହିଁ ତୀର୍ଥ, ପତି ହିଁ ବ୍ରତ, ପତି ହିଁ ବନ୍ଧୁ, ପତି ହିଁ ଦେବତା ଏବଂ ପରମ ପୂଜନୀୟ ଗୁରୁ ମଧ୍ୟ ପତି ଅଟେ ।

୩୦. ଯେଉଁ ସ୍ତ୍ରୀମାନେ ଅନ୍ୟକୁ ଗୁରୁ କରନ୍ତି, ସେମାନେ ଘୋର ନରକକୁ ପ୍ରାପ୍ତ ହୁଅନ୍ତି । ଯେଉଁ ଲୋକେ ପରସ୍ତ୍ରୀଙ୍କ ଗୁରୁ ହୁଅନ୍ତି, ଅର୍ଥାତ୍ ପରସ୍ତ୍ରୀମାନଙ୍କୁ ନିଜର ଶିଷ୍ୟା କରନ୍ତି, ସେମାନେ ଠକ ଅଟନ୍ତି । ସେହି ଶିଷ୍ୟା କରୁଥିବା ଗୁରୁମାନଙ୍କ ପ୍ରତି ମାତା ଓ ଭଉଣୀମାନଙ୍କୁ ସାବଧାନ ରହିବା ଉଚିତ ।

୩୧. ଯେଉଁ ସ୍ତ୍ରୀ ମନ ମଧ୍ୟରେ ପତିର ହିତ-ଚିନ୍ତନ କରେ, ବାଣୀରେ ସତ୍ୟ, ପ୍ରିୟ ଓ ହିତ ବଚନ କହେ, ଶରୀରରେ ତାର ସେବା ଏବଂ ଆଜ୍ଞା ପାଳନ କରେ, ସେହି ସ୍ତ୍ରୀ ପତିବ୍ରତା ଅଟେ ।

୩୨. ଯିଏ ପତିବ୍ରତା ହୋଇଥାଏ, ସେ ନିଜ ପତିର ଇଚ୍ଛା ବିରୁଦ୍ଧରେ କୌଣସି ଆଚରଣ କରେ ନାହିଁ।

୩୩. ପତିବ୍ରତା ସ୍ତ୍ରୀ ପତି ସହିତ ଉତ୍ତମ ଗତିକୁ ପ୍ରାପ୍ତ ହୋଇଥାଏ ଓ ତାକୁ ହିଁ ଲୋକେ ସାଧ୍ୱୀ କହନ୍ତି।

୩୪. ସ୍ତ୍ରୀମାନଙ୍କ ପାଇଁ ଇହଲୋକ ଓ ପରଲୋକରେ ପତି ହିଁ ନିତ୍ୟ ସୁଖର ଦାତା ଅଟେ।

୩୫. ସ୍ତ୍ରୀମାନଙ୍କୁ କିଞ୍ଚିନ୍ମାତ୍ର ପତିର ପ୍ରତିକୂଳ ଆଚରଣ କରିବା ଉଚିତ ନୁହେଁ। ଯେଉଁ ନାରୀ ଏପରି କରେ ଅର୍ଥାତ୍ ପତିର ଇଚ୍ଛା ଓ ଆଜ୍ଞା ବିରୁଦ୍ଧରେ ଯାଏ, ତାର ଇହଲୋକରେ ନିନ୍ଦା ହୁଏ ଓ ମଲା ପରେ ସେ ନୀଚଗତିକୁ ପ୍ରାପ୍ତ ହୋଇଥାଏ।

୩୬. ଯେଉଁ ନାରୀ ଅନ୍ୟ ପୁରୁଷଙ୍କ ସହ ରମଣ କରେ, ତାର ଘୋର ଦୁର୍ଗତି ହୋଇଥାଏ।

୩୭. ସ୍ତ୍ରୀମାନଙ୍କୁ ଜାଗ୍ରତ ଅବସ୍ଥାର କଥା କ'ଣ କହିବା, ସ୍ୱପ୍ନରେ ମଧ୍ୟ ପରପୁରୁଷର ଚିନ୍ତା କରିବା ଉଚିତ ନୁହେଁ।

୩୮. ପତି ଯଦି କାମୁକ ହୋଇଥାଏ, ସୁଶୀଳତାଶୂନ୍ୟ ଏବଂ ଗୁଣରହିତ ହୋଇଥାଏ, ତା'ହେଲେ ମଧ୍ୟ ସାଧ୍ୱୀ ଅର୍ଥାତ୍ ପତିବ୍ରତା ତାଙ୍କୁ ଈଶ୍ୱର ସମାନ ମାନି ତାଙ୍କର ସର୍ବଦା ସେବା ଶୁଶ୍ରୂଷା କରିବା ଉଚିତ।

୩୯. ଯେଉଁ ନାରୀ ନିଜର ପତିଙ୍କୁ ଅପମାନ କରେ, ସେ ପରଲୋକରେ ଯାଇ ଘୋର ଦୁଃଖ ଭୋଗ କରେ।

୪୦. ବାଳକମାନଙ୍କ ହୃଦୟରେ ବୀରତା, ଧୀରତା, ଗମ୍ଭୀରତା ଉତ୍ପନ୍ନ ହେବା ଭଳି ଓଜ ଓ ତେଜପୂର୍ଣ୍ଣ ସତ୍ୟ ବଚନଦ୍ୱାରା ସେମାନଙ୍କୁ ଆଦେଶ ଦେବା ଉଚିତ। ସେମାନଙ୍କ ଠାରେ ବୁଦ୍ଧି ଓ ଜ୍ଞାନ ଉତ୍ପତ୍ତି ପାଇଁ ସତ୍‌ଶାସ୍ତ୍ର ଶିକ୍ଷା ଦେବା ଉଚିତ।

୪୧. ବାଳକମାନଙ୍କୁ ଗାଳି ଆଦି ଦେବା ଉଚିତ ନୁହେଁ, କାରଣ ଗାଳି ଦେବା ସେମାନଙ୍କୁ ଗାଳି ଶିଖାଇବା ଅଟେ।

୪୨. ସର୍ବଦା ସତ୍ୟ, ପ୍ରିୟ, ସୁନ୍ଦର ଓ ମଧୁର ହିତକର ବଚନ ହିଁ ବହୁତ ସ୍ନେହରେ ଧୀର ସ୍ୱରରେ ଓ ଶାନ୍ତିରେ କହିବା ଉଚିତ।

୪୩. ବାଳକମାନଙ୍କ ଆଗରେ ପତି ସହିତ ହାସ-ପରିହାସ ଏବଂ ଗୋଟିଏ

ଶଯ୍ୟାରେ ଶୋଇବା-ବସିବା ଆଦି କେବେ କରିବା ଉଚିତ ନୁହେଁ। ଯେଉଁ ସ୍ତ୍ରୀମାନେ ଏପରି କରନ୍ତି, ସେମାନେ ନିଜ ପିଲାଙ୍କୁ ବ୍ୟଭିଚାରର ଶିକ୍ଷା ଦିଅନ୍ତି।

୪୪. ପରପୁରୁଷର ଦର୍ଶନ, ସ୍ପର୍ଶ, ଏକାନ୍ତବାସ ଏବଂ ତାର ଚିତ୍ରର ଚିନ୍ତା ମଧ୍ୟ କରିବା ଉଚିତ ନୁହେଁ।

୪୫. ଲୋଭ, ମୋହ, ଶୋକ, ହିଂସା, ଦମ୍ଭ, କପଟ ଆଦିରୁ ସର୍ବଦା ନିଜକୁ ଦୂରେଇ ରଖିବା ଉଚିତ। ଉତ୍ତମ ଗୁଣ ଏବଂ ଆଚରଣ ସମୂହ ପାଇଁ ଗୀତା, ରାମାୟଣ, ଭାଗବତ, ମହାଭାରତ ଏବଂ ସାଧ୍ୱୀ ସ୍ତ୍ରୀମାନଙ୍କ ଚରିତ୍ର ପଢ଼ିବାର ଅଭ୍ୟାସ ରଖିବା ଉଚିତ ଓ ସେହି ଅନୁସାରେ ପିଲାଙ୍କୁ ଶିକ୍ଷା ଦେବା ଉଚିତ।

୪୬. ପିଲାମାନଙ୍କୁ ଖାଇବା-ପିଇବା ଇତ୍ୟାଦି ବିଷୟରେ ଉତ୍ତମ ଶିକ୍ଷା ଦେବା ଉଚିତ। ମଦାଳସା ନିଜ ବାଳକଙ୍କୁ ବାଲ୍ୟାବସ୍ଥାରେ ହିଁ ଜ୍ଞାନ ଓ ବୈରାଗ୍ୟର ଶିକ୍ଷା ଦେଇ ସେମାନଙ୍କୁ ଉଚ୍ଚକୋଟୀର କରି ଦେଇଥିଲେ।

୪୭. ବାଳକଙ୍କୁ ଗହଣା ପିନ୍ଧାଇ ସଜାଇବା ଉଚିତ ନୁହେଁ। ଏହା ଦ୍ୱାରା ସ୍ୱାସ୍ଥ୍ୟର ହାନି ଏବଂ କେଉଁଠି-କେଉଁଠି ପ୍ରାଣ ପ୍ରତି ସଂକଟ ଆସି ଯାଇଥାଏ।

୪୮. ଝିଅ ଓ ପୁଅର ଖାଇବା-ପିଇବା, ସ୍ନେହ-ସରାଗରେ ଓ ବ୍ୟବହାରରେ ଭେଦଭାବ ରଖିବା ଉଚିତ ନୁହେଁ।

୪୯. ବେଶ୍ୟା, ବ୍ୟଭିଚାରିଣୀ, କଳିହୁଡ଼ୀ, ନିର୍ଲଜ୍ଜା ଓ ଦୁଷ୍ଟା ସ୍ତ୍ରୀମାନଙ୍କ ସଂସର୍ଗ କେବେ କରିବା ଉଚିତ ନୁହେଁ। କିନ୍ତୁ ସେମାନଙ୍କ ପ୍ରତି ଘୃଣା ଓ ଦ୍ୱେଷ ମଧ୍ୟ ନ କରିବା ଉଚିତ। ତାଙ୍କ ଅବଗୁଣଗୁଡ଼ିକୁ ହିଁ ଘୃଣା କରିବା ଉଚିତ।

୫୦. ବଡ଼ମାନଙ୍କର, ଦୁଃଖୀଲୋକଙ୍କର ଓ ଘରକୁ ଆସିଥିବା ଅତିଥିମାନଙ୍କର ଏବଂ ଅନାଥମାନଙ୍କର ସେବା ଉପରେ ବିଶେଷ ଧ୍ୟାନ ଦେବା ଉଚିତ।

୫୧. ଯଜ୍ଞ, ଦାନ, ତପ, ସେବା, ତୀର୍ଥ, ବ୍ରତ, ଦେବପୂଜନ ଆଦି ପତି ସହିତ ତାଙ୍କ ଆଜ୍ଞା ଅନୁସାରେ ତାଙ୍କ ସନ୍ତୋଷ ପାଇଁ ଅନୁଗାମିନୀ ହୋଇ ହିଁ କରିବା ଉଚିତ, ସ୍ୱତନ୍ତ୍ରରୂପେ ନୁହେଁ।

୫୨. ପତିର ଯେ ଇଷ୍ଟ, ସେ ସ୍ତ୍ରୀର ମଧ୍ୟ ଇଷ୍ଟ ଅଟେ। ଅତଃ ପତି କହିଥିବା ଇଷ୍ଟଦେବ ପରମାତ୍ମାଙ୍କ ନାମ ଜପ ଓ ରୂପର ଧ୍ୟାନ କରିବା ଉଚିତ।

୫୩. ଯଦି ସ୍ୱାମୀକୁ ଈଶ୍ୱରଭକ୍ତି ଭଲ ଲାଗୁ ନ ଥାଏ, ତା'ହେଲେ ବାପଘରୁ ପ୍ରାପ୍ତ ଶିକ୍ଷା ଅନୁସାରେ ମଧ୍ୟ ଈଶ୍ୱରଭକ୍ତି ଓ ବାହ୍ୟରୂପେ ଭଜନ, ସତ୍‌ସଙ୍ଗ, କୀର୍ତ୍ତନ ଆଦି ନ କରି ଗୁପ୍ତରୂପେ ମନେ ମନେ ହିଁ କର।

୫୪. ଭକ୍ତିର ମନ ସହ ବିଶେଷ ସମ୍ବନ୍ଧ ଥିବା କାରଣରୁ ଏହା ଯେତେ ଦୂର ସମ୍ଭବ ଗୁପ୍ତରୂପେ ହିଁ କରିବା ଉଚିତ, କାରଣ ଗୁପ୍ତରୂପେ କରାଯାଇଥିବା ଭକ୍ତି ବିଶେଷ ମହତ୍ତ୍ୱପୂର୍ଣ୍ଣ।

୫୫. ପତି ଯାହା କିଛି ବି କହନ୍ତୁ, ତାହା ଅକ୍ଷରେ ଅକ୍ଷରେ ପାଳନ କର, କିନ୍ତୁ ଯେଉଁ ଆଜ୍ଞା ପାଳନରେ ପତି ନରକର ଭାଗୀଦାର ହେଉଥିବେ, ତାହା ପାଳନ କରିବା ଉଚିତ ନୁହେଁ।

୫୬. ପତି ଯଦି କାମ, କ୍ରୋଧ, ଲୋଭ, ମୋହବଶତଃ ଚୋରି କିମ୍ବା କାହାରି ସହ ବ୍ୟଭିଚାର କରିବା, କାହାରିକୁ ବିଷ ପିଆଇବା, ଜୀବନରୁ ମାରିଦେବା, ଭ୍ରୂଣ-ହତ୍ୟା, ଗୋ-ହତ୍ୟା ଆଦି ଘୋର ପାପ କରିବା ପାଇଁ କହନ୍ତି, ତା'ହେଲେ ତାହା କର ନାହିଁ।

୫୭. ବିଧବା ସ୍ତ୍ରୀଙ୍କ ସେବା ଉପରେ ବିଶେଷ ଧ୍ୟାନ ଦେବା ଉଚିତ, କାରଣ ନିଜ ଧର୍ମରେ ରହୁଥିବା ବିଧବା ସ୍ତ୍ରୀ ଦେବୀ ସମାନ ଅଟେ।

୫୮. ଯେଉଁ ନାରୀ ବିଧବାକୁ କଷ୍ଟ ଦିଏ, ସେ ତାର ନିଃଶ୍ୱାସରେ ଇହଲୋକରେ ଦୁଃଖିନୀ ହୋଇଯାଏ ଓ ମଲାପରେ ନରକରେ ପଡ଼େ।

୫୯. ପିଲାମାନଙ୍କୁ ଏପରି ଶିକ୍ଷାଦେବା ଉଚିତ ଯେ ଯାହାଦ୍ୱାରା ସେମାନଙ୍କର ବେଶଭୂଷା ପ୍ରତି ପ୍ରୀତି ନ ହୋଇ ଈଶ୍ୱର ଓ ଉତ୍ତମ ଶିକ୍ଷା ଆଦି ପ୍ରତି ପ୍ରୀତି ହେବ।

୬୦. ସୌଭାଗ୍ୟବତୀ (ସଧବା) ସ୍ତ୍ରୀ ପାଇଁ ପତିସେବା ଠାରୁ ବଳି ଆଉ କୌଣସି ସାଧନ ନାହିଁ। ପତିଙ୍କୁ ଅବହେଳନା କରି ବ୍ରତ-ଉପବାସ, ତୀର୍ଥାଟନ, ଦେବ-ଦର୍ଶନ, ଗଙ୍ଗାସ୍ନାନ ଆଦି କଲେ ସ୍ତ୍ରୀର କୌଣସି ପୁଣ୍ୟ ହୁଏ ନାହିଁ।

୬୧. ପତିଙ୍କୁ ଛାଡ଼ି କୌଣସି ପୁରୁଷର ଚରଣୋଦକ ଅଥବା ଉଚ୍ଛିଷ୍ଟ ଗ୍ରହଣ କରିବା ପାପ ଅଟେ, ହୁଏତ ସେ ସାଧୁ ହୋଇ ଥାଉନା କାହିଁକି?

୬୨. ପତିବ୍ରତା ପତିକୁ ନାରାୟଣସ୍ୱରୂପ ଓ ନିଜକୁ ତାଙ୍କ ଦାସୀ ବୋଲି ମନେ କରେ। ଏହି ଭାବ ବଡ଼ ଉତ୍ତମ ଓ କଲ୍ୟାଣକାରୀ ଅଟେ।

୬୩. ପତିବ୍ରତା ସ୍ତ୍ରୀ କେବେ କୌଣସି କାମନା କରେ ନାହିଁ। ଯଦି

କରେ, ତା'ହେଲେ ନିଜ ପତିଠାରୁ ହିଁ କିଛି କାମନା କରେ, ଅନ୍ୟ କାହାରିଠାରୁ ନୁହେଁ ।



# ବିଧବାମାନଙ୍କ ପାଇଁ

୧. ପତିଙ୍କ ମୃତ୍ୟୁ ହେବା ପରେ ବିଧବା ସ୍ତ୍ରୀର କର୍ତ୍ତବ୍ୟ ଯେ ସେ ଯେଉଁପରି ପତିଙ୍କ ଜୀବିତାବସ୍ଥାରେ ତାଙ୍କ ମନୋନୁକୂଳ ଆଚରଣ କରୁଥିଲା, ସେହିପରି ତାଙ୍କ ମରିବା ପରେ ବି କରିବା ଉଚିତ । ଧର୍ମର ଏପରି ଆଚରଣ କରୁଥିବା ସ୍ତ୍ରୀ ପତି ମରିବା ପରେ ମଧ୍ୟ ସାଧ୍ୱୀ ବୋଲି କଥିତ ହୁଏ ଓ ଉତ୍ତମ ଗତିକୁ ପ୍ରାପ୍ତ ହୋଇଥାଏ ।

୨. ବିଧବା ସ୍ତ୍ରୀ ପବିତ୍ର ପୁଷ୍ପ, କନ୍ଦ, ମୂଳ ଓ ଫଳଦ୍ୱାରା ନିଜ ଶରୀର ନିର୍ବାହ କରି ପବିତ୍ରତାର ସହ ନିଜ ଜୀବନ ଅତିବାହିତ କରିବା ଉଚିତ ।

୩. ପରପୁରୁଷର ଦର୍ଶନ, ଭାଷଣ, ଚିନ୍ତନ ତ ଦୂରର କଥା, ତାର ନାମ ମଧ୍ୟ ଉଚ୍ଚାରଣ କରିବା ଅନୁଚିତ ।

୪. ପବିତ୍ର ଫୁଲ, ମୂଳ, ଫଳଦ୍ୱାରା ନିର୍ବାହ କରି ନିଜ ଦେହକୁ ଦୁର୍ବଳ ହୁଏତ କରି ଦେଉ, କିନ୍ତୁ ପତିଙ୍କ ମୃତ୍ୟୁ ପରେ ଅନ୍ୟର ନାମ ମଧ୍ୟ ନ ନେଉ ।

୫. ପତିବ୍ରତା ସ୍ତ୍ରୀମାନଙ୍କ ପକ୍ଷେ ଯାହା ସର୍ବୋତ୍ତମ ଧର୍ମ, ତାହା ଗ୍ରହୁଁଥିବା ବିଧବା ସ୍ତ୍ରୀ ମୃତ୍ୟୁ ପର୍ଯ୍ୟନ୍ତ କ୍ଷମାଯୁକ୍ତ ନିୟମପୂର୍ବକ ବ୍ରହ୍ମଚର୍ଯ୍ୟରେ ରହୁ ।

୬. ବିଧବା ସ୍ତ୍ରୀ ମାଦକ ଓ ଅପବିତ୍ର ଏବଂ କାମୋଦ୍ଦୀପକ ପଦାର୍ଥଗୁଡ଼ିକୁ କେବେ ସେବନ କରିବା ଉଚିତ ନୁହେଁ ତଥା ଘିଅ, ଦୁଧ, ଚିନି, ମସଲା ଆଦି ମଧ୍ୟ ଯେତେ ଦୂର ସମ୍ଭବ ତ୍ୟାଗ କରିବା ଉଚିତ, କାରଣ ଏଗୁଡ଼ିକ ମଧ୍ୟ ଉତ୍ତେଜକ ଦ୍ରବ୍ୟ ଅଟନ୍ତି ।

୭. ପତି ମରିବା ପରେ ମଧ୍ୟ ପତିକୁ ଯେଉଁ କାର୍ଯ୍ୟରେ ସନ୍ତୋଷ ହେଉଥିଲା, ସେହି କାର୍ଯ୍ୟ କରି ବିଧବା ସ୍ତ୍ରୀମାନଙ୍କୁ ନିଜ ସମୟ ଅତିବାହିତ କରିବା ଉଚିତ ।

୮. ବର୍ତ୍ତମାନ ସମୟରେ କେତେକ ଭାଇ, ଯେଉଁମାନଙ୍କର ଶାସ୍ତ୍ରାନୁଭବ ନାହିଁ, ବିଧବା ସ୍ତ୍ରୀମାନଙ୍କୁ ମନାଇ ତାଙ୍କର ଦ୍ୱିତୀୟ ବିବାହ କରାଇ ଦେଉଛନ୍ତି; କିନ୍ତୁ ଶାସ୍ତ୍ରମାନଙ୍କରେ କୌଣସିଠାରେ ବିଧବା-ବିବାହର ବିଧି ନାହିଁ ।

୯. ଯେଉଁ ସ୍ତ୍ରୀର ପତି ଓ ଯେଉଁ ପତିର ସ୍ତ୍ରୀ ମରିଯାଏ, ସେମାନଙ୍କୁ ବ୍ରହ୍ମଚର୍ଯ୍ୟରେ ହିଁ ରହିବା ଉଚିତ। ବ୍ରହ୍ମଚର୍ଯ୍ୟର ପାଳନ ଇହଲୋକ ଓ ପରଲୋକରେ କଲ୍ୟାଣକାରୀ, ପରମଶାନ୍ତିପ୍ରଦ ଏବଂ ଆନନ୍ଦଦାୟକ ଅଟେ।

୧୦. ଯେଉଁ ଲୋକେ ବିଧବାମାନଙ୍କୁ ବିଷୟ-ସୁଖର ପ୍ରଲୋଭନ ଦେଖାଇ ସେମାନଙ୍କ ମନକୁ ଖରାପ କରୁଛନ୍ତି, ସେମାନେ ପ୍ରକୃତରେ ସେମାନଙ୍କ ଆତ୍ମାର ପତନକାରୀ ଅଟନ୍ତି। ଅତଏବ ଆତ୍ମକଲ୍ୟାଣକାମୀ ସ୍ତ୍ରୀମାନଙ୍କୁ ସେହି ଲୋକଙ୍କ କଥା ଉପରେ କେବେ ଧ୍ୟାନ ଦେବା ଉଚିତ ନୁହେଁ।

୧୧. ଯେଉଁ ସ୍ତ୍ରୀ ଈଶ୍ୱରଙ୍କ ରହସ୍ୟକୁ ଜାଣେ, ସେ ପତିଙ୍କ ମୃତ୍ୟୁ ଘଟଣାରେ ମଧ୍ୟ ଦୁଃଖିତ ହୁଏ ନାହିଁ; କାରଣ ସେ ଭାବେ ଯେ ଈଶ୍ୱର ଯାହା କିଛି କରନ୍ତି, ତାହା ମଙ୍ଗଳ ପାଇଁ ହିଁ କରନ୍ତି।

୧୨. ଦୁଃଖରେ ମଧ୍ୟ ପ୍ରତି ପଦକ୍ଷେପରେ ଈଶ୍ୱରଙ୍କ ଦୟା ଅନୁଭବ କରୁଥିବା ସ୍ତ୍ରୀ ଈଶ୍ୱରଙ୍କୁ ଅନନ୍ୟ ଭକ୍ତି କରି ପରମଗତିକୁ ପ୍ରାପ୍ତ ହୋଇଯାଏ।

୧୩. ମାଆ-ଭଉଣୀମାନେ ଦୁଃଖ ସମୟରେ ମଧ୍ୟ ଈଶ୍ୱରୀୟ ଦୟା ଦର୍ଶନ କରି ଈଶ୍ୱରଙ୍କୁ ଅନନ୍ୟ ଭକ୍ତି କରିବା ଉଚିତ।

୧୪. ବିଧବାମାନେ ପ୍ରାତଃକାଳରେ ଶୌଚ, ସ୍ନାନ ଆଦି କରି ନିଜ ଘରେ ଏକାନ୍ତ ସ୍ଥାନରେ ଜପ, ତପ, ପୂଜା, ପାଠ, ସ୍ତୁତି, ଧ୍ୟାନ ଆଦି ଈଶ୍ୱର ଭକ୍ତି କରନ୍ତୁ। ଏହାପରେ ଗୁରୁଜନଙ୍କ ଚରଣଯୁଗଳରେ ପ୍ରଣାମ କରି ତାଙ୍କ ସେବା କରନ୍ତୁ ଏବଂ ତାଙ୍କ ଆଜ୍ଞା ଅନୁସାରେ ଗୃହକାର୍ଯ୍ୟ ଈଶ୍ୱରଙ୍କୁ ସ୍ମରଣ କରି କରନ୍ତୁ।

୧୫. ସ୍ତ୍ରୀମାନଙ୍କର ଦୃଷ୍ଟି ସ୍ୱାଭାବିକଭାବେ ପୁରୁଷମାନଙ୍କ ଆଡ଼କୁ ଚାଲିଯାଏ। ଏହାର ନିରୋଧ ପାଇଁ ବିଶେଷ ସଂଯମତା ରକ୍ଷା କରିବା ଉଚିତ। ଯଦି ସ୍ୱଭାବ ଦୋଷ କାରଣରୁ ଭୁଲରେ କୌଣସି ପୁରୁଷର ଦର୍ଶନ ହୋଇଯାଏ, ତେବେ ସେଦିନ ଗୋଟିଏ ଥର ଭୋଜନ କର ଅଥବା ଈଶ୍ୱରଙ୍କ ନାମ-ଜପ ଆହୁରି ଅଧିକ କର।

୧୬. ଶ୍ୱଶୁରାଳୟରେ ବା ବାପଘରେ ଯେଉଁଠି ବି ରହିବାକୁ ହେଉ, ନିଜ ଘରର ପୁରୁଷମାନଙ୍କ ଆଜ୍ଞାରେ ହିଁ ରହିବା ଉଚିତ। ଘରର ବାହାରକୁ ତାଙ୍କ ଆଜ୍ଞା ବିନା ଯିବା ଉଚିତ ନୁହେଁ।

୧୭. ସ୍ତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ରତା ସର୍ବଥା ନିଷିଦ୍ଧ, ସ୍ୱତନ୍ତ୍ରତା ଦ୍ୱାରା ସେମାନଙ୍କର ପତନ ହୋଇଯାଏ।

୧୮. ଯେଉଁ ସ୍ତ୍ରୀ ସ୍ୱତନ୍ତ୍ରତାପୂର୍ବକ ବାହାରେ ବୁଲେ, ସେ ଦୂଷିତ ବାତାବରଣ ପାଇ ନଷ୍ଟ-ଭ୍ରଷ୍ଟ ହୋଇଯାଏ ।

୧୯. ସ୍ତ୍ରୀମାନଙ୍କ ପାଇଁ ପତି ମରିଯିବା ପରେ ପତିଙ୍କ ଅତିରିକ୍ତ ଅନ୍ୟ କାହାକୁ ଗୁପ୍ତ ବା ପ୍ରକାଶ୍ୟରେ ଗୁରୁ କରିବା, ତାଙ୍କ ସେବା କରିବା, ଅନ୍ୟ ପୁରୁଷଙ୍କ ଉଚ୍ଛିଷ୍ଟ ଖାଇବା, ତାଙ୍କ ପୂଜା କରିବା, ଘରର ଲୋକଙ୍କୁ ଲୁଗ୍ଇ ତାଙ୍କୁ ଟଙ୍କା ଦେବା, ତାଙ୍କ ସହ ଏକାନ୍ତବାସ କରିବା ସର୍ବଥା ନିଷିଦ୍ଧ ଅଟେ । ଏହି କଥାଗୁଡ଼ିକ ପ୍ରତି ସ୍ତ୍ରୀମାନେ ବିଶେଷ ସାବଧାନ ରହି ନିଜକୁ ରକ୍ଷା କରିବା ଉଚିତ ।

୨୦. ଆଜିକାଲି ବହୁତ ସ୍ତ୍ରୀଲୋକ ମନ୍ଦିର, ତୀର୍ଥ, ଗଙ୍ଗା-ସ୍ନାନ ଓ ସତ୍‌ସଙ୍ଗ ଆଦିର ଆଳରେ ଅସଦାଚରଣ କରୁଛନ୍ତି, ଏହି ଆଳରେ ବାହାରକୁ ବାହାରିବାରୁ ସେହି ଶିଷ୍ୟ କରୁଥିବା ଠକମାନଙ୍କ କବଳରେ ପଡ଼ି ଆପଣା ଧନ, ଗହଣା ଓ ସତୀତ୍ୱକୁ ନଷ୍ଟ କରି ଦେଉଛନ୍ତି ।

୨୧. ବିଧବା ଭଉଣୀମାନଙ୍କ ପାଇଁ ଏକମାତ୍ର ଈଶ୍ୱର ହିଁ ପତି ଓ ଈଶ୍ୱର ହିଁ ଗୁରୁ ଅଟନ୍ତି ।

୨୨. ସେହି ପରମ ପୂଜନୀୟ ସର୍ବବ୍ୟାପୀ ସଗୁଣ-ନିର୍ଗୁଣରୂପୀ ପରମାତ୍ମାଙ୍କର ନିଜ ହୃଦୟରୂପୀ ମନ୍ଦିରରେ ଚିନ୍ମୟ ଦିବ୍ୟ ମନୋହର ମୂର୍ତ୍ତିର ଧ୍ୟାନ ଏବଂ ପୂଜନ କରିବା ଉଚିତ ।

୨୩. ପଲଙ୍କ, ରଙ୍ଗୀନ ବସ୍ତ୍ର, ଅଳଙ୍କାର, ବେଶସଜ୍ଜା ଏବଂ ବିଳାସବ୍ୟସନ, ସ୍ୱାଦ, ଭୋଗ୍ୟପଦାର୍ଥ, ପ୍ରମାଦ, ଆଳସ୍ୟ, ଦୁର୍ଗୁଣ ଓ ଦୁରାଗ୍ରହକୁ ସମ୍ପୂର୍ଣ୍ଣତଃ ତ୍ୟାଗ କରିଦିଅ ।

୨୪. ନୂଆ ନୂଆ ବେଶ ହେଉଥିବା ସ୍ତ୍ରୀମାନଙ୍କ ସଂସର୍ଗ ରାଗ ଓ ଦ୍ୱେଷ ରହିତ ହୋଇ ଯଥାଶକ୍ତି ତ୍ୟାଗ କର, କାରଣ ତାହା ଜ୍ଞାନ, ବୈରାଗ୍ୟ, ଈଶ୍ୱରଭକ୍ତି ଏବଂ ତପର ବାଧକ ଅଟେ ।

୨୫. ଗାଇବା, ବଜାଇବା, ନାଚିବା ତଥା ବିବାହ ଆଦି କାର୍ଯ୍ୟକ୍ରମଗୁଡ଼ିକରୁ ଦୂରେଇ ରୁହ । ତପ-ଉପବାସ ଆଦିକୁ ଯଥାବିଧି ଧାରଣ ଓ ପାଳନ କର ।

୨୬. ବେକାର କଥାବାର୍ତ୍ତା ଏବଂ ବ୍ୟର୍ଥ ଚେଷ୍ଟା କରି ନିଜର ଅମୂଲ୍ୟ ସମୟ ନଷ୍ଟ କର ନାହିଁ ।

୨୭. ମୃତ୍ୟୁକୁ ନିକଟ ଭାବି ସାରା ସମୟ ନିଜ କଲ୍ୟାଣ କାର୍ଯ୍ୟରେ ହିଁ ଲଗାଇବାକୁ ଚେଷ୍ଟା କର।

୨୮. ଧର୍ମାଚରଣପୂର୍ବକ ଜୀବନ ବିତାଉଥିବା ବିଧବା ସ୍ତ୍ରୀ ଦେବତାମାନଙ୍କ ଦ୍ୱାରା ମଧ୍ୟ ପୂଜ୍ୟ ହୋଇଥାଏ। ଏପରି ପବିତ୍ର ସ୍ତ୍ରୀମାନଙ୍କ ସେବା କରୁଥିବା ପୁରୁଷ ପବିତ୍ର ହୋଇଯାଆନ୍ତି। ଯେଉଁ ଘରମାନଙ୍କରେ ଏପରି ସ୍ତ୍ରୀଲୋକ ବାସ କରନ୍ତି, ସେହି ଘରଗୁଡ଼ିକୁ ପବିତ୍ର ମନେକରାଯାଏ।

୨୯. ବିଧବା ସ୍ତ୍ରୀ ଯଦି ଘର ବାହାରେ କୌଣସି ତୀର୍ଥ ବା ଦେବାଳୟକୁ, ଗଙ୍ଗା-ସ୍ନାନ ଆଦି ପାଇଁ ଅଥବା କଥା-କୀର୍ତ୍ତନ ଆଦିକୁ ଯାଏ, ତେବେ ନିଜ ଘରର ଲୋକଙ୍କୁ ପଗ୍ଚରି ଘର ଲୋକଙ୍କ ସହିତ ଯିବା ଉଚିତ। ତାଙ୍କ ଆଜ୍ଞା ନେଇ ମଧ୍ୟ ଏକୁଟିଆ କୁଆଡ଼େ ଯିବା ଉଚିତ ନୁହେଁ।

୩୦. ବିଧବା ସ୍ତ୍ରୀକୁ ଏହା ବୁଝିବା ଉଚିତ ଯେ ଯଦି କୌଣସି ପୁରୁଷ ଆଡ଼କୁ ତା'ର ଦୃଷ୍ଟି ଗ୍ଚଲିଗଲା, ତା'ହେଲେ ତା'ର ଧର୍ମ ନଷ୍ଟ ହୋଇଗଲା।



## ପ୍ରତ୍ୟେକ ସ୍ତ୍ରୀର କର୍ତ୍ତବ୍ୟ

୧. ସ୍ତ୍ରୀ-ଜାତି ପାଇଁ ସ୍ୱତନ୍ତ୍ର ନ ହେବା ହିଁ ସର୍ବୋପରି ମଙ୍ଗଳଦାୟକ ଅଟେ।

୨. ପୂର୍ବକାଳର ଋଷି-ମହାତ୍ମାଗଣ ସ୍ତ୍ରୀମାନଙ୍କୁ ପୁରୁଷଙ୍କ ଅଧୀନରେ ରହିବାକୁ ଯେଉଁ ଆଜ୍ଞା ଦେଇଛନ୍ତି, ତାହା ତାଙ୍କ ପାଇଁ ବହୁତ ହିତକର ଜଣାପଡ଼େ। ଋଷିଗଣ ତ୍ରିକାଳଜ୍ଞ ଓ ଦୂରଦର୍ଶୀ ଥିଲେ। ସେମାନଙ୍କ ଅନୁଭବ ବହୁତ ପ୍ରଶଂସନୀୟ ଥିଲା।

୩. ସ୍ତ୍ରୀମାନେ ସ୍ୱତନ୍ତ୍ର ହୋଇଗଲେ ଅତ୍ୟାଗ୍ଚର, ଅନାଗ୍ଚର, ବ୍ୟଭିଗ୍ଚର ଆଦି ଦୋଷଗୁଡ଼ିକର ବୃଦ୍ଧି ହୋଇ ଦେଶ, ଜାତି, ସମାଜର ବହୁତ କ୍ଷତି ହୋଇପାରେ।

୪. ବାଲ୍ୟାବସ୍ଥାରେ ନାରୀ ପିତା ଅଧୀନରେ, ଯୌବନାବସ୍ଥାରେ ପତି ଅଧୀନରେ ଓ ପତି ମରି ଗଲେ ପୁତ୍ର ଅଧୀନରେ ରହିବା ଉଚିତ; ସ୍ୱତନ୍ତ୍ରଭାବେ କେବେ ରହିବା ଉଚିତ ନୁହେଁ।

୫. ପୂର୍ବକାଳରେ କନ୍ୟାମାନେ ବାପ ଘରେ ହିଁ ମାତା-ପିତା, ଭାଇ-

ଭଉଣୀ ଆଦି ନିଜ ଘରର ଲୋକଙ୍କ ଦ୍ୱାରା ଏବଂ ବିବାହ ପରେ ଶାଶୁଘରେ ପତି, ଶାଶୁ ଆଦିଙ୍କ ଦ୍ୱାରା ଉତ୍ତମ ଶିକ୍ଷା ପାଇ ଆସୁଥିଲେ। ଆଜିକାଲି ପରି କୁଆଡ଼େ ବାହାରକୁ ଯାଇ ଶିକ୍ଷା ନେଉ ନ ଥିଲେ।

୬. ଏବେ ମଧ୍ୟ ସ୍ତ୍ରୀମାନଙ୍କ ପାଇଁ ଶିକ୍ଷା ଓ ବିଦ୍ୟାପ୍ରାପ୍ତ କରିବାର ବ୍ୟବସ୍ଥା ନିଜ ଘରମାନଙ୍କରେ ହିଁ କରିବା ପାଇଁ ଚେଷ୍ଟା କରିବା ଉଚିତ।

୭. ଶାସ୍ତ୍ରମାନଙ୍କରେ ପ୍ରତ୍ୟେକ ମନୁଷ୍ୟ ପାଇଁ ଆତ୍ମୋଦ୍ଧାରର ପ୍ରାୟ ତିନୋଟି ଉପାୟ କୁହାଯାଇଛି—କର୍ମ, ଉପାସନା ଏବଂ ଜ୍ଞାନ। ସ୍ତ୍ରୀମାନେ ନିଷ୍କାମ ଭାବେ କର୍ମ ଓ ଉପାସନା (ଈଶ୍ୱର-ଭକ୍ତି) କରି ଖୁବ୍ ଶୀଘ୍ର ଆତ୍ମାର ଉଦ୍ଧାର କରି ପାରନ୍ତି।

୮. ସ୍ୱାର୍ଥ ତ୍ୟାଗ କରି ସମସ୍ତ ସ୍ତ୍ରୀଙ୍କୁ ଉତ୍ତମ କର୍ମଗୁଡ଼ିକର ଆଚରଣ ନିଷ୍କାମଭାବେ କରିବା ଉଚିତ। ନିଷ୍କାମ ଭାବରେ ସଦାଚାର ପାଳନ କଲେ ଶୀଘ୍ର ହିଁ ଆତ୍ମାର କଲ୍ୟାଣ ହୋଇପାରେ। ଯେଉଁ ଆଚରଣ ଦ୍ୱାରା ଯାବତୀୟ ଜୀବଙ୍କୁ ସୁଖ ମିଳେ, ତାହାର ନାମ ସଦାଚାର ଅଟେ।

୯. ବାପଘର ଓ ଶାଶୁଘର ଲୋକଙ୍କ ସହ ଉତ୍ତମ ଆଚରଣର ଅଭ୍ୟାସ କରନ୍ତୁ।

୧୦. ଘରେ ଯେଉଁ ବୟସ୍କ ସ୍ତ୍ରୀ-ପୁରୁଷ ଥିବେ, ତାଙ୍କ ସେବା, ତାଙ୍କ ଠାରୁ ଶିକ୍ଷା ଗ୍ରହଣ, ପ୍ରତିଦିନ ତାଙ୍କ ଚରଣରେ ପ୍ରଣାମ ଓ ତାଙ୍କ ଆଜ୍ଞା ପାଳନ କରନ୍ତୁ।

୧୧. ସମବୟସ୍କମାନଙ୍କ ସହ ସ୍ନେହ ବ୍ୟବହାର କରି ପ୍ରୀତି ବଢ଼ାନ୍ତୁ ଓ ଛୋଟମାନଙ୍କୁ ବାତ୍ସଲ୍ୟଭାବରେ ପାଳନ କରନ୍ତୁ ଏବଂ ଖାଦ୍ୟ-ପେୟ, ନେବା-ଦେବା ଆଦିରେ ସ୍ୱାର୍ଥ ତ୍ୟାଗ କରି ସମସ୍ତଙ୍କ ସହ ସମ ବ୍ୟବହାର କରନ୍ତୁ।

୧୨. ମାତା, ପିତା, ଭାଇ-ଭାଉଜ ନ ଦେଲେ ଏବଂ ତାଙ୍କ ଇଚ୍ଛା ବିନା କୌଣସି ଜିନିଷ ମଧ୍ୟ ନିଜପାଇଁ ବା ନିଜ ପିଲାଙ୍କ ପାଇଁ ମାଗ ନାହିଁ କି ନେବା ପାଇଁ ଇଚ୍ଛା କର ନାହିଁ; କାରଣ ସଂସାରରେ ତ୍ୟାଗ ହିଁ ସବୁଠୁଁ ବଳି ମୂଲ୍ୟବାନ୍, ମହତ୍ତ୍ୱପୂର୍ଣ୍ଣ ଓ ମୁକ୍ତିଦାୟକ ଅଟେ।

୧୩. ଯଦି ନିଜ ବ୍ୟକ୍ତିଗତ ଜିନିଷ ବାପଘର ବା ଶାଶୁଘରର ଲୋକେ କାମରେ ଲଗାନ୍ତି, ତେବେ ନିଜର ସୌଭାଗ୍ୟ ଭାବି ଆନନ୍ଦ ଅନୁଭବ କରନ୍ତୁ।

୧୪. ଅନ୍ୟମାନଙ୍କ ଅଧିକାରର ଜିନିଷ ନିଜେ ନେବା ପାଇଁ କେବେ ଇଚ୍ଛା ଏବଂ ଚେଷ୍ଟା କରନ୍ତୁ ନାହିଁ।

୧୫. ସାନଯାଆ, ବଡ଼ଯାଆ, ନଣନ୍ଦ ଆଦିଙ୍କର ପିଲାମାନଙ୍କୁ ନିଜ ପିଲାଙ୍କ ଅପେକ୍ଷା ମଧ୍ୟ ଅଧିକ ଗେଲ ଓ ସ୍ନେହ କରନ୍ତୁ।

୧୬. ଯଦି ପିତ୍ରାଳୟ ବା ଶ୍ୱଶୁରାଳୟରେ ସେବା ଶୁଶ୍ରୂଷା, ରୋଷେଇ, ଲିପାପୋଛା, ବାସନ ମାଜିବା ଆଦି ଗୃହକାର୍ଯ୍ୟ, ସିଲେଇ, ଗୁନ୍ଥାଗୁନ୍ଥି, ସୂତା କାଟିବା ଆଦି ଶିଳ୍ପକାର୍ଯ୍ୟ ଅଥବା ଆଉ କୌଣସି କଠିନ କାମ କରିବାକୁ ପଡ଼େ, ତେବେ ସର୍ବପ୍ରଥମେ ଉତ୍ସାହର ସହିତ ତାକୁ ପରମ ଧର୍ମ ଭାବି ନିଜେ କରିବାକୁ ଚେଷ୍ଟା କରନ୍ତୁ। ଅନ୍ୟ କେହି କରୁ ଥାଆନ୍ତି ତ ତାଙ୍କ ଠାରୁ ସ୍ନେହ, ଆଗ୍ରହପୂର୍ବକ ଛଡ଼ାଇ ଆଣି ନିଜେ ହିଁ କରିବାକୁ ଚେଷ୍ଟା କରନ୍ତୁ। 'କାମରେ ଆଗୁଆ ଓ ଭୋଗରେ ପଛୁଆ' ଉକ୍ତିକୁ ଅକ୍ଷରେ ଅକ୍ଷରେ ସତ୍ୟ କରି ଦେଖାଇ ଦିଅନ୍ତୁ।

୧୭. ଗୃହକାର୍ଯ୍ୟ, ସେବା, ଉପକାର କରି କାହାରିକୁ କୁହନ୍ତୁ ନାହିଁ କି ତାକୁ ମନେ ରଖନ୍ତୁ ନାହିଁ।

୧୮. ସମସ୍ତଙ୍କୁ ଯଥାଯୋଗ୍ୟ ମାନ-ବଡ଼ିମା-ପ୍ରତିଷ୍ଠା ଦିଅନ୍ତୁ, କିନ୍ତୁ ସେ ସବୁକୁ ମୁକ୍ତିରେ ବାଧକ ଭାବି ନିଜେ ସ୍ୱୀକାର କରନ୍ତୁ ନାହିଁ।

୧୯. ନିଜ ଦ୍ୱାରା କରାଯାଇଥିବା ମଙ୍ଗଳ ଓ ଅନ୍ୟଙ୍କ ଦ୍ୱାରା କରାଯାଇଥିବା ଅମଙ୍ଗଳକୁ ଭୁଲି ଯାଆନ୍ତୁ, କିନ୍ତୁ ଅନ୍ୟଦ୍ୱାରା କରାଯାଇଥିବା ଉପକାରକୁ କେବେ ହେଲେ ଭୁଲନ୍ତୁ ନାହିଁ।

୨୦. ସମସ୍ତଙ୍କ ସହ ପ୍ରେମ ବ୍ୟବହାର ଓ ସମ୍ମାନପୂର୍ବକ କଥାବାର୍ତ୍ତା କରନ୍ତୁ।

୨୧. ନିଜପ୍ରତି ଅନୁଚିତ ଆଚରଣକାରୀ ସହ ଈର୍ଷ୍ୟା, କ୍ରୋଧ, ଦ୍ୱେଷ, ଘୃଣା ଆଦି ନ କରି ତା'ର ମଙ୍ଗଳ କରିବାର ଚେଷ୍ଟା କରନ୍ତୁ।

୨୨. ଭୋଜନାଦି ବିଷୟରେ ସ୍ତ୍ରୀମାନଙ୍କୁ ଏପରି ବ୍ୟବହାର କରିବା ଉଚିତ—ବଳିବୈଶ୍ୱଦେବ ହେବା ପରେ ପ୍ରଥମେ ଅତିଥିକୁ ଭୋଜନ କରାଇବା ଉଚିତ। ତା'ପରେ ବୃଦ୍ଧ, ବାଳକ, ରୋଗୀ, ଗର୍ଭିଣୀ ସ୍ତ୍ରୀ, ପ୍ରସୂତିକା, ନବବିବାହିତା ବଧୂ ଆଦିଙ୍କୁ ଭୋଜନ କରାଇବା ଉଚିତ। ପୁଣି ଘରର ପୁରୁଷଙ୍କୁ, ତା'ପରେ ଗ୍ୱକର ଆଦି ସମସ୍ତଙ୍କୁ ଭୋଜନ କରାଇ ଶେଷରେ

ନିଜେ ଭୋଜନ କରିବା ଉତ୍ତମ। ଗୃହିଣୀ ସ୍ତ୍ରୀମାନଙ୍କ ପାଇଁ ଏହା ହିଁ ଯଜ୍ଞଶିଷ୍ଟ ବା ଯଜ୍ଞର ଅବଶେଷ।

୨୩. ପ୍ରସ୍ତୁତ ହୋଇଥିବା ପଦାର୍ଥଗୁଡ଼ିକ ମଧ୍ୟରୁ ଭଲ ଭଲ ପଦାର୍ଥ ନିଜ ପାଇଁ ବା ନିଜ ଘରର ଲୋକଙ୍କ ପାଇଁ ପ୍ରଥମରୁ କାଢ଼ି ରଖିଦେଲେ ସେଗୁଡ଼ିକୁ ଯଜ୍ଞଶିଷ୍ଟ କୁହାଯିବ ନାହିଁ, ବରଂ ତାହା ପୂର୍ବସଞ୍ଚିତ ହୋଇଥିବାରୁ ବିଷ ସମାନ ଅଟେ। କାଢ଼ି ରଖାଯାଇଥିବା ଖାଦ୍ୟ ଗ୍ରହଣକାରୀ ପାପର ଭାଗୀଦାର ହୁଅନ୍ତି।

୨୪. ଅତିଥି-ସେବା ଗୃହସ୍ଥର ଏକ ମୁଖ୍ୟ ଧର୍ମ ବୋଲି ସ୍ୱୀକାର କରାଯାଇଛି। କରାଯାଇଥିବା ଖର୍ଚ୍ଚ ଓ ପରିଶ୍ରମ ସମାନ ହେଲେ ମଧ୍ୟ ପ୍ରେମପୂର୍ବକ କରାଯାଇଥିବା ସେବା ବଡ଼ ଲାଭଦାୟକ ହୋଇଥାଏ ଏବଂ ବିନା ପ୍ରେମରେ କରାଯାଇଥିବା ସେବା ପରିଶ୍ରମ ମାତ୍ର ଅଟେ।

୨୫. ଶାସ୍ତ୍ରମାନଙ୍କରେ କୁହାଯାଇଥିବା କଥା ଅନୁସାରେ କାର୍ଯ୍ୟ କଲେ ହିଁ ସ୍ତ୍ରୀର କଲ୍ୟାଣ ହୋଇଥାଏ।

୨୬. ସାଧ୍ୱୀ ସ୍ତ୍ରୀମାନେ ଏହି କଥା ଉପରେ ବିଶେଷ ଧ୍ୟାନ ଦେବା ଉଚିତ ଯେ ଘରେ କୌଣସି ପ୍ରକାର କଳହ ବା ଝଗଡ଼ା ନ ହେଉ, କାରଣ କଳହ ସାକ୍ଷାତ୍ କଳିଯୁଗର ମୂର୍ତ୍ତି ଅଟେ। ଯେଉଁଠି କଳହ ହୁଏ, ସେଠାରେ କ୍ରୋଧ ଓ କ୍ଲେଶ ବୃଦ୍ଧି ହୋଇ ବଡ଼ ଅନର୍ଥ ହୋଇଯାଏ।

୨୭. କାଳ, କ୍ଲେଶ, କଳ୍ପନା, କଳି—ଏ ସବୁର ଉତ୍ପତ୍ତି କଳହରୁ ହୋଇଥାଏ। ଏଥିପାଇଁ ସୁଖ ଚାହୁଁଥିବା ସ୍ତ୍ରୀମାନେ ଏହାକୁ ନିଜ ଘରେ ପୂରାଇ ଦେବା ଉଚିତ ନୁହେଁ।

୨୮. କଳହ ଧନ, ଧର୍ମ, ଗୁଣ, ଶରୀର ଓ କୁଳନାଶକାରୀ ଅଗ୍ନି ଅଟେ। ଏହା ଇହଲୋକ ଓ ପରଲୋକରେ କଳଙ୍କ ଲଗାଇଥାଏ। ଏଥିପାଇଁ ଏହାର ସୂତ୍ରପାତ ହେଲା କ୍ଷଣି ହିଁ ପ୍ରେମପୂର୍ଣ୍ଣ, ବିନୟଯୁକ୍ତ, ହିତକାରକ, ସରଳ, ମଧୁର ବଚନରୂପୀ ଜଳ ଛିଞ୍ଚି ଏହି କଳହ ଅଗ୍ନିକୁ ଶୀଘ୍ର ଲିଭାଇବାର ଚେଷ୍ଟା କରିବା ଉଚିତ।

୨୯. ସ୍ତ୍ରୀମାନଙ୍କୁ ଯେତେ ଦୂର ସମ୍ଭବ ଘରର ସବୁ କାମ ନିଜେ କରିବାକୁ ଚେଷ୍ଟା କରିବା ଉଚିତ।

୩୦. ଘରର କାମ ପାଇଁ ଯେତେଦୂର ସମ୍ଭବ ବାହାରର କୌଣସି

ସ୍ତ୍ରୀ-ପୁରୁଷର ଆବଶ୍ୟକତା ନ ପଡ଼େ ଏପରି ଚେଷ୍ଟାରେ ସବୁବେଳେ ରହିବା ଉଚିତ।

୩୧. ଯେଉଁ ଘରେ ରୋଷେଇଆ ଆଦିଦ୍ୱାରା ରୋଷେଇ ଏବଂ ଗ୍ରକର ଆଦିଦ୍ୱାରା ଗୃହକାର୍ଯ୍ୟ କରାଯାଏ, ସେହି ଘର ସ୍ତ୍ରୀମାନେ ପ୍ରାୟ କର୍ମହୀନା ଓ ନିର୍ଲଜ୍ଜା ହୋଇଯାଆନ୍ତି।

୩୨. ସ୍ତ୍ରୀମାନଙ୍କୁ ଥିଏଟର, ସିନେମା, ବିବାହ, ସଭା, ସମୁଦାୟ, ହୋରି ଆଦିରେ ପୁରୁଷ ସମାଜ ଆଗରେ ଅଥବା ସ୍ତ୍ରୀଙ୍କ ଗହଣରେ ଗାଇବା, ବଜାଇବା, ନାଚିବା, ମନ୍ଦଗୀତ ଗାଇବା ଆଦି କାର୍ଯ୍ୟ କରିବା ଅନୁଚିତ, କାରଣ ଏପରି କାର୍ଯ୍ୟଦ୍ୱାରା ତାଙ୍କଠାରେ କାମୋଦ୍ଦୀପନା ସୃଷ୍ଟି ହୋଇ ସେମାନଙ୍କର ନଷ୍ଟ-ଭ୍ରଷ୍ଟ ହେବାର ସମ୍ଭାବନା ଅଛି।

୩୩. ଦିଅର, ଭଣଜା, ଜୋଇଁ, ନଣଦେଇ, ଭିଣୋଇ ଆଦିଙ୍କ ସହ ଏକାନ୍ତରେ ବା ସମୁଦାୟରେ ହାସ-ପରିହାସ, ଅଶ୍ଳୀଳ କଥା କହିବା ମହାପାପ ଅଟେ।

୩୪. ଏକୁଟିଆ କୌଣସି ପୁରୁଷ ଲୋକ ସହିତ ଏକାନ୍ତ ସ୍ଥାନରେ କେବେ ବାର୍ତ୍ତାଳାପ ବା ବାସ କରିବା ଉଚିତ ନୁହେଁ, ସେ ହୁଏତ ପିତା, ଭାଇ, ପୁତ୍ର ହିଁ ହୁଅନ୍ତୁ ନା କାହିଁକି। କାରଣ ଇନ୍ଦ୍ରିୟ ସମୁଦାୟ ବଳବାନ୍ ଅଟନ୍ତି। ସେମାନେ ବୁଦ୍ଧିମାନ୍‌ମାନଙ୍କୁ ମଧ୍ୟ ମୋହିତ କରିଦିଅନ୍ତି। ଏଣୁ ସର୍ବଦା ସାବଧାନ ରହିବା ଉଚିତ।

୩୫. ସମତା ହିଁ ଅମୃତ ଓ ବିଷମତା ହିଁ ବିଷ ଅଟେ। ଏଥିପାଇଁ ସମସ୍ତଙ୍କ ସହ ସମତାର ବ୍ୟବହାର କରିବା ଉଚିତ।

୩୬. ଯେଉଁ ଜିନିଷ ତୁମେ ନିଜ ପାଇଁ ଉତ୍ତମ ଭାବୁଛ, ତାହାକୁ ସମସ୍ତଙ୍କ ପାଇଁ ଉତ୍ତମ ବୋଲି ଭାବି ଯାହାକୁ ଦେବା ଉଚିତ, ଭେଦଭାବ ନ ରଖି ସମଭାବରେ ଦିଅ।

୩୭. ଯେଉଁ ଜିନିଷକୁ ତୁମେ ନିଜ ପାଇଁ ଖରାପ ଭାବୁଛ, ତାକୁ ସମସ୍ତଙ୍କ ପାଇଁ ଖରାପ ଭାବି କାହାରିକୁ କେବେ ଦିଅ ନାହିଁ।

୩୮. ଘରେ ପ୍ରସ୍ତୁତ ବା ବାହାରୁ ଅଣାଯାଉଥିବା ଖାଦ୍ୟ ପଦାର୍ଥ ଭେଦଭାବ ଛାଡ଼ି ସମସ୍ତଙ୍କୁ ସମଭାବରେ ପ୍ରଦାନ କର।

୩୯. ଚୋରି, ବ୍ୟଭିଚାର, ମିଥ୍ୟା, କପଟ ଆଦି ମନ୍ଦ କର୍ମଗୁଡ଼ିକୁ ସମ୍ପୂର୍ଣ୍ଣତଃ

ତ୍ୟାଗ କରି ଦାନ, ତପ, ତୀର୍ଥ, ବ୍ରତ, ସେବା ଓ ଗୃହକାର୍ଯ୍ୟ ଆଦି ଉତ୍ତମ କର୍ମମାନଙ୍କର ଫଳ ଓ ଆସକ୍ତିକୁ ତ୍ୟାଗ କରି ନିଷ୍କାମଭାବେ ଅଭିମାନ ରହିତ ହୋଇ କର୍ତ୍ତବ୍ୟ ମନେକରି କର ।

୪୦. ଗୃହକାର୍ଯ୍ୟ ହେବା ନ ହେବାରେ ହର୍ଷ-ଶୋକ କର ନାହିଁ ।

୪୧. ସଂଯୋଗବଶତଃ ଅନୁକୂଳ ଓ ପ୍ରତିକୂଳ ପଦାର୍ଥ ଏବଂ ସୁଖ-ଦୁଃଖାଦି ପ୍ରାପ୍ତି ହେଲେ ସେଥିରେ ମଧ୍ୟ ରାଗ-ଦ୍ୱେଷ କର ନାହିଁ । ତାକୁ ଈଶ୍ୱରଙ୍କ ପ୍ରେରିତ ପୁରସ୍କାର ଭାବି ପ୍ରସନ୍ନଚିତ୍ତରେ ସ୍ୱୀକାର କର । ଏ ପ୍ରକାର କରିବାଦ୍ୱାରା ସମତ୍ୱଭାବର ପ୍ରାପ୍ତି ହୁଏ ଏବଂ ସମତା ହିଁ ଅମୃତ ଅଟେ ।

୪୨. ନିନ୍ଦା-ସ୍ତୁତି, ମାନ-ଅପମାନ ତଥା ଶତ୍ରୁ ଓ ମିତ୍ରଙ୍କଠାରେ ସମବୁଦ୍ଧି ରଖ । ଏପ୍ରକାର କରିବାଦ୍ୱାରା ସମସ୍ତ ପାପ, କ୍ଳେଶ ଓ ଦୁଃଖସମୂହରୁ ମୁକ୍ତ ହୋଇ ପରମ ଶାନ୍ତି ଓ ପରମ ଆନନ୍ଦ ପ୍ରାପ୍ତି ହୋଇଥାଏ ।

୪୩. ଈଶ୍ୱରଙ୍କ ଭକ୍ତିରେ ସମସ୍ତଙ୍କର ଅଧିକାର ଅଛି । ଏଣୁ ସବୁ ସ୍ତ୍ରୀ ନିଷ୍କାମଭାବେ ଈଶ୍ୱରଙ୍କୁ ଅନନ୍ୟ ଭକ୍ତି କରିବା ଉଚିତ । ଈଶ୍ୱରଙ୍କ ଶରଣ ଏବଂ ଅନନ୍ୟ ଭକ୍ତିଦ୍ୱାରା ତାଙ୍କ ଦର୍ଶନ, ତାଙ୍କ ତତ୍ତ୍ୱଜ୍ଞାନ ଓ ତାଙ୍କ ପ୍ରାପ୍ତି ହୋଇପାରେ ।

୪୪. ସ୍ତ୍ରୀମାନେ ପ୍ରାତଃକାଳରେ ଉଠି, ଈଶ୍ୱର ସ୍ମରଣ କରି ଶୌଚ-ସ୍ନାନ ଆଦି କ୍ରିୟାସାରି ପିତ୍ରାଳୟରେ ମାତା-ପିତା ଆଦିଙ୍କର, ଶ୍ୱଶୁରାଳୟରେ ଶାଶୁ-ଶ୍ୱଶୁର, ପତି ପ୍ରଭୃତି ଗୁରୁଜନଙ୍କ ପୂଜା, ତାଙ୍କୁ ନମସ୍କାର ଓ ତାଙ୍କ ସେବା କାର୍ଯ୍ୟ କରିବା ଉଚିତ । ତା'ପରେ ଈଶ୍ୱରଙ୍କୁ ଭକ୍ତି କରିବା ଉଚିତ ।

୪୫. ଏକାନ୍ତ ସ୍ଥାନରେ ଆସନ ଉପରେ ବସି ପବିତ୍ର ହୋଇ କରୁଣା ଓ ପ୍ରେମଭାବପୂର୍ବକ ପ୍ରଫୁଲ୍ଲିତ ମନରେ ଭଗବାନଙ୍କୁ ସ୍ତୁତି କରି ସେହି ସର୍ବବ୍ୟାପୀ ସର୍ବଶକ୍ତିମାନ୍ ବିଜ୍ଞାନାନନ୍ଦଘନ ନିରାକାର ପରମାତ୍ମାଙ୍କ ଧ୍ୟାନ କରିବା ଉଚିତ ।

୪୬. ଯଦି ସାକାର ଭଗବାନଙ୍କ ପ୍ରତି ପ୍ରେମ ଥାଏ, ତେବେ କରୁଣା ଭାବଦ୍ୱାରା ତାଙ୍କୁ ଆହ୍ୱାନ କରି ପ୍ରଭାବ ଓ ଗୁଣ ସହିତ ତାଙ୍କ ସ୍ୱରୂପକୁ ଧ୍ୟାନ କରିବା ଉଚିତ । ଯଦି ନିରାକାର ସହିତ ସାକାରର ଧ୍ୟାନ କରାଯାଏ ତେବେ ତ ଆହୁରି ଉତ୍ତମ ।

୪୭. ଧ୍ୟାନାବସ୍ଥାରେ ଭଗବାନଙ୍କୁ ଆସିଥିବା ଭାବି ପ୍ରେମରେ ମୁଗ୍ଧ ହୋଇଯିବା ଉଚିତ । ପରେ ସାବଧାନ ହେଲେ ମାନସିକରୂପେ ଅର୍ଥାତ୍ ମନରେ ସମସ୍ତ ସାମଗ୍ରୀଗୁଡ଼ିକୁ ଯୋଗାଡ଼ କରି ଭଗବାନଙ୍କ ପୂଜା କରିବା ଉଚିତ ।

୪୮. ମନରେ ହିଁ ଭଗବାନଙ୍କୁ ଭୋଗ ଲଗାଇ ତାଙ୍କ ଆଳତି କରିବା ଉଚିତ। ପୁଣି ମନେ ମନେ ଭଗବାନଙ୍କ ସ୍ତୁତି ଗାନ କରି ଭଗବାନଙ୍କ ଠାରେ ଅନନ୍ୟ ପ୍ରେମ ହେବା ପାଇଁ ଓ ତାଙ୍କର ସାକ୍ଷାତ୍ ଦର୍ଶନ ପାଇଁ ତାଙ୍କୁ ପ୍ରାର୍ଥନା କରିବା ଉଚିତ।

୪୯. ତା'ପରେ ଗୁଣ ଓ ପ୍ରଭାବ ସହିତ ଭଗବାନଙ୍କ ସ୍ୱରୂପର ଚିନ୍ତନ କରି ଭଗବାନଙ୍କ ଆଜ୍ଞାନୁସାରେ ହିଁ ଗୃହକାର୍ଯ୍ୟ କରିବାର ଅଭ୍ୟାସ କରିବା ଉଚିତ, କାରଣ ଗ୍ରଉଳ ପେଷିବା, ରୋଷେଇ କରିବା, ଲିପାପୋଛା କରିବା, ବାସନ ମାଜିବା ସମୟରେ ଅର୍ଥାତ୍ ପ୍ରତ୍ୟେକ କାମ କରିବା ସମୟରେ ତାଙ୍କ ନାମ-ଜପ ଓ ସ୍ୱରୂପର ଚିନ୍ତନ କରିବାର ଚେଷ୍ଟା ହିଁ ଈଶ୍ୱର ଭକ୍ତି ଅଟେ।

୫୦. ସ୍ତ୍ରୀମାନେ ପିଲାମାନଙ୍କ ରକ୍ଷା ପାଇଁ ଦେବୀ-ଦେବତାଙ୍କ ପାଖରେ ମାନସିକ କରିବା, ବାଳ ପକାଇବା ଆଦି କରନ୍ତି, କିନ୍ତୁ ଏହା ବିଗ୍ର୍ଯ୍ୟ ଯେ ମୁଣ୍ଡର ବାଳ ଦେବତାଙ୍କ ନିକଟରେ ଅର୍ପଣ କରିବା ଧର୍ମ ନୁହେଁ, କି କୌଣସି ଦେବୀ-ଦେବତା ଏଥିରେ ପ୍ରସନ୍ନ ହୁଅନ୍ତି ନାହିଁ। ଏହା କେବଳ ସ୍ତ୍ରୀମାନଙ୍କର ମୂର୍ଖତା ଅଟେ।

୫୧. ବାଳକଙ୍କ ସଂସ୍କାର ଯଥାଶକ୍ତି ଶାସ୍ତ୍ରୋକ୍ତି ରୀତି ଅନୁସାରେ କରିବାର ଚେଷ୍ଟା କରିବା ଉଚିତ।

୫୨. ବହୁତ ଶାସ୍ତ୍ରୋକ୍ତ କର୍ମ ସରଳା ସ୍ତ୍ରୀମାନେ ନଷ୍ଟ କରି ଅନେକ କୁରୀତିର ପ୍ରଚଳନ କରେଇ ଦେଇଛନ୍ତି, ଯଥା—ବିବାହସମୟରେ ମିଛୁ-ମିଛୁକା ବାହାଘର କରିବା, ଅଙ୍ଗା-ପରିହାସ କରିବା, କୁମ୍ଭାର ଚକ ପୂଜିବା, ଜୁଆ ଖେଳିବା, କୁତ୍ସିତ ଗୀତ ଗାଇବା ଇତ୍ୟାଦି। ଏଗୁଡ଼ିକୁ ସୁଧାରିବା ଉଚିତ।

୫୩. ସ୍ତ୍ରୀମାନଙ୍କର ଓଢ଼ଣା ଦେବା ଲଜ୍ଜାର ଏକ ଅଙ୍ଗ ଅଟେ।

୫୪. ସ୍ୱାସ୍ଥ୍ୟ ବିଗିଡ଼ିବାରେ ସ୍ତ୍ରୀଙ୍କର ଅକର୍ମଣ୍ୟତା ପ୍ରଧାନ ଅଟେ, ଓଢ଼ଣା ନୁହେଁ।

୫୫. ସ୍ତ୍ରୀଙ୍କର ସଭ୍ୟତା ଲଜ୍ଜାରେ ନିହିତ, ପରଦା ଉଠାଇ ଦେଇ ପୁରୁଷଙ୍କ ସହିତ ବୁଲା-ଚଲା କରିବାରେ, ଥିଏଟର-ସିନେମା ଆଦି ଦେଖିବାରେ ନୁହେଁ।

୫୬. ସତୀତ୍ୱ ହିଁ ନାରୀର ଭୂଷଣ ଅଟେ।

୫୭. ବର୍ତ୍ତମାନର ଯୁଗ ସ୍ତ୍ରୀମାନଙ୍କ ପାଇଁ ବିଶେଷ ଭୟାନକ ଅଟେ।

ସେମାନଙ୍କ ପାଇଁ ପଦେ ପଦେ ବିପଦ ଅଛି । ଏପରି ପରିସ୍ଥିତିରେ ସେମାନଙ୍କ ସତୀତ୍ୱର ରକ୍ଷା ପାଇଁ ବିଶେଷ ସାବଧାନତାର ଆବଶ୍ୟକତା ଅଛି ।

୫୮. ସତୀ ଶିରୋମଣି ଜଗଜ୍ଜନନୀ ଜାନକୀ ହନୁମାନଙ୍କ ପରି ଆଦର୍ଶ ଯତି ତଥା ପରମ ଭକ୍ତଙ୍କ ସଙ୍ଗରେ ଲଙ୍କାରୁ ଶ୍ରୀରାମଙ୍କ ପାଖକୁ ଯିବାକୁ ଏଇଥିପାଇଁ ଅସ୍ୱୀକାର କରିଦେଲେ ଯେ ସେ ଜାଣି ଶୁଣି କୌଣସି ପରପୁରୁଷକୁ ସ୍ପର୍ଶ କରିବାକୁ ଚାହୁଁ ନ ଥିଲେ, ହୁଏତ ସେ ନିଜର ପୁତ୍ର ହେଉନା କାହିଁକି?

୫୯. ଯେଉଁ ସ୍ତ୍ରୀ ଘରେ ଖାଦ୍ୟପେୟ ସମ୍ବନ୍ଧରେ ଭେଦଭାବ ରଖେ, ସେ ମଲେ ଚେମଣିଆ ହୁଏ, ଏପରି କଥା ଶାସ୍ତ୍ରମାନଙ୍କରେ ଲେଖାଯାଇଛି । ଏଥିପାଇଁ ସ୍ତ୍ରୀମାନେ ଘରେ ଛୋଟ-ବଡ଼ ସମସ୍ତଙ୍କୁ ଏକା ପ୍ରକାରର ଖାଦ୍ୟ ପରଷିବା ଉଚିତ, କାହାରିକୁ ଉତ୍କୃଷ୍ଟ ବା କାହାକୁ ନିକୃଷ୍ଟ ନୁହେଁ ।

୬୦. ଯେଉଁ ସ୍ତ୍ରୀ ଅନ୍ୟକୁ ସମ୍ମାନ ଦିଏ ଓ ପ୍ରଶଂସା କରେ ଏବଂ ସମସ୍ତଙ୍କ ସହ ବିନୟ ଓ ପ୍ରେମପୂର୍ଣ୍ଣ ବ୍ୟବହାର କରେ, ତା' ଉପରେ ଭଗବାନ ଖୁବ୍ ଶୀଘ୍ର ପ୍ରସନ୍ନ ହୁଅନ୍ତି ଏବଂ ତା'ର ଅହଂକାର ତଥା କଠୋରତା ନଷ୍ଟ ହୋଇଥାଏ ।

୬୧. ଘରେ ସ୍ନେହ-ସଂପର୍କ ବଢ଼ାଇବା ପାଇଁ ସ୍ତ୍ରୀଙ୍କୁ ସମସ୍ତଙ୍କ ସହ ହସି ହସି କଥା କହିବା ଉଚିତ । ସମସ୍ତଙ୍କ ସହ ବିନୟପୂର୍ବକ ବ୍ୟବହାର କରିବା ଉଚିତ । ଯଦି କେହି ତାଙ୍କ ଉପରେ ରାଗେ, ତେବେ ମଧ୍ୟ ତାଙ୍କୁ ପ୍ରସନ୍ନତାର ସହ ହସି ହସି ମଧୁର ଉତ୍ତର ଦେବା ଉଚିତ । ମିଷ୍ଟଭାଷଣ ସ୍ତ୍ରୀଙ୍କର ପ୍ରଧାନ ଗୁଣ ଅଟେ ।

୬୨. ସ୍ତ୍ରୀମାନେ ନିଜ ଘରେ ରହି ସମସ୍ତ ସାଧନ କରନ୍ତୁ । ଅନ୍ୟ କେଉଁଠିକୁ ଗଲେ ନିଜ ଘରର ଲୋକଙ୍କ ସହ ଯାଆନ୍ତୁ । ଏକୁଟିଆ କୁଆଡ଼େ ଯାଆନ୍ତୁ ନାହିଁ ।



## କନ୍ୟାମାନଙ୍କ କର୍ତ୍ତବ୍ୟ

୧. କନ୍ୟାମାନଙ୍କୁ ପ୍ରାତଃକାଳରେ ଉଠି ଈଶ୍ୱର ସ୍ମରଣ, ଶୌଚ, ସ୍ନାନ କରିବା ପରେ ମାତା, ପିତା, ଭାଇ, ଭାଉଜ ଆଦି ଘରର ପୂଜ୍ୟମାନଙ୍କୁ ନମସ୍କାର-ପ୍ରଣାମ ଆଦି କରିବା ଏବଂ ସେମାନଙ୍କଠାରୁ ଉତ୍ତମ ବିଦ୍ୟା ପଢ଼ିବା

ଓ ଉତ୍ତମ ଶିକ୍ଷା ଗ୍ରହଣ କରିବା ଉଚିତ। ତାଙ୍କ ଆଜ୍ଞା ପାଳନ ତଥା ତାଙ୍କ ସେବା, ସିଲେଇ, ଗୁନ୍ଥା-ଗୁନ୍ଥି ବା ବୁଣା-ବୁଣି, ସୂତା କାଟିବା ଆଦି ଗୃହକାର୍ଯ୍ୟ ଓ ଶିଳ୍ପକାର୍ଯ୍ୟ ଶିଖିବା ତଥା ଗୃହ-ଶୁଶ୍ରୂଷା କରିବା ଉଚିତ।

୨. ଶାଶୁଘରକୁ ଗଲେ ସମସ୍ତଙ୍କ ସହ କିପରି ସଦ୍‌ବ୍ୟବହାର ବା ସେବା-ଶୁଶ୍ରୂଷା କରିବାକୁ ହେବ ଏ ସମସ୍ତ ବିଷୟରେ ନିଜ ଘରର ଲୋକଙ୍କ ଉପଦେଶ ଓ ଚରିତ୍ରରୁ ଶିକ୍ଷା ଗ୍ରହଣ କରିବା ଉଚିତ।

୩. ମନ୍ଦ ଝିଅ-ପୁଅଙ୍କ ସଂସର୍ଗ ନ କରିବା ଏବଂ କାହାରି ସହିତ ମାର-ଧର, ଲଢ଼େଇ-ଝଗଡ଼ା, ଗାଳି-ଗୁଲଜ ଏବଂ ଦୁର୍ବ୍ୟବହାର ନ କରିବା ଓ ପୁଅମାନଙ୍କ ସହ ଖେଳିବା-ଡେଇଁବା ନ କରିବା ଉଚିତ।

୪. ଉତ୍ତମ ଆଚରଣ, ସୁଶୀଳ ସ୍ୱଭାବଯୁକ୍ତ ସ୍ତ୍ରୀ ଓ ଝିଅଙ୍କ ସଙ୍ଗ ହେବା ଉଚିତ।

୫. ବ୍ୟର୍ଥ କଥୋପକଥନ, ଅନ୍ୟର ନିନ୍ଦା, ବ୍ୟର୍ଥ ଚେଷ୍ଟା, ଗ୍ୱ, ଭାଙ୍ଗ ଆଦି ମାଦକ ଦ୍ରବ୍ୟଗୁଡ଼ିକର ସେବନ ଇତ୍ୟାଦି ମନ୍ଦ ବ୍ୟସନସମୂହର ଅଭ୍ୟାସ କରିବା ଉଚିତ ନୁହେଁ।

୬. ବିସ୍କୁଟ, ବରଫ, ସୋଡ଼ାପାଣି, ଲେମୋନେଡ୍, ଏଲୋପ୍ୟାଥିକ ଔଷଧ ଆଦି ସେବନ କରିବା ଉଚିତ ନୁହେଁ।

୭. ଏଲୋପ୍ୟାଥିକ ଔଷଧରେ ରସୁଣ, ପିଆଜ, ମଦ, ମାଂସ, ଚର୍ବି, ରକ୍ତ ଓ ଅଣ୍ଡା ଆଦିର ପ୍ରାୟ ମିଶ୍ରଣ ହୋଇଥାଏ। ଏହାଦ୍ୱାରା ଧର୍ମ, ଧନ ଓ ସ୍ୱାସ୍ଥ୍ୟର କ୍ଷତି ହୋଇଥାଏ।

୮. ଖଟା, ଗ୍ୱଟ୍ ଆଦି ଚଟପଟିଆ ଖାଦ୍ୟ, ପାନ, ଗୁଆ ପ୍ରଭୃତିର ଅଭ୍ୟାସ କରିବା ଅନୁଚିତ।

୯. ବାଲ୍ୟକାଳରୁ ହିଁ ହାତବୁଣା ଦେଶୀଲୁଗା ପିନ୍ଧିବା ଏବଂ କାଚ ଆଦିର ପବିତ୍ର ଚୁଡ଼ି ପିନ୍ଧିବା ଅଭ୍ୟାସ କରିବା ଉଚିତ। ବିଦେଶୀ ଓ ମିଲରେ ତିଆରି ଲୁଗା ଏବଂ ଲାଖ ତଥା ହାତୀ-ଦାନ୍ତରେ ତିଆରି ଚୁଡ଼ି ବ୍ୟବହାର କରିବା ଉଚିତ ନୁହେଁ।

୧୦. ଲାଖ ଚୁଡ଼ି ତିଆରିରେ ବହୁତ ହିଂସା ହୁଏ ଓ ସେଗୁଡ଼ିକ ଅପବିତ୍ର।

୧୧. ଖାଇବା, ପିଇବା ଓ ଖେଳକୁଦ ଆଦିରେ ମନ ନ ଲଗାଇ ବୁଦ୍ଧି,

ଜ୍ଞାନ ଓ ବିବେକ ଆଦିର ବୃଦ୍ଧି ପାଇଁ ବିଦ୍ୟା ଅଧ୍ୟୟନ ଏବଂ ଧାର୍ମିକ ପୁସ୍ତକଗୁଡ଼ିକୁ ଶୁଣିବା ଓ ପଢ଼ିବାର ଅଭ୍ୟାସ କରିବା ଉଚିତ।

୧୨. ଶରୀର, ଲୁଗାପଟା ଓ ଘରକୁ ପବିତ୍ରତା ପାଇଁ ପରିଷ୍କାର ରଖିବାକୁ ଚେଷ୍ଟା କରିବା ଆବଶ୍ୟକ।

୧୩. ମନକୁ ପବିତ୍ର କରିବା ପାଇଁ ଅହିଂସା, ସତ୍ୟ ଓ ବ୍ରହ୍ମଚର୍ଯ୍ୟ ଆଦି ଉତ୍ତମ ଆଚରଣଗୁଡ଼ିକୁ ପାଳନ କରିବା ଉଚିତ।

୧୪. ଶରୀରରେ ବଳ ବଢ଼ାଇବା ପାଇଁ ବାସନ-କୁସନ ମାଜିବା, ଘର ଝାଡ଼ିବା, ବାଟଣ ବାଟିବା, ଗ୍ୱଉଳ ଚୂରିବା, ପାଣି ଆଣିବା, ଗୁରୁଜନଙ୍କର ସେବା-ଶୁଶ୍ରୂଷା କରିବା ଆଦି ପରିଶ୍ରମ କାମ କରିବା ଉଚିତ। କନ୍ୟାମାନଙ୍କ ପାଇଁ ଏହା ହିଁ ଉତ୍ତମ ବ୍ୟାୟାମ ଅଟେ। ଏହାଦ୍ୱାରା ଶରୀରରେ ବଳ ବୃଦ୍ଧି ହୁଏ ଏବଂ ମନରେ ପବିତ୍ରତା ଆସେ।

୧୫. ଶାରୀରିକ ଓ ମାନସିକ କଷ୍ଟ ସହିବା ଆଦି ଅଭ୍ୟାସ କରିବା ଉଚିତ।

୧୬. ଅନ୍ୟଦ୍ୱାରା କୁହାଯାଇଥିବା କଟୁ ଓ ଅପ୍ରିୟ ବଚନ ସମୂହରେ ମଧ୍ୟ ଉପଦେଶ ଖୋଜିବା ଉଚିତ।

୧୭. ଦେବୀ-ଦେବତାମାନଙ୍କର ପୂଜା ତଥା ସାଧୁ-ମହାତ୍ମା, ଜ୍ଞାନୀ ଓ ବ୍ରାହ୍ମଣମାନଙ୍କର ସଦୈବ ସତ୍କାର କରିବା ଉଚିତ।



# ଭଗବତ୍‌ପ୍ରାପ୍ତି

୧. ଭଗବତ୍‌ପ୍ରାପ୍ତି କଷ୍ଟସାଧ୍ୟ ଓ ସୁଖସାଧ୍ୟ ମଧ୍ୟ। ଯେଉଁମାନେ କଷ୍ଟସାଧ୍ୟ ମାନନ୍ତି, ତାଙ୍କ ପାଇଁ କଷ୍ଟସାଧ୍ୟ ଅଟେ। ଯେଉଁମାନେ ସୁଖସାଧ୍ୟ ମାନନ୍ତି, ତାଙ୍କପାଇଁ ସୁଖସାଧ୍ୟ ଅଟେ।

୨. ଭଗବାନଙ୍କ ଠାରେ ଯେଉଁମାନଙ୍କର ଶ୍ରଦ୍ଧା ଓ ପ୍ରେମ କମ୍ ଅଛି, ସେମାନଙ୍କ ପାଇଁ ଭଗବତ୍‌ପ୍ରାପ୍ତି କଷ୍ଟସାଧ୍ୟ ଅଟେ। ଯେଉଁମାନଙ୍କର ଭଗବାନଙ୍କ ଠାରେ ପ୍ରେମ ଓ ବିଶ୍ୱାସ ଅଛି, ତାଙ୍କ ପାଇଁ ଭଗବତ୍‌ପ୍ରାପ୍ତି ସୁଲଭ।

୩. ଭଗବତ୍‌ପ୍ରାପ୍ତିରେ ଶ୍ରଦ୍ଧା ଓ ପ୍ରେମ ହିଁ ପ୍ରଧାନ ଅଟେ।

୪. ନିତ୍ୟ ନିରନ୍ତର ଚିନ୍ତନ କରୁଥିବା ଭକ୍ତଙ୍କ ପାଇଁ ଭଗବତ୍ପ୍ରାପ୍ତି ସୁଲଭ ଏବଂ ସୁଖସାଧ୍ୟ ଅଟେ।

୫. ଭଗବାନ କହିଛନ୍ତି ଯେ, ତାଙ୍କୁ ପାଇବାର ସୁଲଭ ଉପାୟ ହେଲା— ତାଙ୍କୁ ନିରନ୍ତର ଚିନ୍ତନ କରିବା। ଯେଉଁ ମନୁଷ୍ୟ କୌଣସି କାର୍ଯ୍ୟକୁ ଅସମ୍ଭବ ମାନନ୍ତି ନାହିଁ, ତାଙ୍କ ପାଇଁ କଷ୍ଟସାଧ୍ୟ କାର୍ଯ୍ୟ ମଧ୍ୟ ସୁଖସାଧ୍ୟ ହୋଇଯାଏ।

୬. କୌଣସି କାର୍ଯ୍ୟ ଯେତେ କଠିନ ଓ ପ୍ରଯତ୍ନସାଧ୍ୟ ହେଉନା କାହିଁକି ତାକୁ ଅସାଧ୍ୟ ମାନି ଛାଡ଼ି ଦେବା ନିଜର କାପୁରୁଷତା ଓ ମୂର୍ଖତାର ପରିଚୟ।

୭. ନେପୋଲିୟନ ସାଂସାରିକ ବିଜୟ ପାଇଁ ଯେପରି ଚେଷ୍ଟା କରିଥିଲେ, ଠିକ୍ ସେହିପରି କଲ୍ୟାଣକାମୀ ଭାଇମାନଙ୍କୁ ବହୁତ ଉତ୍ସାହର ସହିତ ଭଗବତ୍ପ୍ରାପ୍ତି ପାଇଁ ତତ୍ପର ହୋଇ ସାଧନା କରିବାକୁ ଚେଷ୍ଟା କରିବା ଉଚିତ।

୮. ଭଗବାନଙ୍କ ସମସ୍ତ ଦିବ୍ୟ ବିଗ୍ରହମାନଙ୍କର ଦର୍ଶନ ତାଙ୍କରି ଦୟାରେ ଚର୍ମଚକ୍ଷୁ ଦ୍ୱାରା ମଧ୍ୟ ହୋଇପାରେ। ହଁ, ଯେଉଁ ଚର୍ମଚକ୍ଷୁରେ ଭଗବାନଙ୍କ ଦର୍ଶନ ହୋଇଥାଏ, ତାହାକୁ ପବିତ୍ର ହେବା ଦୃଷ୍ଟିରୁ ଆମେ ଦିବ୍ୟ କହି ପାରିବା।

୯. ଦର୍ଶନ ହୋଇଗଲା ପରେ ମଧ୍ୟ ପ୍ରଭୁଙ୍କୁ ଚିହ୍ନିଲେ ହିଁ ମନୁଷ୍ୟର ସମସ୍ତ ପାପ ନଷ୍ଟ ହୁଏ ଏବଂ ସେ ପରମପଦର ଅଧିକାରୀ ହୁଏ।

୧୦. ମୃତ୍ୟୁ ସମୟରେ ଯେକୌଣସି ଭାବରେ ଭଗବାନଙ୍କ ସ୍ମରଣ ହୋଇଗଲେ ଜୀବର ମୁକ୍ତି ହୋଇଯାଏ, ଏହା ଭଗବାନଙ୍କର ବିଶେଷ ନିୟମ ଅଟେ। ଏହା ଭିତରେ ତାଙ୍କର ଅତିଶୟ ଦୟା ପୂରି ରହିଛି।

୧୧. ଶେଷ ସମୟରେ କେବଳ ଭଗବାନଙ୍କ ନାମ ସ୍ମରଣଦ୍ୱାରା ହିଁ ଯେବେ ମନୁଷ୍ୟର କଲ୍ୟାଣ ହୋଇଯାଏ, ତେବେ ସାକ୍ଷାତ୍ ଦର୍ଶନ ଅଥବା ସ୍ପର୍ଶ ଦ୍ୱାରା କାହାରି ମୁକ୍ତି ହେବାରେ ଆଶ୍ଚର୍ଯ୍ୟର କଥା ଅବା କ'ଣ ଅଛି?

୧୨. ଭଗବାନଙ୍କୁ ଭଗବାନଙ୍କ ରୂପେ ଦେଖିଲେ ମନୁଷ୍ୟ କଲ୍ୟାଣଭାଜନ ହୋଇଯାଏ।

୧୩. ପରଶମଣି ଲୁହାକୁ ସୁନା କରି ଦିଏ ସତ, କିନ୍ତୁ ପରଶମଣି କରିପାରେ ନାହିଁ; ମାତ୍ର ଭଗବାନଙ୍କୁ ଭଗବାନଙ୍କ ରୂପରେ ଦେଖିଲେ ମନୁଷ୍ୟ ଭଗବତ୍ସ୍ୱରୂପ ହିଁ ହୋଇଯାଏ, ସେ ଅନ୍ୟକୁ ମଧ୍ୟ ଭଗବତ୍ସ୍ୱରୂପ କରାଇପାରେ।

୧୪. ଏହି ଘୋର କଳିଯୁଗରେ ଭଗବାନଙ୍କ ପ୍ରାପ୍ତି ଅନ୍ୟ ଯୁଗ ଅପେକ୍ଷା ଆହୁରି ସହଜରେ ହୋଇଯାଏ।

୧୫. ପରମାନନ୍ଦମୟ ପରମାତ୍ମାଙ୍କ ପ୍ରାପ୍ତିରୂପ ମୁକ୍ତି ଭାଗ୍ୟରୁ ମିଳେ ନାହିଁ କି ପୁରୁଷାର୍ଥଦ୍ୱାରା ମିଳେ ନାହିଁ, ମିଳେ ମହାପୁରୁଷଙ୍କ ଦୟାଯୋଗୁଁ। ଯାହା ଉପରେ ଭଗବାନଙ୍କ ଦୟା ହୁଏ, ତାହାରି ଉପରେ ମହାପୁରୁଷଙ୍କର ଦୟା ହୋଇଥାଏ।

୧୬. ଭଗବାନଙ୍କ ପ୍ରାପ୍ତି ଭଗବାନଙ୍କର ଦୟାରେ ହିଁ ହୋଇଥାଏ।

୧୭. ଯେଉଁ ପୁରୁଷ ପରମାତ୍ମାଙ୍କ ପ୍ରାପ୍ତି ଭାଗ୍ୟରେ ଥିଲେ ହୁଏ ବୋଲି ସ୍ୱୀକାର କରେ, ସେ ଅକର୍ମଣ୍ୟ ଓ ଅଳସୁଆ ଅଟେ।

୧୮. ଯେଉଁ ପୁରୁଷ ପରମାତ୍ମାଙ୍କ ପ୍ରାପ୍ତିକୁ ନିଜ ପୁରୁଷାର୍ଥସାଧ୍ୟ ବୋଲି ମନେ କରେ, ସେ ମଧ୍ୟ ଅଭିମାନରେ ପଡ଼ି ପତିତ ହୋଇଯାଏ।

୧୯. ଯେ ଈଶ୍ୱରଙ୍କ ଶରଣାପନ୍ନ ହୋଇ ନିଜକୁ ନିମିତ୍ତ କରି ଉତ୍ସାହର ସହିତ ପ୍ରସନ୍ନଚିତ୍ତରେ, ବିରକ୍ତ ନ ହୋଇ, କଟିବଦ୍ଧ ରହି, ଈଶ୍ୱରଙ୍କ ବଳ ଓ ଭରସା ଉପରେ ଈଶ୍ୱର ପ୍ରାପ୍ତି ପାଇଁ ଚେଷ୍ଟା କରେ, ତାହାରି ପୁରୁଷାର୍ଥ ଈଶ୍ୱରଙ୍କ ଦୟାରୁ ସଫଳ ହୁଏ।

୨୦. ଈଶ୍ୱରସ୍ମରଣ ଠାରୁ ବଳି ଈଶ୍ୱରପ୍ରାପ୍ତିର କୌଣସି ସୁଲଭ ସାଧନ ଅନ୍ୟ କିଛି ନାହିଁ।

୨୧. ପ୍ରତି ମୁହୂର୍ତ୍ତରେ ନିମ୍ନ ମତେ ସାଧନା କରିବାକୁ ଚେଷ୍ଟା କର—

**(ପ୍ରତ୍ୟାହାର)**—ଇନ୍ଦ୍ରିୟଗୁଡ଼ିକ ନିଜ ନିଜ ବିଷୟସମୂହରୁ ବିରତ ହୋଇଯିବା ଫଳରେ ଚିତ୍ତ ଆତ୍ମସ୍ୱରୂପରେ ଅବସ୍ଥିତ ହୋଇଯିବା ହିଁ ପ୍ରତ୍ୟାହାର ଅଟେ। ଏହା କାମ-କ୍ରୋଧାଦିକୁ ଦୂରେଇ ଦେଇ ସ୍ଥାନ ଅଧିକାର କରିବା ଅଟେ।

**(ଧାରଣା)**—ଚିତ୍ତକୁ ପରମେଶ୍ୱରଙ୍କ ଠାରେ ସ୍ଥିର କରିବା ଧାରଣା ଅଟେ। ଏହା ସ୍ଥାନରେ ପାଦ ରୋପଣ ଅଟେ।

**(ଧ୍ୟାନ)**—ଚିତ୍ତକୁ ତୈଳଧାରା ପରି ପରମେଶ୍ୱରଙ୍କ ଠାରେ ଲଗାଇ ରଖିବା ଧ୍ୟାନ ଅଟେ। ଏହା ମୂଳଦୁଆ ପକାଇ କାନ୍ଥ ତିଆରି କରିବା ଅଟେ।

**(ସମାଧି)**—ଯେଉଁ ସ୍ଥିତିରେ ଧ୍ୟେୟଠାରୁ ଭିନ୍ନ ବସ୍ତୁର, ଏପରିକି ନିଜର ମଧ୍ୟ ଜ୍ଞାନ ନ ରହିବା ପରି ସ୍ଥିତି ହୋଇଯାଏ, ସେହି ସ୍ଥିତିର ନାମ ସମାଧି, ଏହା ଘର ତିଆରି ହୋଇଯିବା ଅର୍ଥାତ୍ ଭଗବାନଙ୍କୁ ପ୍ରାପ୍ତ ହେବା ଅଟେ।

୨୨. ସେହି କାମ ହିଁ କରିବା ଉଚିତ–ଯାହାଦ୍ୱାରା ଭଗବାନଙ୍କ ପ୍ରାପ୍ତି ଶୀଘ୍ର ହେବ।

୨୩. ଶରୀରର ବିନାଶ ଅବଶ୍ୟ ହେବ। ଏହାକୁ ରକ୍ଷା କରିବା ପାଇଁ କୌଣସି ଉପାୟ ନାହିଁ। କିନ୍ତୁ ଶରୀରର ବିନାଶରେ ଆତ୍ମାର ବିନାଶ ହୁଏ ନାହିଁ। ଏଣୁ ଶରୀର ନାଶ ହେବା ପରେ ଆତ୍ମାକୁ ପରମ-ସୁଖ, ପରମ-ଆନନ୍ଦ ମିଳୁ, ସେଇଥିପାଇଁ ରାତି-ଦିନ ଚେଷ୍ଟା କରିବା ମନୁଷ୍ୟଜନ୍ମର ଉତ୍ତମ ଫଳ ଅଟେ। ଏହାଦ୍ୱାରା ଶ୍ରୀସଚ୍ଚିଦାନନ୍ଦ ଭଗବାନଙ୍କ ପ୍ରାପ୍ତି ହୁଏ। ମନୁଷ୍ୟ ଜନ୍ମ ଏଇଥିପାଇଁ ହିଁ ମିଳିଛି। ଅତଏବ ଭଗବତ୍‌ପ୍ରାପ୍ତି ପାଇଁ ତତ୍ପର ହୋଇ ଚେଷ୍ଟା କରିବା ଉଚିତ।

୨୪. ସଂସାରର ଲୋକଙ୍କୁ ଭଗବଦ୍‌ଭକ୍ତିରେ ଲଗାଇବା ଓ ଧର୍ମ ସ୍ଥାପନା କରିବା ଉତ୍ତମ ମନୁଷ୍ୟର ପରମ କର୍ତ୍ତବ୍ୟ।

୨୫. ମନୁଷ୍ୟ-ଶରୀର ଅନେକ ଉତ୍ତମ କର୍ମଯୋଗୁଁ ମିଳେ—ଏହା କେବଳ ଭଗବତ୍‌ପ୍ରାପ୍ତିର ସାଧନ ପାଇଁ ଉଦ୍ଦିଷ୍ଟ। ମୂର୍ଖଲୋକ ହିଁ ଏହାକୁ ପତଙ୍ଗ ଭଳି ସାଂସାରିକ ଭୋଗସମୂହର ଦୁଃଖମୟୀ ଅଗ୍ନିରେ ଜଳାଇ ଭସ୍ମ କରି ଦିଅନ୍ତି।

୨୬. ଭଗବାନଙ୍କ ପ୍ରାପ୍ତି ସାଧନରେ କିଛି କଷ୍ଟ ନାହିଁ, ଭୁଲରେ କଷ୍ଟ ଜଣାଯାଏ, ଭଗବାନଙ୍କ ପ୍ରାପ୍ତିର ସାଧନ ବହୁତ ସୁଲଭ ଅଟେ।

୨୭. ସଂସାର ଆଡୁ ସବୁ ସମୟରେ ବେପରୁଆ ରହିବା ଉଚିତ। ସଂସାରର ସଂକଳ୍ପ, ଅର୍ଥାତ୍ ଚିନ୍ତନକୁ ପ୍ରତିକ୍ଷଣ ଭୁଲିଯିବାର ଚେଷ୍ଟା କରିବା ଉଚିତ ଓ ଆନନ୍ଦମୂର୍ତ୍ତି ଭଗବାନଙ୍କ ଦିବ୍ୟ ସ୍ୱରୂପକୁ ଚିତ୍ତରେ ଧରି ରଖିବା ଉଚିତ। ଏହାଦ୍ୱାରା ସଂକଳ୍ପର ତ ନାଶ ହେବ, ଭଗବାନଙ୍କ ସ୍ମୃତି ମଧ୍ୟ ସବୁବେଳେ ସ୍ଥାୟୀ ରହିବ, ଯାହାକି ଭଗବତ୍‌ପ୍ରାପ୍ତିର ପ୍ରଧାନ ସାଧନ ଅଟେ।

୨୮. ସୂର୍ଯ୍ୟୋଦୟ ପରେ ସବୁ ତାରା ଅସ୍ତ ହୋଇ ଯାଆନ୍ତି। ଏହିଭଳି ଭଗବତ୍‌ପ୍ରାପ୍ତି ହେବା ପରେ ସମସ୍ତ ସାଂସାରିକ ସୁଖଗୁଡ଼ିକ ନିଷ୍ପ୍ରଭ ହୋଇଯାଏ। କେବଳ ଏକମାତ୍ର ପରମାତ୍ମା ହିଁ ରହିଯାଏ।



# ପରମପଦପ୍ରାପ୍ତି

୧. ଯେପରି ସ୍ୱପ୍ନରୁ ଜାଗ୍ରତ ହୋଇଥିବା ପୁରୁଷ ସ୍ୱପ୍ନ ସୃଷ୍ଟିର ଉପାଦାନ-କାରଣ ଓ ନିମିତ୍ତ-କାରଣରୂପେ ନିଜକୁ ହିଁ ଦେଖେ, ସେହିପରି ସାଂଖ୍ୟଯୋଗୀ ସଂପୂର୍ଣ୍ଣ ଚରାଚର ଭୂତ-ପ୍ରାଣୀମାନଙ୍କର ଉପାଦାନ କାରଣ ଓ ନିମିତ୍ତ କାରଣରୂପେ କେବଳ ବିଜ୍ଞାନାନନ୍ଦଘନ ବ୍ରହ୍ମକୁ ହିଁ ଦେଖେ, କାରଣ ଯେବେ ଏକମାତ୍ର ବିଜ୍ଞାନାନନ୍ଦଘନ ବ୍ରହ୍ମ ଅତିରିକ୍ତ କୌଣସି ବସ୍ତୁ ହିଁ ରହେ ନାହିଁ, ତେବେ ସେ ସେହି ବ୍ରହ୍ମ-ଭିନ୍ନ କାହାକୁ କିପରି ଦେଖିବ? ଏହାହିଁ ସେହି ପରମାତ୍ମାଙ୍କ ସ୍ୱରୂପର ପ୍ରାପ୍ତି ଅଟେ । ଏହାକୁ ହିଁ ପରମପଦ, ପରମଧାମ ଓ ପରମଗତି ପ୍ରାପ୍ତି କହନ୍ତି ।

୨. କର୍ମଯୋଗୀ ଯେବେ ଭଗବାନଙ୍କ କୃପାରୁ ଭଗବାନଙ୍କ ପ୍ରଭାବକୁ ବୁଝିଯାଏ, ତେବେ ସେ ସବୁ ପ୍ରକାରେ ନିତ୍ୟ ନିରନ୍ତର ଭଗବାନ ବାସୁଦେବଙ୍କୁ ହିଁ ଭଜେ ଓ ପୁଣି ତା' ଭଜନ ପ୍ରଭାବରେ ସର୍ବତ୍ର କେବଳ ବାସୁଦେବ ହିଁ ଦେଖା ଯାଆନ୍ତି । ଏଥିପାଇଁ ସେ ବାସୁଦେବଙ୍କ ଠାରୁ କେବେ ଅଲଗା ହୋଇପାରେ ନାହିଁ । ଏହାଦ୍ୱାରା ସେ ଭଗବାନ ବାସୁଦେବଙ୍କୁ ହିଁ ପ୍ରାପ୍ତ ହୋଇଯାଏ ଓ ତା'ପାଇଁ ଏହି ସଂପୂର୍ଣ୍ଣ ସଂସାର ମଧ୍ୟ ବାସୁଦେବରେ ପରିଣତ ହୋଇଯାଏ । କେବଳ ବାସୁଦେବଙ୍କ ବ୍ୟତୀତ କୌଣସି ବସ୍ତୁ ରହେ ନାହିଁ । ସେଠାରେ ମାୟାର ଅତ୍ୟନ୍ତ ଅଭାବ ହୋଇଯାଏ । ଭକ୍ତି, ଭକ୍ତ, ଭଗବାନ ସବୁ ଗୋଟିଏ ରୂପରେ ହିଁ ପରିଣତ ହୋଇ ଯାଆନ୍ତି । ଏଥିପାଇଁ ସେହି ଭକ୍ତର ଭଗବାନଙ୍କ ଠାରୁ କୌଣସି ଅଲଗା ସ୍ଥିତି ରହେ ନାହିଁ । ସେହିପରି ତାକୁ ପରମାତ୍ମାଙ୍କ ସ୍ୱରୂପର ପ୍ରାପ୍ତି ହୋଇଯାଏ ।

୩. କେହି-କେହି ଭକ୍ତ ଅବିଦ୍ୟା ନାଶ ହେଲେ ମଧ୍ୟ ଭଗବାନଙ୍କ ରହସ୍ୟକୁ ଜାଣି ପ୍ରେମ ସମ୍ମୁଖରେ ମୁକ୍ତିକୁ ତୁଚ୍ଛ ମନେ କରନ୍ତି ଏବଂ ସେ ଭଗବାନଙ୍କୁ ସେବ୍ୟ ଓ ନିଜକୁ ସେବକ ବା ସଖା ଭାବି ଭଗବାନଙ୍କ ପ୍ରେମରସ ପାନ କରନ୍ତି, ତାଙ୍କ ପାଇଁ ଭଗବାନଙ୍କ ମାୟା ଲୀଳା ରୂପରେ ପରିଣତ ହୋଇଯାଏ । ଏଥିପାଇଁ ସେହି ପୁରୁଷ ଭଗବାନଙ୍କ ଠାରେ ତଦ୍ରୂପତାକୁ ନ ପାଇ ଭଗବାନଙ୍କ କୃପାରେ ଦିବ୍ୟ ଦେହ ଧାରଣ କରି ଅର୍ଚିର୍ମାର୍ଗ ଦ୍ୱାରା ସ୍ଥାନବିଶେଷ ଭଗବାନଙ୍କ ପରମ ଦିବ୍ୟ ନିତ୍ୟଧାମକୁ ପ୍ରାପ୍ତ ହୋଇଥାଏ, ସେଠାରେ ସେହି ଲୀଳାମୟ ଭଗବାନଙ୍କ ସହ ଲୀଳା କରି ନିତ୍ୟ ପ୍ରେମମୟ ଅମୃତ ପାନ କରେ । ସେ ଆଉ ଦୁଃଖର ଆଳୟ ଏହି ଅନିତ୍ୟ ପୁନର୍ଜନ୍ମକୁ ପ୍ରାପ୍ତ ହୁଏ ନାହିଁ ।



# ଗ୍ରାମୋଦ୍ୟୋଗ-ଅହିଂସା

୧. ଯନ୍ତ୍ର ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷରୂପେ ଅବାଧିତ ଗତିରେ ମାନବ-ପ୍ରାଣୀମାନଙ୍କର ସୁଖକୁ ସବୁବେଳେ ସଂହାର କରୁଛି । ମାନବେତର ପ୍ରାଣୀମାନଙ୍କୁ ତ ଯନ୍ତ୍ରର କିଛି ଖାତିରି ହିଁ ନାହିଁ ।

୨. ଯନ୍ତ୍ର ଏଭଳି ସଂହାରକ ପଦାର୍ଥ ଅଟେ, ଯାହା ମାନବ ସଂହାରକାରୀ ଅସୁରମାନଙ୍କ ଠାରୁ ମଧ୍ୟ କେତେକ ଅଂଶରେ ଆଗକୁ ଆଗେଇ ଗଲାଣି ।

୩. ହାତଦ୍ୱାରା ନିର୍ମିତ ବସ୍ତୁଗୁଡ଼ିକରେ ଯେଉଁ ଜୀବନୀ ଶକ୍ତି, ଯେଉଁ ଏକ ବିଶିଷ୍ଟ ସୌନ୍ଦର୍ଯ୍ୟ, ଧର୍ମର ଏକ ପବିତ୍ର ଭାବନା ରହେ, କାରଖାନାରେ ପ୍ରସ୍ତୁତ ପଦାର୍ଥଗୁଡ଼ିକରେ ଖୋଜିଲେ ତାହା ମିଳେ ନାହିଁ ।

୪. ହାତ ଚକ୍କିରେ ପେଷା ଯାଇଥିବା ଅଟା ଓ ଢଙ୍କିରେ କୁଟାଯାଇଥିବା ଚାଉଳରେ ଯେଉଁ ଜୀବନୀ ଶକ୍ତି ଥାଏ, ବଳ ଓ ଆରୋଗ୍ୟବର୍ଦ୍ଧକ ତତ୍ତ୍ୱ ଥାଏ, ମିଲ୍‌ରେ ପେଷା ଯାଇଥିବା ଅଟା ବା ମିଲ୍‌ରେ କୁଟା ଯାଇଥିବା ଚାଉଳରେ ପ୍ରାୟ ସେପରି ନ ଥାଏ ।

୫. ଯେତେ ଦୂର ସମ୍ଭବ ମିଲ୍‌ଗୁଡ଼ିକରୁ ସମ୍ବନ୍ଧ ତୁଟାଇ, ଗ୍ରାମ-ଉଦ୍ୟୋଗ ସହ ସମ୍ବନ୍ଧ ଯୋଡ଼ିବା, ସେଗୁଡ଼ିକୁ ପୁନର୍ଜୀବିତ କରିବା ଓ ସେଗୁଡ଼ିକର ବିସ୍ତାର କରିବା ପ୍ରତ୍ୟେକ ସହୃଦୟ ଦେଶବାସୀର ନିଜ ଦେଶ, ଜାତି, ଧର୍ମ ଓ ସ୍ୱାସ୍ଥ୍ୟର ଲାଭ ପାଇଁ ଅତି ଆବଶ୍ୟକ କର୍ତ୍ତବ୍ୟ ଅଟେ ।

୬. ଆଜିକାଲି ଚିନିକୁ ଚକ୍‌ଚକ୍ କରିବା ପାଇଁ ସେଥିରେ ନୀଳ ଦିଆଯାଉଛି । ଆମ ଶାସ୍ତ୍ରମାନଙ୍କ ଅନୁସାରେ ନୀଳ ସର୍ବଥା ହାନିକର, ଧର୍ମନାଶକ ଓ ଅଶୁଭକାରକ ଅଟେ ।

୭. ଯଦି ଦ୍ୱିଜ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ) ଅସାବଧାନତାବଶତଃ ନୀଳ ଭକ୍ଷଣ କରିଦିଅନ୍ତି, ତା'ହେଲେ ତିନି ଦ୍ୱିଜାତିଙ୍କ ପାଇଁ ସାମାନ୍ୟଭାବେ ଚାନ୍ଦ୍ରାୟଣ କରିବାକୁ କୁହାଯାଇଅଛି ।

୮. ପତିଦେବଙ୍କ ମୃତ୍ୟୁପରେ ଯେଉଁ ସ୍ତ୍ରୀ ନୀଳ ଦିଆ ଯାଇଥିବା ଲୁଗା ପିନ୍ଧେ, ତା' ପତି ନରକକୁ ଯାଏ । ତା'ପରେ ସେହି ସ୍ତ୍ରୀ ମଧ୍ୟ ନରକରେ ହିଁ ପଡ଼େ ।

୯. ନୀଳରେ ରଙ୍ଗାଯାଇଥିବା ଲୁଗା ପିନ୍ଧିଲେ ମନୁଷ୍ୟର ସ୍ନାନ, ଦାନ, ଜପ, ହୋମ, ସ୍ୱାଧ୍ୟାୟ, ପିତୃତର୍ପଣ ଓ ପଞ୍ଚଯଜ୍ଞ ସବୁ ନିଷ୍ଫଳ ହୋଇଯାଆନ୍ତି ।

୧୦. ଋଷିଙ୍କ ବାକ୍ୟମାନଙ୍କରୁ ନୀଳ ସର୍ବଥା ଅପବିତ୍ର ଏବଂ ପାପ ଓ ଦୁଃଖ ଉତ୍ପତ୍ତିର କାରଣ ତଥା ଅନ୍ତଃକରଣକୁ ଦୂଷିତ କରି ଅଧ୍ୟାତ୍ମମାର୍ଗରୁ ପତନ କରାଏ ବୋଲି ପ୍ରମାଣିତ।

୧୧. ମିଲ୍‌ରେ ପ୍ରସ୍ତୁତ ଲୁଗାଗୁଡ଼ିକ ପ୍ରାୟ ପଶୁମାନଙ୍କ ଚର୍ବିରେ ପାଲିସ୍ କରାଯାଏ। ସମ୍ଭବତଃ ଏପରି କୌଣସି ମିଲ୍ ନାହିଁ, ଯେଉଁଠି କି ଚର୍ବିର ବ୍ୟବହାର ହେଉ ନ ଥିବ। ଏଥିପାଇଁ ପ୍ରତିବର୍ଷ ଲକ୍ଷ ଲକ୍ଷ ନିରୀହ, ନିରପରାଧ ଓ ମୂକ ପଶୁଙ୍କର ବଧ ହେଉଛି। ଏପରି ଅବସ୍ଥାରେ ମିଲ୍ ଲୁଗାଗୁଡ଼ିକର ବ୍ୟବହାର କଲେ ଧର୍ମ, ଜାତି, ପବିତ୍ରତା, ସ୍ୱାସ୍ଥ୍ୟ, ଧନ ଆଦି ସବୁର ନାଶ ହୋଇଥାଏ।

୧୨. ଯେତେ ଦୂର ହୋଇପାରେ, ମିଲ୍‌ରେ ପ୍ରସ୍ତୁତ, ଚିନି, ଗୁଡ଼, ଅଟା ଓ ଲୁଗା ଆଦି ସମସ୍ତ ପଦାର୍ଥଗୁଡ଼ିକୁ ସର୍ବଥା ତ୍ୟାଗ କରିବା ଉଚିତ।



## ମାଂସାହାର-ନିଷେଧ

୧. ମାଂସାହାରରେ ସବୁଠୁଁ ବଳି ଦୋଷ ଏହା ଯେ କାହାରି ପ୍ରତି ହିଂସା ନ କଲେ ମାଂସ ମିଳିପାରେ ନାହିଁ ଓ କୌଣସି ଜୀବକୁ ମଧ୍ୟ କୌଣସି ପ୍ରକାରେ କିଞ୍ଚିତ୍‌ମାତ୍ର କଷ୍ଟ ଦେବା ହିଁ ପାପ। ତାକୁ ସମୂଳେ ନଷ୍ଟ କରିଦେବା ତ ମହାପାପ ଅଟେ।

୨. ନିଜ ଶରୀର-ପୋଷଣ ପାଇଁ ଅଥବା ସ୍ୱାଦ ପାଇଁ ଅନ୍ୟଜୀବଙ୍କୁ ଜୀବନରେ ମାରିଦେବାକୁ କୌଣସି ପ୍ରକାରେ ମନୁଷ୍ୟତ୍ୱ କୁହାଯାଇ ପାରିବ ନାହିଁ।

୩. ଈଶ୍ୱର ମନୁଷ୍ୟକୁ ସଂପୂର୍ଣ୍ଣ ଚରାଚର ଜଗତ୍‌ର ରକ୍ଷଣ ପାଇଁ ଉତ୍ପନ୍ନ କରିଛନ୍ତି, ଭକ୍ଷଣ ପାଇଁ ନୁହେଁ।

୪. ସଜୀବ ସବୁଜ ବୃକ୍ଷ ଓ ଧାନ, ବିରି ଆଦି ଶସ୍ୟକୁ କାଟିବାରେ କେତେକ ଅଂଶରେ ହିଂସା ହୁଏ, କିନ୍ତୁ ସଂସାରରେ କୌଣସି କାର୍ଯ୍ୟ ନିର୍ଦୋଷରେ ହୁଏ ନାହିଁ ଓ ମନୁଷ୍ୟକୁ ନିଜର ଜୀବନ-ନିର୍ବାହ ପାଇଁ ଏଗୁଡ଼ିକର ଉପଯୋଗ କରିବାକୁ ପଡ଼େ। ତଥାପି ଯେତେଦୂର ସମ୍ଭବ, ସେଗୁଡ଼ିକର ଉପଯୋଗ ମଧ୍ୟ ଆବଶ୍ୟକ ଅନୁସାରେ ଖୁବ୍ କମ୍ କରିବା ଉଚିତ।

୫. ଗଛଗୁଡ଼ିକୁ ସେଗୁଡ଼ିକର ଉନ୍ନତି ବା ବୃଦ୍ଧି ପାଇଁ ମଧ୍ୟ ଛେଦନ କରାଯାଇପାରେ, କିନ୍ତୁ ମାଂସାହାରରେ ତ କେବଳ କ୍ଷୟ ହିଁ କ୍ଷୟ ହୋଇଥାଏ । ଅତଏବ ମାଂସାହାର ସର୍ବଥା ପାପ ଓ ତ୍ୟାଜ୍ୟ ଅଟେ ।

୬. ମାଂସ-ଭକ୍ଷଣ ଭଗବତ୍‌ପ୍ରାପ୍ତିରେ ବାଧକ ଅଟେ ।

୭. ମାଂସ-ଭକ୍ଷଣ କଲେ ଈଶ୍ୱର ଅପ୍ରସନ୍ନ ହୋଇଥାନ୍ତି ।

୮. ମାଂସ-ଭକ୍ଷଣ ମହାପାପ ଅଟେ ।

୯. ମାଂସ-ଭକ୍ଷଣରେ ପରଲୋକରେ ଦୁଃଖ ପ୍ରାପ୍ତ ହୋଇଥାଏ ।

୧୦. ମାଂସ-ଭକ୍ଷଣ ମନୁଷ୍ୟପାଇଁ ପ୍ରକୃତି-ବିରୁଦ୍ଧ ଅଟେ ।

୧୧. ମାଂସ-ଭକ୍ଷଣ ଦ୍ୱାରା ମନୁଷ୍ୟ ପଶୁତ୍ୱକୁ ପ୍ରାପ୍ତ ହୁଏ ।

୧୨. ମାଂସ-ଭକ୍ଷଣ ମନୁଷ୍ୟର ଅନଧିକାର ଚେଷ୍ଟା ଅଟେ ।

୧୩. ମାଂସ-ଭକ୍ଷଣ ଘୋର ନିର୍ଦ୍ଦୟତା ଅଟେ ।

୧୪. ମାଂସ-ଭକ୍ଷଣ ଦ୍ୱାରା ସ୍ୱାସ୍ଥ୍ୟ ନାଶ ହୁଏ ।

୧୫. ମାଂସ-ଭକ୍ଷଣ ଶାସ୍ତ୍ରନିନ୍ଦିତ ଅଟେ ।

୧୬. କୌଣସି ଜୀବକୁ କୌଣସି ସମୟରେ କୌଣସି ପ୍ରକାରର କିଞ୍ଚିନ୍ମାତ୍ର କଷ୍ଟ ନ ଦେବା ଆତ୍ମ-ଉଦ୍ଧାର ଇଚ୍ଛୁକ ପୁରୁଷର କର୍ତ୍ତବ୍ୟ ।

୧୭. ଭକ୍ତଦୃଷ୍ଟିରେ ସମସ୍ତ ଜୀବ ନିଜ ଭାଇ ସମାନ ଅଟନ୍ତି । ଏହି ରହସ୍ୟର ଜ୍ଞାତା ଈଶ୍ୱରଭକ୍ତ ପକ୍ଷେ ପରମ ପିତା ପରମାତ୍ମାଙ୍କ ସନ୍ତାନ ତଥା ନିଜ ବନ୍ଧୁସ୍ୱରୂପ କୌଣସି ପ୍ରାଣୀକୁ ମାରିବା ତ ଦୂରର କଥା, ସେ କାହାରିକୁ କିଞ୍ଚିନ୍ମାତ୍ର କଷ୍ଟ ମଧ୍ୟ ଦେଇ ପାରେ ନାହିଁ ।

୧୮. ଯେଉଁ ଧର୍ମ ମନୁଷ୍ୟର ବୃତ୍ତିସମୂହକୁ ଅହିଂସା, ତ୍ୟାଗ, ନିବୃତ୍ତି ଓ ସଂଯମ ଆଡ଼କୁ ନେଇଯାଏ, ତାହା ହିଁ ଯଥାର୍ଥ ଧର୍ମ ଅଟେ । ଯେଉଁ ଧର୍ମରେ ଏହି କଥାଗୁଡ଼ିକର ଅଭାବ ଅଛି, ସେହି ଧର୍ମ ଅପୂର୍ଣ୍ଣ ଅଟେ । ମାଂସ-ଭକ୍ଷଣ ଧର୍ମର ବିନାଶକାରୀ ହେବା କାରଣରୁ ସର୍ବଥା ମହାପାପ ଅଟେ । ଯାହାର ହୃଦୟରେ ଅହିଂସାର ଭାବ ନାହିଁ, ସେଠାରେ ଧର୍ମର ସ୍ଥାନ ବା କାହିଁ?

୧୯. ଯଦି ମାଂସାହାରୀ ଲୋକେ ମାଂସ ଖାଇବା ଛାଡ଼ି ଦିଅନ୍ତେ, ତେବେ ପ୍ରାଣୀବଧ କେହି କାହିଁକି ବା କରନ୍ତା?

୨୦. ମନୁଷ୍ୟର ପ୍ରକୃତି ସ୍ୱାଭାବିକ ସୌମ୍ୟ ଅଟେ, ସୌମ୍ୟ ପ୍ରକୃତିସମ୍ପନ୍ନ ଜୀବଙ୍କ ପାଇଁ ଅନ୍ନ, ଦୁଧ, ଫଳ ଆଦି ସୌମ୍ୟ ପଦାର୍ଥ ହିଁ ସ୍ୱାଭାବିକ ଭୋଜ୍ୟ

ପଦାର୍ଥ । ଗୋରୁ, ଛେଳି, ପାରା ଆଦି ସୌମ୍ୟ ପ୍ରକୃତିର ପଶୁ-ପକ୍ଷୀ ମାଂସ ନ ଖାଇ ଘାସ, କୁଟା, ଅନ୍ନ ଆଦି ହିଁ ଖାଆନ୍ତି ।

୨୧. ଭୋଜନରୁ ହିଁ ମନର ସୃଷ୍ଟି ***"ଜୈସା ଖାୱେ ଅନ୍ନ ୱୈସା ବନେ ମନ"*** ଲୋକୋକ୍ତି ଅଛି । ମନୁଷ୍ୟ ଯେଉଁ ପଶୁ-ପକ୍ଷୀଙ୍କର ମାଂସ ଖାଏ, ସେହି ପଶୁ-ପକ୍ଷୀଙ୍କ ସମାନ ଗୁଣ, ଆଚରଣ ଆଦି ତାହାଠାରେ ଉତ୍ପନ୍ନ ହୋଇଯାଏ, ତା'ର ଆକୃତି କ୍ରମଶଃ ସେହିପରି ହିଁ ହୋଇଯାଏ ।

୨୨. ଯେଉଁ କ୍ରୂରହୃଦୟ ମନୁଷ୍ୟମାନେ ପାପୀ ପେଟକୁ ପୂରାଇବା ଓ ଜିଭକୁ ସ୍ୱାଦ ଚଖାଇବା ପାଇଁ ପ୍ରାଣୀବଧ କରୁଛନ୍ତି, ସେମାନେ ସ୍ୱାଭାବିକଭାବେ ନିର୍ଦ୍ଦୟୀ ଅଟନ୍ତି । ନିର୍ଦ୍ଦୟୀ ମନୁଷ୍ୟ ଭଗବାନଙ୍କ ଠାରୁ ବା ଅନ୍ୟାନ୍ୟ ଜୀବଙ୍କ ଠାରୁ କେବେ ଦୟା ମାଗିପାରେ ନାହିଁ ।

୨୩. ମାଂସାହାରୀ ମନୁଷ୍ୟ ପ୍ରାୟ ପେଟ ରୋଗରେ ପୀଡ଼ିତ ହୁଅନ୍ତି । ଏହା ବ୍ୟତୀତ ଆହୁରି ମଧ୍ୟ ଅନେକ ପ୍ରକାରର ରୋଗ ମାଂସାହାର ଯୋଗୁଁ ହିଁ ହୁଏ ।

୨୪. ଯେଉଁ ମନୁଷ୍ୟ ନିଜ ମାଂସକୁ ଅନ୍ୟର ମାଂସରେ ବଢ଼ାଇବାକୁ ଚାହେଁ, ସେ ଯେଉଁ ଯୋନିରେ ଜନ୍ମ ଗ୍ରହଣ କରେ, ସେଠାରେ ଦୁଃଖୀ ହୋଇ ରହେ ।

୨୫. ଯେଉଁ ଅଜ୍ଞାନ ଓ ଅଧମ ପୁରୁଷ ଦେବପୂଜା, ଯଜ୍ଞ ତଥା ବେଦୋକ୍ତ ମାର୍ଗର ଆଶ୍ରୟ ନେଇ ମାଂସ ଲୋଭରେ ଜୀବମାନଙ୍କୁ ହିଂସା କରେ, ସେ ନରକକୁ ଯାଇଥାଏ ।

୨୬. ଯେଉଁ ମନୁଷ୍ୟ ଅନ୍ୟମାନଙ୍କ ମାଂସ ଦ୍ୱାରା ନିଜ ମାଂସକୁ ବଢ଼ାଇବାକୁ ଚାହେଁ, ତାହାଠାରୁ ବଳି ନୀଚ କେହି ନାହିଁ, ସେ ଅତ୍ୟନ୍ତ ନିର୍ଦ୍ଦୟୀ ଅଟେ ।

୨୭. ମାଂସ ନ ଖାଇବାଦ୍ୱାରା ଯେଉଁ ପୁଣ୍ୟ ହୁଏ, ତା'ସମାନ ପୁଣ୍ୟ ସୁବର୍ଣ୍ଣ ଦାନରେ, ଗୋଦାନରେ କିମ୍ବା ଭୂମିଦାନରେ ମଧ୍ୟ ହୁଏ ନାହିଁ ।

୨୮. ଯେଉଁ ମନୁଷ୍ୟ ଏହି ସଂସାରର ସମସ୍ତ ପ୍ରାଣୀଙ୍କୁ ଅଭୟଦାନ ଦିଏ, ସେ ସମସ୍ତ ଯଜ୍ଞ କରି ସାରିଛି ବୋଲି ଜାଣ ଓ ବଦଳରେ ତାକୁ ସମସ୍ତଙ୍କ ଠାରୁ ଅଭୟ ପ୍ରାପ୍ତ ହୁଏ, ଅତଏବ ପ୍ରାଣୀମାନଙ୍କୁ କଷ୍ଟ ନ ଦେବା ଠାରୁ ବଳି ଅନ୍ୟ ଧର୍ମ ଆଉ କିଛି ନାହିଁ ।



# ପୁରୁଷମାନଙ୍କ ପାଇଁ

୧. ସହଧର୍ମିଣୀ ପତିବ୍ରତା ପତ୍ନୀର ବିନା ଇଚ୍ଛାରେ ତାକୁ ତ୍ୟାଗ କରି ପୁରୁଷ ଅନ୍ୟତ୍ର ଗ୍ଲିଯିବା ଅନୁଚିତ।

୨. ହିସାବରେ ମାଆ ସମାନ ହେଲେ ମଧ୍ୟ ପୁରୁଷ କୌଣସି ସ୍ତ୍ରୀର ଅଙ୍ଗ ନ ଦେଖିବା ଉଚିତ।

୩. ପ୍ରତ୍ୟେକ ଭାଇ ନିଜ ଘରେ ଧାର୍ମିକ ପୁସ୍ତକଗୁଡ଼ିକ ଆଧାରରେ ନିଜ ଛୁଆପିଲାଙ୍କୁ ଓ ସ୍ତ୍ରୀକୁ ନିୟମିତରୂପେ ଶିକ୍ଷା ଦେବା ଉଚିତ।

୪. ସ୍ତ୍ରୀମାନଙ୍କ ପ୍ରତି ଅମାନୁଷିକ ବ୍ୟବହାର କଦାପି କରନ୍ତୁ ନାହିଁ। ଏ ପ୍ରକାର ବ୍ୟବହାରଦ୍ୱାରା ଇହଲୋକରେ ଅପକୀର୍ତ୍ତି ଓ ପରଲୋକରେ ଦୁର୍ଗତି ହୁଏ।

୫. ସ୍ତ୍ରୀମାନଙ୍କ ସହ ସତ୍କାରପୂର୍ବକ ଭଲ ବ୍ୟବହାର କରିବା ଉଚିତ।

୬. ସ୍ତ୍ରୀମାନଙ୍କର ଯେଉଁଠାରେ ସତ୍କାର ହୁଏ, ସେଠାରେ ସବୁ ଦେବତା ନିବାସ କରନ୍ତି। ଯେଉଁଠାରେ ସତ୍କାର ହୁଏ ନାହିଁ, ସେଠାରେ ସବୁ କର୍ମ ନିଷ୍ଫଳ ହୋଇଯାଆନ୍ତି।

୭. ଯଦି ପୁରୁଷଲୋକେ ସ୍ତ୍ରୀମାନଙ୍କ ସହିତ ନିଜ ବ୍ୟବହାର ସୁଧାରି ନିଅନ୍ତି, ତା'ହେଲେ ସେମାନଙ୍କର ବ୍ୟବହାର ବହୁ ପରିମାଣରେ ସୁଧୁରିଯିବା ସ୍ୱାଭାବିକ, କାରଣ ଏହା ଏକ ସାଧାରଣ ନିୟମ ଯେ ଯଦି କେହି କାହାରି ସହିତ ଭଲ ବ୍ୟବହାର କରେ, ତେବେ ଅନ୍ୟଜଣକ ମଧ୍ୟ ତାହା ସହିତ ଭଲ ବ୍ୟବହାର ହିଁ କରେ।

୮. ଯେଉଁମାନଙ୍କ ଘରେ ବିଧବା ସ୍ତ୍ରୀ ଥିବେ, ସେହି ଘରର ଲୋକେ ନିଜେ ସଂଯମରେ ରହି ତାଙ୍କୁ ସଂଯମର ଶିକ୍ଷା ଦେବା ଉଚିତ।

୯. ଯେଉଁମାନେ ପୁତ୍ର-ଭାଇ ଆଦିଙ୍କର ମୃତ୍ୟୁ ପରେ ସେମାନଙ୍କ ସ୍ତ୍ରୀଙ୍କ ଧନ ଉପରେ ଅଧିକାର ଜମେଇ ତାଙ୍କ ଉପରେ ମିଛ-ସତ କଳଙ୍କ ଲଗାଇ ତାଙ୍କୁ ଖାଇବାକୁ ବି ଦିଅନ୍ତି ନାହିଁ, ଏପରିକି ଘରୁ ବାହାର କରି ଦେବାର ଚେଷ୍ଟା ମଧ୍ୟ କରନ୍ତି, ସେମାନଙ୍କର ଇହଲୋକ ଓ ପରଲୋକ ନଷ୍ଟ ହୋଇଯାଏ, ସେମାନେ ଈଶ୍ୱର ଓ ମୃତ୍ୟୁ ଆଡ଼କୁ ଖିଆଲ କରି ଏହି ରାକ୍ଷସୀ କର୍ମରୁ ବିରତ ହେବା ଉଚିତ।

୧୦. ନାରୀ ଜାତିର ପବିତ୍ରତା ରକ୍ଷା କରିବା ଓ ସମାଜକୁ ପାପରୁ ରକ୍ଷା କରିବା ଆମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ ଅଟେ ।

୧୧. ପୁରୁଷମାନଙ୍କ ପାଇଁ ଆସକ୍ତିର ତ୍ୟାଗ ସର୍ବପ୍ରଧାନ କର୍ତ୍ତବ୍ୟ ଅଟେ । ବିଶେଷ କରି କାଞ୍ଚନ, କାମିନୀ ଓ ଦେହର ଆସକ୍ତି ତ୍ୟାଗ ଖୁବ୍ ଦୃଢ଼ତାର ସହ କରିବା ଉଚିତ ।



## ବ୍ୟାବହାରିକ କଥାସମୂହ

୧. ଘରର ଲୋକଙ୍କୁ ଯେପରି ଆରାମ ମିଳିବ ଓ ତାଙ୍କ ମନ ଖୁସି ରହିବ, ସେହିପରି ନ୍ୟାୟଯୁକ୍ତ ଆଚରଣ କରିବାକୁ ମୁଁ ଉତ୍ତମ ଭାବେ । ଶରୀରକୁ ଘର ଓ ସଂସାରର ସମସ୍ତ ମନୁଷ୍ୟଙ୍କ ସେବାରେ ଲଗାଇ ଦେବା ଉଚିତ ।

୨. ଯେଉଁ ଲୋକେ ମାତା-ପିତାଙ୍କ ସେବା କରନ୍ତି ନାହିଁ, ତାଙ୍କ ଜୀବନକୁ ଧିକ୍ ।

୩. ମାତା-ପିତାଙ୍କୁ କୌଣସି କଥା ପାଇଁ ଅସନ୍ତୁଷ୍ଟ ନ କରିବା ଉଚିତ । ଏପରିକି ଭଜନ, ଧ୍ୟାନ, ସତ୍‌ସଙ୍ଗ ପାଇଁ ମଧ୍ୟ ସେମାନଙ୍କ ସ୍ୱାର୍ଥପୂର୍ଣ୍ଣ ଆଜ୍ଞାକୁ ଉଲ୍ଲଂଘନ କରିବା ଅନୁଚିତ ।

୪. ସଂସାରରେ ରହି କି ପ୍ରକାରର ଆଚରଣ ପ୍ରଦର୍ଶନ କରିବା ଉଚିତ? ନିଜ ଠାରୁ ବଡ଼ମାନଙ୍କ ପ୍ରତି ଶ୍ରଦ୍ଧା, ସମ ବୟସ୍କଙ୍କ ପ୍ରତି ମିତ୍ରତା, ଛୋଟମାନଙ୍କ ପ୍ରତି ପାଳନ କରିବାର ଭାବ ରଖି ସମସ୍ତଙ୍କ ସେବା କରିବା ଉଚିତ ।

୫. ମନୁଷ୍ୟ ଅଳ୍ପଜ୍ଞ ଅଟେ, ଭଗବାନଙ୍କ କୃତିସମୂହର ଗୂଢ଼ ରହସ୍ୟ ବିଷୟରେ ତାକୁ କିଛି ଜଣା ନାହିଁ । ଏଣୁ ଭଗବାନଙ୍କ ବ୍ୟବସ୍ଥାରେ ସନ୍ଦେହ କରିବା ବା ତ୍ରୁଟି ବାହାର କରିବା ମନୁଷ୍ୟ-କର୍ତ୍ତବ୍ୟର ବାହାରର କଥା ଅଟେ ।

୬. ନିଜର ବହୁତ ବଡ଼ ସ୍ୱାର୍ଥର କାମ ମଧ୍ୟ ମାତା-ପିତାଙ୍କ ଆଜ୍ଞା ବିରୁଦ୍ଧରେ କରିବା ଅନୁଚିତ ।

୭. ଧନ-ସମ୍ପତ୍ତିର କଥା ତ ସାମାନ୍ୟ, ମାତା-ପିତାଙ୍କ ଆଜ୍ଞା ପାଳନରେ ଯଦି ପ୍ରାଣ ଚ୍ଛଲିଯାଏ, ତା'ହେଲେ ମଧ୍ୟ କୌଣସି ଆପତ୍ତି ନାହିଁ । ଏହି ଶରୀର ଉପରେ ନିଜର କି ଅଧିକାର ଅଛି? ଏହା ଉପରେ ନିଜର ପ୍ରଭୁତ୍ୱ ମାନିବା ତ ଅଯୋଗ୍ୟତା ଅଟେ ।

୮. ଚତୁର ମନୁଷ୍ୟମାନଙ୍କ ସହିତ ଚତୁରତାର ସହ କଥାବାର୍ତ୍ତା କରିବାରେ ଆପତ୍ତି ନାହିଁ। ଆପତ୍ତି ଅଛି ଛଳ-କପଟ କରିବାରେ, କିନ୍ତୁ ହୃଦୟ ଶୁଦ୍ଧ ନ ହେଲେ ବ୍ୟବହାର ଶୁଦ୍ଧ ହେବା ବହୁତ କଠିନ। ନିଜର ଲକ୍ଷ୍ୟ କର୍ତ୍ତବ୍ୟ ଆଡ଼କୁ ରହିବା ଉଚିତ, ଲୋଭ ଆଡ଼କୁ ନୁହେଁ।

୯. ଶରୀର ଦିନେ ନା ଦିନେ ଯିବ। ପୁଣି କୌଣସି ଭଲ କାମ କରୁ କରୁ ଯଦି ଚ୍ଛଲିଯାଏ, ତେବେ ତ ବହୁତ ଭଲ କଥା।

୧୦. କର୍ତ୍ତବ୍ୟତ୍ୟାଗ ସମାଜ ପାଇଁ ବହୁତ ହାନିକର ଅଟେ।

୧୧. ଭବିତବ୍ୟତା ଟଳି ପାରେ ନାହିଁ।

୧୨. ବୀରତ୍ୱର ସହ ପ୍ରାଣ ତ୍ୟାଗ କରିବା ଶ୍ରେୟସ୍କର ଏବଂ ଧର୍ମ ଅଟେ।

୧୩. ଅପମାନ କାପୁରୁଷତାରେ ଅଛି, ବୀରତାରେ ନୁହେଁ। ଧର୍ମ-ତ୍ୟାଗରେ ଅଛି, ଧର୍ମ ରକ୍ଷାରେ ନୁହେଁ।

୧୪. ବୀରତା ହିଁ ମୁକ୍ତିର କାରଣ। କାପୁରୁଷତାପୂର୍ଣ୍ଣ ଜୀବନ ମୃତ୍ୟୁ ସମାନ ଅଟେ।

୧୫. ବିଦ୍ୟା ଓ ତ୍ୟାଗ ଯେଉଁ ସମାଜରେ ଥିବ, ସେ ସମାଜର କେବେ ପତନ ହୁଏ ନାହିଁ। ବିଦ୍ୟା ଓ ତ୍ୟାଗ ମନୁଷ୍ୟର ଦୁଇଟି ପକ୍ଷ ଅଟନ୍ତି, କିନ୍ତୁ ଅସଲି ପକ୍ଷ ତ୍ୟାଗ ହିଁ ଅଟେ।

୧୬. ଯେଉଁପରି ଚ୍ଛକର ମନରେ କାମ କରିବାବେଳେ ସର୍ବଦା ମାଲିକ ପ୍ରତି ଡର ରହିଥାଏ, ଯାହାଦ୍ୱାରା ସେ ଜାଣିଶୁଣି କୌଣସି ଭୁଲ କରେ ନାହିଁ, ଠିକ୍ ସେହିପରି ପ୍ରଭୁଙ୍କ ପ୍ରତି ଭୟ ରଖିବା ଉଚିତ।

୧୭. ଜୁଆ ଖେଳିବା ବହୁତ ଖରାପ। ଏହାଦ୍ୱାରା ଭଜନରେ ବାଧା ପଡ଼େ, ପାପ ବଢ଼େ, ଇଜ୍ଜତ ଚ୍ଛଲିଯାଏ। ତାକୁ କେହି ବିଶ୍ୱାସ କରନ୍ତି ନାହିଁ, ଭଗବାନ ମଧ୍ୟ ଅସନ୍ତୁଷ୍ଟ ହୁଅନ୍ତି। ଜୁଆ ଖେଳି ନଳ ଓ ଯୁଧିଷ୍ଠିରଙ୍କ ପରି ବଡ଼ ବଡ଼ ଲୋକମାନଙ୍କୁ ମଧ୍ୟ ଅନୁତାପ କରିବାକୁ ପଡ଼ିଥିଲା। ଅତଃ ନିଜ ମନରେ ଦୃଢ଼ ନିୟମ କରିବା ଉଚିତ ଯେ ଜୁଆ ଭୁଲରେ ବି କେବେ ଖେଳିବ ନାହିଁ।

୧୮. ଆମ ଦ୍ୱାରା ଯାହା କିଛି ଭଲ କାମ ହେଉଛି, ତାହା ଭଗବାନଙ୍କ ଦୟାରୁ ହେଉଛି ଓ ଯେଉଁ ମନ୍ଦ କାମ ହେଉଛି, ତାହା ଆମ ସ୍ୱଭାବ-ଦୋଷରୁ ହେଉଛି, ଏପରି ଭାବି ମନ୍ଦକାମ କେବେ କରିବା ଉଚିତ ନୁହେଁ।

୧୯. କାହାରିକୁ ନାସ୍ତିକ ଭାବିବା ବୁଦ୍ଧିମାନ୍ ମନୁଷ୍ୟ ପାଇଁ ଉଚିତ ନୁହେଁ।

୨୦. ଅନ୍ତଃକରଣରେ ସାମାନ୍ୟତମ ବିକାର ନ ହେବା ଉଚିତ। ସର୍ବଦା ନିଶ୍ଚିନ୍ତ ରହିବା ଉଚିତ।

୨୧. ତନ୍ଦ୍ରା ଅବସ୍ଥାରେ ମନୁଷ୍ୟର ଛାତି ଉପରେ ନିଜ ହାତ ପଡ଼ିଗଲେ ସେ ଚୋର ବୋଲି କଳ୍ପନା କରି ନିଜ ଛାତି ଉପରେ ବହୁତ ବଡ଼ ବୋଝ ଥିବା ପରି ଭାବିନିଏ ଓ ନିଜକୁ ଏତେ ଚପି ହୋଇ ଯାଇଥିବା ମନେ କରେ ଯେ ତାକୁ ଜିଭ ହଲାଇବାକୁ ମଧ୍ୟ ଭୟ ଲାଗେ, କିନ୍ତୁ ବାସ୍ତବରେ ସେଠାରେ ଚୋର ନ ଥାଏ କି ତା'ର ଭାର ମଧ୍ୟ ନ ଥାଏ। ମାୟା ଠିକ୍ ଏହିପରି। ଉଦ୍ଦେଶ୍ୟ ସବୁଠୁଁ ଉଚ୍ଚ ରଖିବା ଉଚିତ।

୨୨. ଚାରିଗୋଟି କଥା ଭାରି ମୂଲ୍ୟବାନ୍—(୧) ଯିଏ ଛୋଟ ପଦବୀରୁ ବଡ଼ ପଦବୀକୁ ଚାଲିଯାଏ ତାକୁ ବଡ଼ ହିଁ ମାନିବା ଉଚିତ। (୨) କାହାରି ଦୋଷ ଉନ୍ମୋଚନ କରିବା ଉଚିତ ନୁହେଁ। (୩) ଚାକର ଦ୍ୱାରା ହେବା ଯୋଗ୍ୟ କାମ ଚାକର ଦ୍ୱାରା କରାଇବା ଉଚିତ। (୪) ଯାହାଠାରୁ ମନ ତୁଟିଯାଏ, ତା'ପାଖରେ ରହିବା ଉଚିତ ନୁହେଁ।

୨୩. ସମୟର ଅମୂଲ୍ୟତାକୁ ସବୁବେଳେ ମନେ ରଖିବା ଉଚିତ।

୨୪. ନିଜ ସ୍ୱାର୍ଥ ପାଇଁ କାହାରିଦ୍ୱାରା ସେବା କରାଇବା ଉଚିତ ନୁହେଁ। ସ୍ୱାର୍ଥ ହିଁ ପାପର ମୂଳ କାରଣ ଅଟେ।

୨୫. ଭୋଜନ-ବସ୍ତ୍ରରେ ସଂଯମ, ବେପାରରେ ସତ୍ୟଭାଷଣ, ଲୋଭ-କପଟର ତ୍ୟାଗ, ସମସ୍ତଙ୍କ ସହ ସ୍ୱାର୍ଥ ତ୍ୟାଗ କରି ବିନୟପୂର୍ବକ ପ୍ରେମପୂର୍ଣ୍ଣ ସଦ୍‌ବ୍ୟବହାର କରିବାକୁ ଚେଷ୍ଟା କରିବା ଉଚିତ।

୨୬. ଶରୀରକୁ ଭଗବାନଙ୍କ ଭଜନ, ଧ୍ୟାନ, ସେବା, ସତ୍‌ସଙ୍ଗରେ ଲଗାଇବା ଉଚିତ। ଟଙ୍କା ସବୁକୁ ପରୋପକାରରେ ଲଗାଇବା ଉଚିତ।

୨୭. ଯେଉଁ କଥାକୁ ବାହାରେ ପ୍ରକାଶିତ କରି ଦିଆଯାଏ, ତାହା କ୍ଷୟ ହୋଇଯାଏ। ଏହି ତତ୍ତ୍ୱକୁ ବୁଝିଗଲେ ଉତ୍ତମ କାମଗୁଡ଼ିକୁ ପ୍ରକାଶିତ କରିବାର ପ୍ରବୃତ୍ତି ଦୂରେଇ ଯାଇପାରେ ଏବଂ ମନ୍ଦ କାମସବୁକୁ ପ୍ରକଟ କରିବାରେ ଇଚ୍ଛା ହୋଇପାରେ।

୨୮. ପ୍ରାଣ ପଛକେ ଚାଲିଯାଉ, କିନ୍ତୁ ନିଜର ପ୍ରତିଜ୍ଞାରୁ ବିଚ୍ୟୁତ ହେବା ଉଚିତ ନୁହେଁ।

୨୯. କେବଳ ସୁଧ ପାଇଁ ଟଙ୍କା ଦେଣ-ନେଣ କରୁଥିବା ଲୋକର ବଂଶ ନାଶ ହୋଇଯାଏ। ସେ ପ୍ରଥମେ କିଛି ଦିନ ତ ସୁଧରେ କାମ ଚଳାଏ। ତା'ପରେ ଟଙ୍କା ଖର୍ଚ୍ଚ ହୋଇଯାଏ, ଟଙ୍କା ସରିଯାଏ ଓ ତାର ପିଲାଏ କାମ ନ କରି ଅଳସୁଆ ହୋଇଯାଆନ୍ତି, ଏଥିପାଇଁ ସେମାନଙ୍କର ବିବାହ ହେବା କଷ୍ଟକର ହୋଇଯାଏ ତଥା ବଂଶ-ନାଶ ହୋଇଯାଏ।

୩୦. ଯେଉଁ ଜାତି ନିକଟରେ ବ୍ୟାପାର ଓ ମଜୁରି ଅର୍ଥାତ୍ କାରିଗରୀ ଥିବ, ସେମାନଙ୍କର ଉନ୍ନତି ହେବ। ତାଙ୍କ ଧର୍ମର ବୃଦ୍ଧି ହେବ ଏବଂ ତାଙ୍କ ପାଖରେ ଟଙ୍କା ରହିବ।

୩୧. ସାରା ଦୁନିଆ ଅଳସୁଆ ହେବାକୁ ପ୍ରସ୍ତୁତ। ସେମାନଙ୍କ ମୁକ୍ତିକ୍ଷେତ୍ରରେ ଅଳସୁଆପଣ ବାଧକ ଅଟେ।

୩୨. ଭଗବାନ ଆଠ ପ୍ରହର ଚଉଷଠି ଘଡ଼ି ଆମକୁ ଟଙ୍କା ରୋଜଗାର ଓ ପେଟ ପୋଷିବା ପାଇଁ ପଠାଇ ନାହାନ୍ତି।

୩୩. ମହାରାଜ ଯୁଧିଷ୍ଠିରଙ୍କ ଆଚରଣକୁ ଦେଖି କେତେ ରୋମାଞ୍ଚ ହୁଏ। ଦୁର୍ଯ୍ୟୋଧନର କେତେ ମଙ୍ଗଳ କଲେ, କିନ୍ତୁ କୌଣସିଠାରେ ତାହା ପ୍ରକାଶ କଲେ ନାହିଁ।

୩୪. ଶ୍ରୀରାମଚନ୍ଦ୍ର ମହାରାଜଙ୍କ ଆଚରଣ ବିଷୟ କ'ଣ ଅବା କହିବା। ଯେଉଁ ସମୟରେ ତାଙ୍କ ଆଚରଣ ମନେ ପଡ଼ିଯାଏ, ସେ ସମୟରେ ରାମଚନ୍ଦ୍ର ମହାରାଜଙ୍କ ଶାନ୍ତମୂର୍ତ୍ତି ଆଖି ଆଗରେ ନାଚି ଉଠେ। ଭରତ, ଲକ୍ଷ୍ମଣ, ଦଶରଥ, କୌଶଲ୍ୟା, ସୀତା ସମସ୍ତଙ୍କର ଆଚରଣ ବହୁତ ଉତ୍ତମ ଅଟେ। ସୁମିତ୍ରାଙ୍କ ଆଚରଣ ତ ଅତ୍ୟନ୍ତ ପ୍ରତ୍ୟକ୍ଷ ଦେଦୀପ୍ୟମାନ ହୁଏ।

**ଅଵଧ ତହାଁ ଜହଁ ରାମନିଵାସୂ। ତହଁଇଁ ଦିଵସୁ ଜହଁ ଭାନୁ ପ୍ରକାସୂ॥**
**ପୁତ୍ରଵତୀ ଜୁବତୀ ଜଗ ସୋଈ। ରଘୁପତି ଭଗତୁ ଜାସୁ ସୁତ ହୋଈ॥**

୩୫. ନିଜ ତରଫରୁ ମୁସଲମାନ୍‌ଙ୍କୁ କୌଣସି ପ୍ରକାରର କଷ୍ଟ ନ ଦେବା ଉଚିତ। ନିଜର ଯେତେ ଶକ୍ତି ଆଉନା କାହିଁକି ତଥାପି ସେମାନଙ୍କୁ କଷ୍ଟ ନ ଦେବା ଉଚିତ। ହିନ୍ଦୁମାନଙ୍କୁ ସାହାଯ୍ୟ ଦେବା ଉଚିତ। ବଳପୂର୍ବକ ମୁସଲମାନ୍‌ଙ୍କୁ

ହିନ୍ଦୁ କରାଇବା ଅନ୍ୟାୟ ଅଟେ; ଠିକ୍ ସେହିପରି ହିନ୍ଦୁମାନଙ୍କୁ ବଳପୂର୍ବକ ମୁସଲମାନ୍ କରାଇବା ଅନ୍ୟାୟ ଅଟେ ।

୩୬. ଲୋକେ ଯଦି ନିଜକୁ ସଚେତ ନ କରିବେ, ତା'ହେଲେ ନିଜ ଭିତରେ ଅବଗୁଣ ରହିଯିବ । ଏଣୁ ଲୋକଙ୍କୁ ନିଜ ଉପରେ ଖୁବ୍ ଦୟା କରିବା ଉଚିତ ।



**॥ ଜୟ ଶ୍ରୀଚନ୍ଦ୍ରମୌଳି ॥**

ଓଁ

# ପଞ୍ଚାମୃତ

୧. ବାହାର ଭିତରର ଶୁଦ୍ଧି ।
୨. ଭଗବାନଙ୍କ ବଚନରେ ଦୃଢ଼ ବିଶ୍ୱାସ ।
୩. ସବୁ ସମୟରେ, ସବୁ ଅବସ୍ଥାରେ ଭଗବାନଙ୍କୁ ମନେ ରଖିବା ।
୪. ନିଷ୍କାମଭାବ ।
୫. ଶ୍ରୀରାମଙ୍କୁ ଆନନ୍ଦସ୍ୱରୂପ ଜାଣି ପରିଶୁଦ୍ଧ ପ୍ରେମ କରିବା ।